# ଚିହ୍ନି ଫିହ୍ନି ଅନ୍ଧାରେ

ସୁସ୍ମିତା ବାଗ୍‌ଚୀ



ଭିନ୍ନ କୂଳ, ଅନ୍ୟ ଢେଉ
ଲେଖିକା :
ସୁସ୍ମିତା ବାଗ୍‌ଚୀ
ପ୍ରକାଶକ :
ସୁଚରିତା ପବ୍ଲିକେଶନ୍ସ
୪୩୧, ଶହୀଦ ନଗର
ଭୁବନେଶ୍ୱର ୭୫୧୦୦୭
ପ୍ରଚ୍ଛଦ :
ଅସୀମ ବସୁ
ମୁଦ୍ରଣ :
ଅପ୍‌ଟିମା ପ୍ରିଣ୍ଟସ୍
କଟକ-୧
ପ୍ରଥମ ପ୍ରକାଶ :
ଡିସେମ୍ବର, ୧୯୯୭
ମୂଲ୍ୟ :
ଏକ ଶତ ଟଙ୍କା ମାତ୍ର

**VINNA KULA, ANYA DHEU**
Written by :
**Susmita Bagchi**
Published by :
**Sucharita Publications**
First Edition : 1997
Printers :
**Optima Prints**
Cuttack-1
Price :
**Rupees One hundred only**

# ସୂଚୀ

୧. ଭିନ୍ନ କୂଳ, ଅନ୍ୟ ଢେଉ ୫
୨. ନିଷିଦ୍ଧ ନୀଡ଼ ୧୮
୩. କଳଙ୍କି ୩୧
୪. ଅପ୍ରତିଶ୍ରୁତ ୪୪
୫. ମାଟି କଣ୍ଢେଇ ୫୯
୬. ଗେମ୍, ସେଟ୍ ଆଣ୍ଡ ମ୍ୟାଚ୍ ଟୁ ଗଡ୍ ୭୨
୭. ଅଧୀଶ୍ୱରୀ ୮୭
୮. କୃଷ୍ଣା ୧୦୦
୯. ଢେଙ୍କେ ହେବାର ପ୍ରସ୍ତୁତି ୧୧୬
୧୦. କ୍ଳାନ୍ତ ଶୈଶବ ୧୩୧
୧୧. ନିଜ ଘର ୧୪୪
୧୨. ପ୍ରଳୟ ପରେ ୧୫୯

# ଭିନ୍ନ କୂଳ, ଅନ୍ୟ ଢେଉ

ଦୁଇ ପାଖରେ ବରଫର ଦୁଇଟି ଧଳା ଚାଦର । ମଝିରେ ହାଇୱେ । କାଲି ଏତେ ବରଫ ପଡିଥିଲା, ହାଇୱେଟି ପୋତି ହୋଇଯାଇଥିଲା ନିଶ୍ଚୟ । ରାତିରେ ଗାଡି ଆସି ରାସ୍ତାରୁ ବରଫ ଉଠେଇ ନେଇ ରାସ୍ତା କଡରେ ଗଦେଇ ଦେଇ ଯାଇଛି ।

ଖୁବ୍ ସାବଧାନରେ ବରଫ ଗଦାଠାରୁ କିଛିଟା ଦୂରତ୍ୱ ରଖି କାରପୁଲ୍ ଲେନ୍‌ରେ ଗାଡି ଚଲାଇ ଯାଉଥିଲା ସୁବର୍ଣ୍ଣା । ଏମିତିରେ ଏଇ ଫାଷ୍ଟ୍ ଲେନ୍‌ରେ ସେ କେବେ ଯାଇ ନ ଥାଆନ୍ତା । ସକାଳର ଶାନ୍ତ ବାତାବରଣ ଯେତେବେଳେ ତା' ମନପ୍ରାଣକୁ ଶୀତଳ କରିଦିଏ, ସେତେବେଳେ ଅଣନିଶ୍ୱାସୀ ହୋଇ ହାଇୱେରେ ୭୦ ମାଇଲ୍ ସ୍ପିଡ୍‌ରେ ଯିବାକୁ ତାକୁ ଆଦୌ ଭଲ ଲାଗେ ନାହିଁ । କିନ୍ତୁ ଆଜି କଥା ଅଲଗା । ଡୋରୋଥି କହିଛନ୍ତି ଯେମିତି ହେଉ ସ୍କୁଲ୍ ଆରମ୍ଭ ହେବାର ଅଧଘଣ୍ଟା ଆଗରୁ ତାକୁ ଆସି ପହଞ୍ଚିବାକୁ ହେବ । କିଛି ଦିନ ହେଲାଣି ଗୁଡାଏ ନୂଆ ବହି ଆସି ପଡି ରହିଛି । ଆଜି ଯେମିତି ହେଉ ସେଗୁଡିକର ନମ୍ବର କମ୍ପ୍ୟୁଟର୍‌ରେ ଭର୍ତ୍ତି କରିବାକୁ ହେବ । ଏସବୁ କାମ ତ ଆଉ ସ୍କୁଲ୍ ସମୟରେ ଠିକ୍ ଭାବରେ କରି ହୁଏ ନାହିଁ ।

'ସେଇଥି ପାଇଁ ଆଜି ଅଧଘଣ୍ଟା ଆଗରୁ ନିଦରୁ ଉଠିଥିଲା ସେ । କିନ୍ତୁ ସେଇ ଯେ ବୋଉକୁ ଫୋନ୍ କରିବା ପାଇଁ ବସିଗଲା ସୁବର୍ଣ୍ଣା, ସବୁ କାମ ଓଲଟପାଲଟ ହୋଇଗଲା । ଏଇମିତିକା ଥଣ୍ଡା ଦିନରେ ଯେତେବେଳେ ବରଫରେ ଚିକାଗୋ ସହର ସମ୍ପୂର୍ଣ୍ଣ ରୂପେ ଘୋଡାଇ ହୋଇଯାଏ, ସେତେବେଳେ ତା'ର

ଘର କଥା, କଟକ କଥା ବହୁତ ମନେ ପଡ଼େ। ବୋଉ କୋଳରେ ମୁଣ୍ଡ ରଖି ଛୋଟ ପିଲାଟିଏ ହୋଇଯିବାକୁ ଇଚ୍ଛା ହୁଏ। ଭାଇଭଉଣୀଙ୍କ ସାଙ୍ଗରେ କଳି କରି ଚିନାବାଦାମ ଗଣି ଗଣି ବାଣ୍ଟିବାକୁ ଇଚ୍ଛା ହୁଏ। ବାପାଙ୍କ ପାଖରେ ନୂଆ ପେନ୍ ପାଇଁ ଜିଦି କରିବାକୁ ମନ ବିକଳ ହୁଏ।

ସେତିକିବେଳେ ସେ ସବୁ କାମକୁ ଏଡାଇ ଦେଇ, ଆଠ ବର୍ଷର ପୁଅ ସୋମୁର 'ମାମା' 'ମାମା' ଡାକକୁ ବେଖାତିର କରି ବାପା, ବୋଉଙ୍କୁ ଫୋନ୍ କରିବାକୁ ବସିଯାଏ।

ଆଜି ମଧ୍ୟ ସେଇମିତି ଗୋଟିଏ ଖିଆଲରେ ସୁବର୍ଣ୍ଣା କଟକ ଫୋନ୍ ଲଗେଇ ଦେଇଥିଲା।

''ଭଲ ଅଛୁଟି ଲୋ ମା'?''

ବୋଉର ସେଇ କଥା ପଦକ କେଜାଣି କାହିଁକି ଗୁଡେଇ ପକେଇଥିଲା ତା' ମନକୁ। ଗୁଡାଏ ଅଜଣା କୋହ ତା' ଛାତିରେ ରୁନ୍ଧି ହୋଇଯାଇଥିଲା।

''ତୁ କେବେ ଏଠିକୁ ଆସିବୁ ବୋଉ? ମୁଁ ତ ଯାଇପାରୁନି ଦେଖୁଛୁ। ବାପାଙ୍କୁ ପଚାରି କହ, ତୁ କେବେ ଆସି ପାରିବୁ, ମୁଁ ସାଙ୍ଗେ ସାଙ୍ଗେ ଟିକେଟ୍ ପଠେଇଦେବି।''

ସୁବର୍ଣ୍ଣା ଛାତି ତଳର କୋହ ବୋଉଙ୍କ ଆଖିକୁ ବୋଧହୁଏ ବ୍ୟାପି ଯାଇଥିଲା। ବସା ବସା ଗଳାରେ ସେ କହିଥିଲେ, ''କେମିତି ଆସିବି ଲୋ ମା'? ଅପୁ କ'ଣ ତତେ ଲେଖି ନାହିଁ। ତା'ର ପରା ପିଲାପିଲି ହେବ। ଏଣେ ତା' ଦେହଟା ଭଲ ରହୁନାହିଁ। ଡାକ୍ତର କହିଛି ଟିକିଏ ଅଧିକ ବିଶ୍ରାମ ନେବାକୁ। ହେଲେ ତା' ଶାଶୁଘର ଜଞ୍ଜାଳ କଥା ତ ଜାଣିଛୁ। ସେଥିପାଇଁ ଜୋଇଁ କହୁଛନ୍ତି ଆଉମାସ ଆଡକୁ ତାକୁ ଆମ ଘରେ ଛାଡିଦେବେ। ତାକୁ ଏକା ରଖି କ'ଣ ଆସି ପାରିବି?''

ସାନଭଉଣୀ ଅପର୍ଣ୍ଣାର ପୁଣି ପିଲାପିଲି ହେବ! ସୁବର୍ଣ୍ଣାର ଓଠରେ ହସ ଖେଳି ଯାଇଥିଲା। ତା'ଠାରୁ ଦଶବର୍ଷର ସାନ ଭଉଣୀଟିକୁ ସେ ସବୁଦିନେ ଛୁଆଟିଏ ବୋଲି ଭାବି ଆସିଥିଲା। ତା' ବାହାଘରଟି ମଧ୍ୟ ସେଇମିତିଆ ଗୋଟିଏ ମିଛିମିଛିକା ବାଲି ଖେଳ ବୋଲି ମନେ ହୋଇଥିଲା। ସେଇ ଅପୁ ପୁଣି ମା' ହେବ।

ତାହେଲେ ବୋଉ ଆଉ ଆସିବ କେମିତି ? ସୁବର୍ଣ୍ଣାର ଆଠବର୍ଷ ଆଗ କଥା ମନେ ପଡିଯାଉଥିଲା । ସୋମୁ ପେଟରେ ଥିବା ବେଳ କଥା । ବୋଉ କି ଯତ୍ନ କରି ନ ଥିଲା ! ସୋମୁ ଜନ୍ମ ଆଗରୁ ଥରେ ମିସ୍‌କ୍ୟାରେଜ୍ ହୋଇ ଯାଇଥିଲା ବୋଲି ଅଜୟଙ୍କୁ କେତେ କହି ବୋଲି ସେଥର ପାଞ୍ଚ ମାସ ବେଳକୁ ପାଖକୁ ନେଇ ଆସିଥିଲା ବୋଉ ।

ସେଇ କେତେ ମାସ ପାଣି ଗିଲାସେ ହାତରେ ନେଇ ସୁବର୍ଣ୍ଣା ପିଇ ନାହିଁ । ନିଜର ସବୁ କାମ ପଛେଇ ଦେଇ ବୋଉ ପ୍ରଥମେ ତା'ର ସବୁ କାମ କରୁଥିଲା ଏବଂ ଯେତେବେଳେ ବୋଉର ବାହାରକୁ କୁଆଡେ ଯିବାର ହେଉଥିଲା, ତା' ପାଖରେ ଜଗି ରହୁଥିଲା ଅପୁ ।

''ନାହିଁ, ତାହେଲେ ବାଧ କରିବିନି । ଅପୁର ଡେଲିଭରି ଭଲରେ ହୋଇଯାଉ, ତା'ପରେ ଆସିବୁ । ଏବେ ତ ଏଠି ବଡ ଥଣ୍ଡା, ତତେ ବି କଷ୍ଟ ହେବ । ଖରାଦିନ ଆଡକୁ ନ ହେଲେ ଟିକେଟ୍ ପଠେଇବି ।''

ବୋଉ ସାଙ୍ଗରେ ହୋଇଥିବା କଥା ମନେ ପକଉ ପକଉ ସୁବର୍ଣ୍ଣା ସାମାନ୍ୟ ଅନ୍ୟମନସ୍କ ହୋଇ ପଡିଥିଲା । ଆ୍ୟାକ୍‌ସିଲେଟର୍ ଉପରେ ପାଦ କୋହଳ ହୋଇ ଯାଇଥିଲା ନିଶ୍ଚୟ । ନିସ୍ତବ୍ଧରେ ପଛରୁ ଗାଡିଟିଏ ଆସି ହଠାତ୍ ଜୋରରେ ହର୍ଣ୍ଣ ଦେଇଦେଲା ।

କିଏ ସେ ମ ? ଚମକି ପଡିଲା ସୁବର୍ଣ୍ଣା । ଧୈର୍ଯ୍ୟ ବୋଲି କିଛି ନାହିଁ ଏ ଲୋକଗୁଡାଙ୍କର । ସାମ୍ନା ଦର୍ପଣ ଦେଇ ପଛ ନାଲି ଗାଡିର ଡ୍ରାଇଭର୍ ଉଦ୍ଦେଶ୍ୟରେ ସେ ଦାନ୍ତ କଡମଡ କଲା । ଇଣ୍ଡିକେଟର୍ ଦେଇ ପାଖ ଲେନ୍‌କୁ ଗାଡି ନେଉଣୁ ନ ନେଉଣୁ ସାଏଁ କରି ତାକୁ ଟପି ଚାଲିଗଲା ନାଲି ଗାଡିଟି ।

ସକାଳଟାରୁ ଏମିତି ତରବର କାହିଁକି ? ହଉ ଯା' ମର । ବାଟରେ କେଉଁଠି ଛକି ବସିଥିବ ଯେ ପୋଲିସ୍‌ରୂପୀ ଖପିସ । ଧରା ପଡିଲେ ବୁଦ୍ଧି ଶିଖିବୁ । କ'ଣ କର୍ଭେଟ୍ ଚଲେଇବୁ ବୋଲି ସବୁ ଆଇନ୍‌କୁ ବେଖାତିର କରିଯିବୁ ? ମନକୁ ମନ ଗୁଡୁରୁ ଗୁଡୁରୁ ହୋଇ ସୁବର୍ଣ୍ଣା ବିରକ୍ତିରେ କହିଯାଉଥିଲା ।

ପଛ ସିଟ୍‌ରୁ ସୋମୁ ପାଟି କରି ଉଠିଲା, ''ମାମା, ମୁଁ ଗୋଟିଏ ରିଡଲ୍ ପଚାରୁଛି, ଉତ୍ତର ଦିଅ ।''

ସୁବର୍ଣ୍ଣା ଆକଟି କହିଲା, ''ଏବେ ନାହିଁ, ସୋମୁ । ଦେଖୁନୁ ପରା ମୁଁ

ହାଇୱେରେ ଗାଡି ନେଉଛି। କେତେଥର କହିଛି ଗାଡି ଚଲେଇବାବେଳେ ଆଦୌ ଆଜେ ବାଜେ କଥା କହିବୁ ନାହିଁ।''

ସୋମୁ ତା' ମା'ର କଥାରେ କାନ ଦେଲା ନାହିଁ। ସେଇଭଳି ଉତ୍ସାହିତ ଭାବରେ କହି ଚାଲିଲା, ''ରିଡଲ୍‌ଟା ଏଇମିତି। କୁହ ତ, ଛୋଟ ଭୂତ ବଡ ଭୂତକୁ କ'ଣ ପଚାରିଲା ? ଆରେ କୁହନା।''

ଦଶଟା କାର୍ ପିଠିରେ ବୋହି ନେଇଯାଉଥିବା ଲମ୍ବା ଟୋ ଟ୍ରକ୍‌ଟିକୁ ଟପି ଗଲାବେଳେ ସୁବର୍ଣ୍ଣା ଚିରାଚରିତ ଅଭ୍ୟାସରୁ କହି ପକେଇଲା, ''ମୁଁ ଜାଣିନି।''

''ଜାଣିନ ? ଛୋଟ ଭୂତ ବଡ ଭୂତକୁ ପଚାରିଲା- 'ତୁମେ ମଣିଷରେ ବିଶ୍ୱାସ କର ?' ହି ହି।''

ସୁବର୍ଣ୍ଣା ମଧ ହସି ପକେଇଲା। କେଉଁଠୁ ଯେ ଏ ସୋମୁଟା ଏସବୁ ଶିଖିକରି ଆସେ ! ପ୍ରତିଦିନ ନୂଆ ନୂଆ ରିଡ଼ଲ୍। ନୂଆ ଜୋକ୍‌ସ। ତା'ର ମଜା ମଜା କଥା ଶୁଣି ଗାଡି ଚଲେଇବା ବେଳେ ପଚିଶଟା ମିନିଟ୍ କେମିତି ଯେ ଚାଲିଯାଏ ସେ ଜାଣିପାରେ ନାହିଁ।

ହାଇୱେରୁ ବାହାରି ଆସିଲା ସୁବର୍ଣ୍ଣା। ଏହି ରାସ୍ତାରେ ଅଳ୍ପ କେଇ ମିଟର ଗଲେ ସ୍କୁଲ। ଦୁଇବର୍ଷ କାଳ ବିନା ଦରମାରେ ଲାଇବ୍ରେରୀରେ ସାହାଯ୍ୟ କରିବା ପରେ ତାକୁ ଏଇମାତ୍ର କିଛି ମାସ ତଳେ ଚାକିରିଟି ମିଳିଛି। ଏତେ ଦିନ ସ୍କୁଲ ପଛପାଖ ଗଳିରେ ଗୋଟିଏ ଭଡା ଘରେ ରହି ଆସିଥିଲେ ସେମାନେ। ଆଉ ସ୍କୁଲ୍‌ରେ ଚାକିରି ହେବା ପରେ ଦେଖ। ନିଜ ଘରଟିଏ କିଣିବାକୁ ଜିଦି କରି ବସିଗଲେ ଅଜୟ। କ'ଣ ନା ମାସକୁ ମାସ ଯେତିକି ଭଡା ଯାଉଛି, ସେଥିରେ ଆଉ କିଛି ମିଶାଇ ଦେଲେ ଘର ଲୋନ୍‌ର ଇନ୍‌ଷ୍ଟଲ୍‌ମେଣ୍ଟଟା ଦେଇ ହେବ। ଆଉ ପୁଣି ଟ୍ୟାକ୍‌ସ କେତେ ବଞ୍ଚିବ ?

ଅଜୟ ଚାର୍ଟେଡ୍ ଆକାଉଣ୍ଟାଣ୍ଟ। ପଇସାପତ୍ର କଥା ଭଲ ବୁଝନ୍ତି। କିନ୍ତୁ ସୁବର୍ଣ୍ଣାର ରାଗ ହୁଏ। ପ୍ରତିଦିନ ରୁକ୍ଷ ହାଇୱେରେ ଏତେ ଗୁଡାଏ ବାଟ ଗାଡି ଚଲେଇ ସ୍କୁଲ୍ ଯିବା ଓ ପୁଣି ଘରକୁ ଫେରିବା କି ଯେ କଷ୍ଟ !

ଚିଫ୍ ଲାଇବ୍ରେରିଆନ୍ ଡୋରୋଥି କହନ୍ତି, ''ତୁମେ ବଡ ସରଳ, ଠିକ୍ ମୋ ସାନଝିଅ ଭଳି ତୁମର ଅ୍ୟାଟିଚ୍ୟୁଡ୍। ପଇସାପତ୍ର, ଘର, ସେଆର୍- କୋଉଥିରେ ତୁମର ଆଗ୍ରହ ନାହିଁ। ଜୀବନରେ ପଇସା ଯେ କେତେ ଆବଶ୍ୟକ, ଜେସିକା

ଭଳି ତୁମେ ଆଦୌ ବୁଝ ନାହିଁ।''

ସୁବର୍ଣ୍ଣା ଡୋରୋଥିଙ୍କ କଥାରେ ଏକମତ ହୋଇପାରେ ନାହିଁ। କିନ୍ତୁ ଷାଠିଏ ଛୁଇଁ ଆସୁଥିବା, ଅବସର ନେବା ପାଇଁ ଆଉ କେଇଟି ମାସ ଥିବା ବୃଦ୍ଧାଙ୍କ ସହିତ ଯୁକ୍ତି କରିବାକୁ ତା'ର ଇଚ୍ଛା ହୁଏ ନାହିଁ।

ସ୍କୁଲ୍ ଗେଟ୍ ଭିତରେ ଗାଡ଼ି ପୂରେଇଲା ସୁବର୍ଣ୍ଣା। ଗାଡି ରହିବା ପୂର୍ବରୁ କବାଟ ଖୋଲିବା ପାଇଁ ସୋମୁ ପ୍ରସ୍ତୁତ ହୋଇଗଲାଣି। ''ହାଏ ଆଲ୍‌ଭିନ୍। ହାଏ ମେଲାନି.. ଓ୍ୱେଟ ଫର୍ ମି।''

''ବାଏ ମାମା।'' ଇଞ୍ଜିନ୍ ବନ୍ଦ ହେବା ପୂର୍ବରୁ ଡିଆଁ ମାରି ଚାଲିଗଲା ସୋମୁ। କବାଟ ଲକ୍ କରିବାର ଧୈର୍ଯ୍ୟ ନାହିଁ।

''ସୋମୁ... ଏ ସୋମୁ।''

ଆଉ ସୋମୁ ଶୁଣୁଛି ମା'ର ଡାକ। କି ଯେ ଚଞ୍ଚଳ ପିଲାଟା!

ଗାଡ଼ି ଲକ୍ କରି ସୁବର୍ଣ୍ଣା ସ୍କୁଲ୍ କରିଡର୍ ଭିତରକୁ ପଶିଲା। ସ୍କୁଲ ଆରମ୍ଭ ହେବାକୁ ବେଶ୍ ଡେରି ଅଛି। ଅଥଚ ଏବେଠୁଁ କେତେ ପିଲା ଆସି ଭିଡ ଜମେଇଲେଣି। କରିଡରର ବାଁ ପଟେ ରହିଛି ଅଫିସ୍। ପ୍ରିନ୍‌ସିପାଲଙ୍କ ରୁମ୍ ତା' ପାଖଟି। ଆଉ ଡାହାଣ ପଟେ ରହିଛି ଅଡିଟୋରିୟମ୍। କିଛି ବାଟ ଆଗେଇଗଲେ ପଡେ କ୍ଲାସ୍ ରୁମ୍ ସବୁ। ପ୍ରଥମେ କିଣ୍ଡରଗାର୍ଟେନ୍। ତା'ପରେ ଫାଷ୍ଟ ଗ୍ରେଡ୍, ସେକେଣ୍ଡ ଗ୍ରେଡ୍ ଇତ୍ୟାଦି। ସ୍କୁଲର ପ୍ରାୟ ଗୋଟିଏ କଣରେ ଯେଉଁଠି ଫୋର୍ଥ ଗ୍ରେଡ୍ ଓ ସିକ୍‌ସଥ୍‌ଗ୍ରେଡ୍‌ର କ୍ଲାସଗୁଡିକ ରହିଛି, ଠିକ୍ ତା'ର ବିପରୀତରେ ଲାଇବ୍ରେରୀଟି।

ଲାଇବ୍ରେରୀର କାଚ କବାଟ ଖୋଲି ସୁବର୍ଣ୍ଣା ଭିତରେ ପାଦ ଦେଲା।

''ଗୁଡ୍ ମର୍ଣ୍ଣିଂ ସୁବର୍ଣ୍ଣା'', କମ୍ପ୍ୟୁଟର ପରଦାର ଆର ପାଖରୁ ଡୋରୋଥିଙ୍କ ସ୍ୱର ଭାସି ଆସିଲା, ''ୟୁ ଆର୍ ଲେଟ୍।''

ଚଟ୍ କରି କାନ୍ଥ ଘଡି ଉପରୁ ସୁବର୍ଣ୍ଣା ଆଖି ବୁଲେଇ ଆଣିଲା। ଆଠଟା ବାଜି ତେତିଶ ମିନିଟ୍। ମାତ୍ର ତିନି ମିନିଟ୍ ଡେରିରେ ଆସିଛି ସିଏ, ଅଥଚ...।

''ମର୍ଣ୍ଣିଂ ଡୋରୋଥି। ସରି, ସାମାନ୍ୟ ଡେରି ହୋଇଗଲା।'' ସୁବର୍ଣ୍ଣା ଓଭର୍‌କୋଟ୍‌ଟି କାନ୍ଥରେ ଝୁଲେଇ ଦେଇ ଡୋରୋଥିଙ୍କ ସହିତ କାମରେ ମିଶିଗଲା।

ସବୁଦିନ ସେ ଏଇମିତି ଦେଖି ଆସିଛି। ସକାଳୁ ସେ ଆସି ପହଞ୍ଚିବାର ଢେର ଆଗରୁ ଡୋରୋଥି ଲାଇବ୍ରେରୀରେ ପହଞ୍ଚି କାମ ଆରମ୍ଭ କରି ଦେଇ

ସାରିଥାଆନ୍ତି ଏବଂ ଅନ୍ୟମାନଙ୍କଠାରୁ ଶୁଣିଛି ଯେ ସ୍କୁଲ୍ ଛୁଟି ହେବାର ବେଶ୍ କିଛି ସମୟ ପରେ ଲାଇବ୍ରେରୀରୁ ବାହାରନ୍ତି ସେ।

ସୁବର୍ଣ୍ଣାର ଦ୍ୱିଗୁଣ ବୟସ ଡୋରୋଥିଙ୍କର। ଅଥଚ କି ଫୁର୍ତ୍ତି! କାମରେ କ୍ଳାନ୍ତି ନାହିଁ। କେହି କେବେ ଚୁପ୍ କରି ତାଙ୍କୁ ବସି ଯିବାର ଦେଖିନାହିଁ। ଆଉ ସବୁବେଳେ ହସ ହସ ମୁହଁ, ଅତି ମାର୍ଜିତ କଥା। କାମ କରୁ କରୁ ସୁବର୍ଣ୍ଣାର ବା ଅନ୍ୟକାହାର ଭୁଲ୍ ହୋଇଗଲେ ଏମିତି ସୁନ୍ଦର ଭାବରେ ବୁଝେଇ ଦିଅନ୍ତି ଯେ ଆଉ ମଣିଷଟିକୁ ଆଦୌ ଖରାପ ଲାଗେ ନାହିଁ।

ନୂଆ ନୂଆ ବଡ କୌତୁହଳ ହେଉଥିଲା ସୁବର୍ଣ୍ଣାର। ଏ କିଭଳି ମଣିଷ? କେହି କେଉଁଠି ଜଗିବାକୁ ନାହିଁ ବା ପ୍ରଶଂସା କରିବାକୁ ନାହିଁ, ଅଥଚ ମେସିନ୍ ଭଳି ସକାଳୁ ସ୍କୁଲ ଛୁଟି ପର୍ଯ୍ୟନ୍ତ କେବଳ ଖଟି ଯାଉଛନ୍ତି! ତା' ପୁଣି ବିନା କ୍ଳାନ୍ତିରେ। ଏହାପରେ କ'ଣ ଘରେ ଯାଇ କିଛି କରିପାରୁଥିବେ ସେ?

ମନରେ ଟିକିଏ ସନ୍ଦେହ ହୁଏ ତା'ର। ଡୋରୋଥିଙ୍କର କ'ଣ ଘରଦ୍ୱାର ପିଲାଛୁଆ କିଛି ନାହିଁ? କିନ୍ତୁ ପଚାରି ହୁଏ ନାହିଁ। ଏ ଦେଶରେ ଯେ ଏଭଳି ବ୍ୟକ୍ତିଗତ ପ୍ରଶ୍ନ ପଚାରିବାଟା ଅଭଦ୍ରାମୀ! ନିଜ କୌତୁହଳକୁ ଦମନ କରି ସୁବର୍ଣ୍ଣା ଡୋରୋଥିଙ୍କଠାରୁ କାମ ଶିଖିବାର ଚେଷ୍ଟା କରେ।

ଗତ ଅଢେଇବର୍ଷ ଧରି ଏକାଠି କାମ କରିବା ଭିତରେ କଥାବାର୍ତ୍ତାର ଖିଅ ଭିତରୁ ସୁବର୍ଣ୍ଣା ଡୋରୋଥିଙ୍କ ଜୀବନ କାହାଣୀ କିଛି କିଛି ଧରି ପାରିଛି। ବାଇଶ ବର୍ଷ ତଳେ ପ୍ରଥମ ସ୍ୱାମୀ ରବର୍ଟଙ୍କ ମୃତ୍ୟୁର ଦେଢ ବର୍ଷ ପରେ ତାଙ୍କ ବନ୍ଧୁ ପଲ୍‌ଙ୍କୁ ବିବାହ କରିଥିଲେ ସେ। କିନ୍ତୁ ସେ ବିବାହ ସ୍ଥାୟୀ ହୋଇପାରିନାହିଁ। ବିବାହର ଦୁଇ ବର୍ଷ ପରେ ଡିଭୋର୍ସ ହୋଇଯାଇଛି। ତା'ପରେ ଆଉ ସେ ବିବାହ କରିନାହାନ୍ତି।

ରବର୍ଟଙ୍କ ତରଫରୁ ତିନି ଝିଅ ତାଙ୍କର। କାହିଁ କେବେଠାରୁ ମା'ର ସୁରକ୍ଷିତ କୋଳ ଛାଡି ଗଲେଣି ସେମାନେ। ବଡ ଝିଅ ସହିତ କୌଣସି କାରଣରୁ ମତାନ୍ତର ହୋଇ ତାଙ୍କର ପ୍ରାୟ ସମ୍ପର୍କ ନାହିଁ। ମଝିଆଁ ଅଷ୍ଟ୍ରେଲିଆରେ ବ୍ୟବସାୟ କରେ। ଫୋନ୍‌ରେ କଥା କହି ବା ଚିଠି ଲେଖି ସମୟ ନଷ୍ଟ କରିବାର ଅବସର ତା'ର ନାହିଁ। କେବଳ ସାନ ଝିଅ ଜେସିକା ବିଷୟରେ ଯାହା କିଛି କହନ୍ତି ଡୋରୋଥି। ଫ୍ଲୋରିଡାରେ ଜେସିକା ଚାକିରି କରେ। ତା' ସହିତ ସେ ପ୍ରତି

ସାତଦିନକୁ ଥରେ ଫୋନ୍‌ରେ କଥା କହନ୍ତି। ମଦର୍‌ସ ଡେ, ଜନ୍ମଦିନ, ନୂଆବର୍ଷ- ଏସବୁରେ ମନେକରି କାର୍ଡ ପଠାଏ ଜେସିକା। ଆଉ କେବେ କେମିତି ମା' ପାଖରେ ଉଇକ୍ ଏଣ୍ଡ କଟାଇବାକୁ ସେ ଚାଲିଆସେ। ଅବଶ୍ୟ ଖୁବ୍ ବେଶୀ ଥର ନୁହଁ। ବର୍ଷକୁ ଥରେ ବା ଦୁଇଥର। ଏବେ ଦୁଇଟି ବିଲେଇ ଓ ଗୋଟିଏ ଶୁଆକୁ ନେଇ ଶାନ୍ତିର ସଂସାର ତାଙ୍କର। ଝଞ୍ଝାଳ ତ ନାହିଁ। ଝଞ୍ଝାଳ ପସନ୍ଦ ମଧ୍ୟ କରନ୍ତି ନାହିଁ ଡ଼ୋରୋଥି।

ତାଙ୍କୁ ବେଳେବେଳେ ସୁବର୍ଣ୍ଣା ଥଟ୍ଟା କରେ। "ଆପଣ ଯଦି ଗୋଟିଏ ଇଣ୍ଡିଆନ୍ ପରିବାରରେ ଜନ୍ମ ହୋଇଥାଆନ୍ତେ, ତେବେ କ'ଣ କରିଥାଆନ୍ତେ? ଜାଣନ୍ତି, ମୁଁ ବାହା ହେବା ପର୍ଯ୍ୟନ୍ତ ମୋ ମା', ବାପାଙ୍କ ପାଖରେ ହିଁ ଥିଲି। ଆଉ ମୋ ବଡଭାଇ ତ ଚାକିରି କରିବା ପରେ ମଧ୍ୟ ଘରେ ରହିଥିଲେ। ପରେ ଦୂରକୁ ବଦଳି ହୋଇଯିବାରୁ ବାଧ୍ୟ ହୋଇ ଘର ଛାଡିଥିଲେ ସେ।"

ଡୋରୋଥି କପାଳକୁ ଆଖି ଟୋକି ନେଇ କହନ୍ତି, "ମାଇଁ ଗଡ୍, ତୁମେମାନେ ସବୁ କେମିତି ବର୍ଷ ପରେ ବର୍ଷ ଏକାଠି ହୋଇ ରହିପାର?"

ଆମେ କେବଳ ଏକାଠି ରହୁ ନାହିଁ, ଏକାଠି ରହିବା ପାଇଁ ଝୁରି ହେଉ - ମନକୁ ମନ କହିଥିଲା ସେଦିନ ସୁବର୍ଣ୍ଣା। ବଡ ଭାଇନା, ଭାଉଜ, ତାଙ୍କର କୁନି କୁନି ଛୁଆଁଳା ଝିଅ ଦୁଇଟି, ସାନ ଭଉଣୀ ଅପୁ- ଏମାନଙ୍କୁ ଟିକିଏ ଦେଖିବାପାଇଁ ସେ କି ଯେ କାତର ହୋଇପଡେ, ଡୋରୋଥି ସେ କଥା ବୁଝିପାରିବେ କି?

ସୁବର୍ଣ୍ଣା ଆଖି ଟେକି ଥରେ ଚାହିଁଲା ଡ଼ୋରୋଥିଙ୍କୁ। ଅପୁର ପିଲାପିଲି ହେବା ସମ୍ବାଦଟା ବୁଲି ବୁଲି ସମସ୍ତଙ୍କୁ କହିବାକୁ ଇଚ୍ଛା ହେଉଛି ତା'ର। ଏଠି ତ ଆଉ କେହି ନାହାନ୍ତି, ତେଣୁ ଡ଼ୋରୋଥିଙ୍କୁ କୁହାଯାଇପାରେ। କଥାଗୁଡାକ ବାହାରି ଆସିବା ପାଇଁ ତଣ୍ଟି ଭିତରେ ଯେମିତି ରୀତିମତ ବିଦ୍ରୋହ ଆରମ୍ଭ କରି ଦେଇଛନ୍ତି। ସୁବର୍ଣ୍ଣା କହିବ କହିବ ହୋଇ ରହିଗଲା।

ଥରେ ଯେ ଆଖି ଉଠାଉ ନାହାନ୍ତି ଡ଼ୋରୋଥି। ନୀରବ ଭାବରେ କେବଳ କାମ କରିଯାଉଛନ୍ତି। ଟାଇପ୍‌କରା କାଗଜଟିଏରୁ ବହିଗୁଡିକର ନାଁ, ନମ୍ବର ଦେଖି କମ୍ପ୍ୟୁଟର କି-ବୋର୍ଡରେ ଆଙ୍ଗୁଳି ଚାପି ଏଣ୍ଟର୍ କରଉଛନ୍ତି ସେ। ମଝିରେ ମଝିରେ ପୁଣି ରହିଯାଇ ପରଦାରେ ଆଖି ବୁଲେଇ ସେ ନିଜକାମ ତଦାରଖ କରି

ଦେଉଛନ୍ତି। ତଳ, ଉପର ଓଠ ଚାପି ହୋଇ ଗୋଟିଏ ସରଳରେଖା ଯେମିତି ହୋଇଯାଇଛି। ଆଉ ଦୁଇ ଭ୍ରୂ ମଝିରେ ଆଙ୍କି ହୋଇ ଯାଇଛି କେଇଟି ଗାର।

ସୁବର୍ଣ୍ଣାକୁ ହଠାତ୍ କେମିତି ଅଖାଡୁଆ ଲାଗିଲା। ଡ଼ୋରୋଥିଙ୍କର ଭୂତ ଭଳି ଖଟଣୀ ସହିତ ସେ ଅଭ୍ୟସ୍ତ, କିନ୍ତୁ ତାଙ୍କର ନୀରବତା ଯେ ସମ୍ପୂର୍ଣ୍ଣ ନୂତନ ଏକ ଅଭିଜ୍ଞତା। ତିନି ଇଞ୍ଚ ହିଲ୍ ଜୋତା ଉପରେ ଭାରସାମ୍ୟ ରଖି ପୁରା ଦମ୍‌ରେ ଲାଇବ୍ରେରୀର ଏପଟରୁ ସେପଟ ଘୁରିବା ଭିତରେ କଥା କେବେହେଲେ ବନ୍ଦ ହୁଏ ନାହିଁ ତାଙ୍କର। ଏପରିକି କମ୍ପ୍ୟୁଟରରେ ସମ୍ପୂର୍ଣ୍ଣ ରୂପେ ମନ ଦେଇ କାମ କରିବାର ପ୍ରୟୋଜନ ଥିବାବେଳେ ମଧ୍ୟ ସେ ଗୋଟିଏ ଦୁଇଟି କଥା ନ କହି ରହିପାରନ୍ତି ନାହିଁ।

ଅଯଥା କଥା କହିଲେ ଶକ୍ତି କ୍ଷୟ ହୁଏ ବୋଲି ଏତେଦିନ ଜାଣିଥିଲା ସେ। କିନ୍ତୁ ଡ଼ୋରୋଥିଙ୍କୁ ଦେଖିବା ପରେ ମନେ ହୋଇଥିଲା ଯେ ଅନବରତ କଥା କହି ସେ ଯେପରି ଶକ୍ତି ଆହରଣ କରନ୍ତି। ତାଙ୍କ ପୋଷା ବିଲେଇ ବିଷୟରେ ହେଉ ବା ନୂଆ ବାହାରିଥିବା ବହିଟିଏ ସମ୍ପର୍କରେ ହେଉ, ଡ଼ୋରୋଥି ଏକତରଫା କେବଳ କହି ଚାଲନ୍ତି। ସୁବର୍ଣ୍ଣା ସବୁ କଥାର ଉତ୍ତର ଦେବାକୁ ମଧ୍ୟ ସମୟ ପାଏ ନାହିଁ।

ସେଇ ଡ଼ୋରୋଥି ଆଜି ଏମିତି ଗମ୍ଭୀର। ନମ୍ବର ଏଣ୍ଟର୍ କରିବା ଭଳି ଗୋଟିଏ ନିହାତି ରୁଟିନବନ୍ଧା କାମ କରିବା ବେଳେ ପାଟିରେ ତାଙ୍କର କଥା ନାହିଁ। ଅତି ଚୁପ୍ ଚାପ୍। କିଛି ପଚାରିବ, ନ ପଚାରିବ, ପଚାରିଲେ ଅଭଦ୍ରାମୀ ହେବ କି, ଏଇଭଳି କିଛିଟା ଦ୍ୱନ୍ଦ୍ୱରେ ପଡିଥିବା ସମୟରେ ହଠାତ୍ ତା' ପାଟିରୁ ବାହାରି ପଡିଲା, ''ଇଜ୍ ଏଭରିଥିଙ୍ଗ୍ ଓକେ? ସବୁ ଠିକ୍ ଅଛି ତ?''

ଚଟ୍ କରି ମୁଣ୍ଡ ଉପରକୁ ଉଠେଇ ନେଇ ପୁଣି ତଳକୁ ପୋତି ଦେଲେ ଡ଼ୋରୋଥି। ସୁନ୍ଦର ଭାବରେ ପର୍ମ କରା ବାଳ ଉପରେ ଅନାବଶ୍ୟକ ସନ୍ତେ ହାତ ବୁଲେଇ ଆଣି ନିଜକୁ ବିଶ୍ୱାସ ଦେବା ଭଳି କହିଲେ, ''ଓ ସିଓର୍, ସିଓର୍!''

ଯା ପରେ ତ ଅନ୍ତତଃ ସୁବର୍ଣ୍ଣା କିଛି ପଚାରି ପାରିବ ନାହିଁ। ନୂଆ ବହିଗୁଡିକୁ ସଜାଡି ବିଭିନ୍ନ ଥାକରେ ରଖିବାବେଳେ ସେ କିନ୍ତୁ କଣେଇ କଣେଇ ଚାହୁଁଥିଲା ଡ଼ୋରୋଥିଙ୍କୁ। ଲାଇବ୍ରେରୀ ଭିତରେ ସେ ଆଜି ଦୌଡୁ ନାହାନ୍ତି।

ଦରକାର ନ ଥିଲେ ମଧ ଝାଡଣ ଧରି ବହିଗୁଡିକ ଝାଡି ପକାଉ ନାହାନ୍ତି ବା ପର୍କୋଲେଟରରୁ କପ୍ ପରେ କପ୍ କଳା କଫି ପିଇ ଚାଲି ନାହାନ୍ତି। ବରଂ କାମ କରୁ କରୁ ମୁଣ୍ଡ ହଠାତ୍ ଖାଲି ହୋଇଯିବା ଭଳି ଶୂନ୍ୟ ଦୃଷ୍ଟିରେ କମ୍ପ୍ୟୁଟର୍ ପରଦା ଆଡକୁ ଚାହିଁ ରହୁଛନ୍ତି। ଲାଇବ୍ରେରୀରେ ପାଦ ଦେବା ପରେ କପେ କଫି ଧରି କମ୍ପ୍ୟୁଟର୍ ପାଖରେ ବୋଧହୁଏ ବସିଥିଲେ। ଢୋକେ ଦୁଇ ଢୋକ ପିଇଛନ୍ତି ନିଶ୍ଚୟ। ବାକିଟା ଥଣ୍ଡା ହୋଇ ସେମିତି ପଡିଛି।

ଅନ୍ୟଦିନ ହୋଇଥିଲେ ସେ ଏତିକି ସମୟ ଭିତରେ ନିଜ କାମ ସାରି ସୁବର୍ଣ୍ଣାର ଅଧାକାମ କରି ସାରନ୍ତେଣି। କିନ୍ତୁ ଆଜି ଅଟକି ଅଟକି ଯାଉଛି ତାଙ୍କର ହାତ। କେମିତି ଏକ ଶିଥିଳତା ବେଢାଇ ରଖିଛି ତାଙ୍କୁ।

ଡ଼ୋରୋଥିଙ୍କ ଦେହ ଭଲ ଅଛି ତ ?

ସୁବର୍ଣ୍ଣା ତାଙ୍କ ସାଙ୍ଗରେ ହାଲୁକା ଗପ ଜମେଇବାର ଚେଷ୍ଟା କଲା, ''ଆପଣଙ୍କ ବିଲେଇ ଦୁଇଟି କେମିତି ଅଛନ୍ତି ?''

ଭଲ।''

''ଶୁଆ ସହିତ କଳି ଆଉ କରୁନାହାନ୍ତି ?''

''ନା।''

''ଆପଣ କହୁଥିଲେ ନୂଆ ମ୍ୟୁଜିକ୍ ସିଷ୍ଟମ୍‌ଟିଏ କିଣିବେ ବୋଲି। କିଣିଲେଣି ?''

''ନା।''

''ସର୍କିଟ୍ ସିଟିରେ ଏବେ ବହୁତ ବଢିଆ ସେଲ୍ ଚାଲିଛି। ମ୍ୟୁଜିକ୍ ସିଷ୍ଟମ୍ ଉପରେ ତିରିଶ ପର୍ସେଣ୍ଟ ଛାଡ। ଆପଣ ଦେଖି ପାରନ୍ତି।''

''ହଉ।''

ଡ଼ୋରୋଥି କେବଳ ଗୋଟିଏ ଗୋଟିଏ ଶବ୍ଦରେ ସୁବର୍ଣ୍ଣାର ପ୍ରଶ୍ନଗୁଡିକର ଉତ୍ତର ଦେଲେ। ଆଉ କାହା ସାଙ୍ଗରେ କଥା କହିବା ପାଇଁ ତାଙ୍କର ଯେମିତି ଆଦୌ ଇଚ୍ଛା ନ ଥିଲା।

ହଠାତ୍ ଟର୍ମିନାଲ୍‌ଟି ବନ୍ଦ କରି ଦେଇ ଧଡ୍ କରି ଉଠି ଠିଆ ହେଲେ ଡ଼ୋରୋଥି। ''ସୁବର୍ଣ୍ଣା, ମୁଁ ଲଞ୍ଚ ପାଇଁ ବାହାରକୁ ଯାଉଛି। ଫେରୁ ଫେରୁ ଟିକିଏ ଡେ଼ରି ହେବ। ଆଜି ଲଞ୍ଚ ପରେ ପରେ ଥାର୍ଡ଼ ଗ୍ରେଡ୍‌ର ଲାଇବ୍ରେରୀ କ୍ଲାସ୍ ଅଛି। ତୁମେ ଟିକିଏ ଏକା ସମ୍ଭାଳି ନେବ।''

ସୁବର୍ଣ୍ଣାକୁ କିଛି ପଚାରିବାର ସୁଯୋଗ ନ ଦେଇ କୋଟ୍‌ଟି ଗଳେଇ ନେଇ ସେ ଲାଇବ୍ରେରୀ ବାହାରକୁ ଚାଲିଗଲେ ।

ତାଙ୍କ ଯିବା ବାଟକୁ ଚାହିଁ ସୁବର୍ଣ୍ଣା ସତରେ ଅବାକ୍ ହୋଇ ଯାଇଥିଲା ।

ନା- ନିଶ୍ଚୟ ଡ଼ୋରୋଥିଙ୍କର କିଛି ହୋଇଛି । ନ ହେଲେ ସେଓଟିଏ ବା କଦଳୀଟିଏ ଖାଇ ଏବଂ କଳା କଫି ପିଇ ପିଇ ସାରାଦିନ କଟେଇ ଦେଉଥିବା ମଣିଷଟି ଲଞ୍ଚ୍ ପାଇଁ ବାହାରକୁ ଯିବ ! ଯିଏ ସ୍କୁଲ୍ ସମୟ ଭିତରେ ମୁହୂର୍ତ୍ତଟିଏ ନଷ୍ଟ ହୋଇଗଲେ ବ୍ୟସ୍ତ ହୋଇପଡେ, ସେ ପୁଣି ଡେରି କରି ଫେରିବ !! କ'ଣ ଅବସର ନେବା ସମୟ ପାଖେଇ ଆସିଲାଣି ବୋଲି ବିବ୍ରତ ହୋଇ ପଡିଛନ୍ତି ସେ ? ନା କୌଣସି ରୋଗର ସମ୍ଭାବନା ଦେଖା ଦେଇଛି ତାଙ୍କ ଭିତରେ ?

ବୟସ ତ କିଛି କମ୍ ହୋଇନାହିଁ । କିଏ ଜାଣେ କେଉଁ ରୋଗ ଆସି ହୁଏତ ଅଚାନକ ବସା ବାନ୍ଧି ବସିଛି ତାଙ୍କ ଶରୀର ଭିତରେ । ଆଉ ହଠାତ୍ ତା'ର ସୁରାକ ପାଇ ବୋଧହୁଏ ବିଚଳିତ ହୋଇ ପଡିଛନ୍ତି ଡ଼ୋରୋଥି ।

ଆହା ! ସୁବର୍ଣ୍ଣାର ନରମ ମନଟି ଘାଣ୍ଟି ହୋଇଗଲା । ମଣିଷଟି ଦିନ ପରେ ଦିନ ଏକା ଏକା ଚଳୁଛି । କେହି ଟିକିଏ ଆଉଁଶି ଦେବାକୁ ବା ମୁଣ୍ଡରେ ଦେହରେ ହାତ ବୁଲେଇ ଦେବାକୁ ନାହିଁ । ସାରାଦିନ ଲାଇବ୍ରେରୀରେ କଟେଇବା ପରେ ଶୂନ୍ୟ ଘରର ତାଲା ଖୋଲି ଭିତରେ ପଶିବା କି ଯେ ଯନ୍ତ୍ରଣାକର, କିଛିଟା ଅନୁଭବ କରି ପାରୁଛି ସେ । ଆଉ ସେଇ ମାନସିକ ଯନ୍ତ୍ରଣା ସହିତ ଯଦି ଶାରୀରିକ ଯନ୍ତ୍ରଣା ଯୋଡି ହୋଇଯାଏ, ତେବେ ?

ଡ଼ୋରୋଥିଙ୍କ ପିଲାମାନଙ୍କ ଉପରେ ସୁବର୍ଣ୍ଣାର ରାଗ ହେଲା । କେମିତିକା ଝିଅଗୁଡିକ ? ମା'ର ବୟସ ହେଉଛି, ଟିକିଏ ଖବର ନେବା, କିଛି ସମୟ ପାଇଁ ନିଜ ପୃଥିବୀରୁ ବାହାରି ମା'ଟିର ଯତ୍ନ କରିବା- ଏଭଳି ଇଚ୍ଛା ହୁଏ ନାହିଁ ସେମାନଙ୍କର ?

ନା- ସୁବର୍ଣ୍ଣା ଆଉ ଅଧିକ ସମୟ ଚୁପ୍ ହୋଇ ରହିପାରିବ ନାହିଁ । ଏ ଦେଶର ଚଳଣୀକୁ ବେଦର ଗାର ଭଳି ମାନି ନେଇ ନିଜ ଆଖି ସାମ୍ନାରେ ମଣିଷଟିଏକୁ ଛଟପଟ ହେବା ପାଇଁ ଛାଡି ଦେଇ ପାରିବ ନାହିଁ ସେ ।

ତିନିଟା ବେଳେ ଡ଼ୋରୋଥି ଫେରିଲେ । ସବୁଦିନିଆ ଅଭ୍ୟାସ ଅନୁଯାୟୀ

କୋଟ୍ ଟଙ୍ଗାଇ ପର୍କୋଲେଟରରୁ କପେ କଳା କଫି ମଗ୍‌ରେ ଢ଼ାଳିନେଇ ସେ ନିଜ ଚୌକି ନିକଟକୁ ଚାଲି ଆସିଲେ। ସୁବର୍ଣ୍ଣାକୁ ଚାହିଁ ମ୍ଳାନ ହସଟିଏ ହସି କହିଲେ, ''ହାଏ !''

ସୁବର୍ଣ୍ଣା ସମ୍ଭାଳି ପାରିଲା ନାହିଁ। ଡ଼ୋରୋଥିଙ୍କ ଡ଼ାହାଣ ହାତ ଧରି ପକେଇ କହିଲା, ''ଡ଼ୋରୋଥି, ମୁଁ ଏମିତି ପଚାରୁଛି ବୋଲି କିଛି ମନେ କର ନାହିଁ। ମତେ କୁହ, ତୁମର କ'ଣ ହୋଇଛି ! ପ୍ଲିଜ୍ ମୋଠାରୁ କଥା ଲୁଚେଇ ରଖ ନାହିଁ। ମୁଁ ପାରୁ ପର୍ଯ୍ୟନ୍ତ ତୁମକୁ ସାହାଯ୍ୟ କରିବାକୁ ଚେଷ୍ଟା କରିବି।''

ସୁବର୍ଣ୍ଣାର ଚିନ୍ତିତ ମୁହଁକୁ କିଛି ସମୟ ପାଇଁ ଦେଖିଲେ ଡ଼ୋରୋଥି। ବୋଧହୁଏ ସେ ଭାବୁଥିଲେ ତାକୁ କିଛି କୁହାଯାଇପାରେ ନା ନାହିଁ।

''ଜେସିକା- ଇଟ୍ ଇଜ୍ ଆବାଉଟ୍ ଜେସିକା। ସି ଇଜ୍ ପ୍ରେଗ୍‌ନାଣ୍ଟ। ସେ ମା' ହେବାକୁ ଯାଉଛି।''

ଗୋଟାଏ ଓଦା କମ୍ବଳ ଯେମିତି କିଏ ଚାପି ଦେଲା ସୁବର୍ଣ୍ଣାର ଛାତି ଉପରେ। ଜେସିକା ! ଡ଼ୋରୋଥିଙ୍କ ସାନଝିଅ ଜେସିକା ମା' ହେବାକୁ ଯାଉଛି ?

କିନ୍ତୁ ସେ ଯେ ଅବିବାହିତା !

ସୁବର୍ଣ୍ଣା ଜେସିକାକୁ କେବେ ଦେଖି ନାହିଁ, କେବେ ତା' ସହିତ କଥା ମଧ୍ୟ କହିନାହିଁ, କିନ୍ତୁ ଡ଼ୋରୋଥିଙ୍କ ଭିତର ଦେଇ ତାକୁ ଚିହ୍ନିଛି ଯେମିତି। ସେଇ ଜେସିକା ମା' ହେବାକୁ ଯାଉଛି !

ଡ଼ୋରୋଥି ଚୁପ୍ ହୋଇ ବସିଛନ୍ତି। ସୁବର୍ଣ୍ଣା କ'ଣ କହି ତାଙ୍କୁ ଆଶ୍ୱାସନା ଦେବ ଜାଣି ପାରୁନାହିଁ। ମଧ୍ୟବିତ୍ତ ଓଡିଆ ଘରର ଝିଅ ସେ। ସାରାଜୀବନ ଗୋଟିଏ ନିରାପଦ ସଂସାର ଭିତରେ ମଣିଷ ହୋଇଛି। ଏଭଳି ଏକ ପରିସ୍ଥିତିର ସମ୍ମୁଖୀନ ହେବାକୁ କେବେ ପଡିନାହିଁ ତାକୁ। କ'ଣ କେମିତି କହିବ ? କ'ଣ ବା କରିବ ? ଯେଉଁ ମା'ଟିର ଅବିବାହିତା ଝିଅଟି ସନ୍ତାନସମ୍ଭବା, ତାକୁ କ'ଣ କହି ବୁଝେଇବ ?

''ପିଲାଟିର ବାପା...''

''ତୁମେ ଜେସିକାର ବୟଫ୍ରେଣ୍ଡ ଏରିକ୍ କଥା ପଚାରୁଛ ? ସେ ତ ଏବେ ଷ୍ଟୁଡେଣ୍ଟ। ଜେସିକା କହୁଥିଲା ତା'ର ପଢ଼ାପଢି ସରିଲେ ସେମାନେ ହୁଏତ ବିବାହ କରିବେ। କିନ୍ତୁ ହଠାତ୍...'' ପୁଣି ନୀରବ ହୋଇଗଲେ ସେ।

ହୁଏତ ବିବାହ କରିବେ ? ବିବାହ ନ ବି କରିପାରନ୍ତି । ଓଃ !

ଆମେରିକାରେ ଏଇଭଳି ଘଟଣାର କମ୍ ଦୃଷ୍ଟାନ୍ତ ନାହିଁ। ବିବାହ ନ କରି ଦୁଇଜଣ ମଣିଷ ଶିଶୁଟିଏକୁ ସୂର୍ଯ୍ୟାଲୋକକୁ ନେଇ ଆସିବା ଅତି ସାଧାରଣ ଘଟଣା ଏ ଦେଶରେ। କିନ୍ତୁ ସୁବର୍ଣ୍ଣା ବ୍ୟତିବ୍ୟସ୍ତ ହୋଇ ପଡୁଥିଲା। ଧାଇଁ ଯାଇ ଏରିକ୍‌ର ବାଳ ଧରି ଘୋଷାଡି ଆଣି ଜେସିକା ସହିତ ବିବାହ ମଣ୍ଡପରେ ଠିଆ କରେଇ ଦେବାକୁ ଇଚ୍ଛା ହେଉଥିଲା ତା'ର।

ନା, ସେ ଜାଣେ ଏ ବ୍ୟକ୍ତି - ସ୍ୱାଧୀନତା ସର୍ବସ୍ୱ ଦେଶରେ ସେ ଏଇଭଳି କିଛି କରିପାରିବ ନାହିଁ। ଏଇଭଳି କିଛି ଘଟିଲେ ଯେ ଭଲ- ସେ ଉପଦେଶ ମଧ୍ୟ ଦେଇ ପାରିବ ନାହିଁ। ତାକୁ କେବଳ ନୀରବ ଦର୍ଶକଟିଏ ହେବାକୁ ପଡିବ।

କିନ୍ତୁ ଡ଼ୋରୋଥି ? ସେ ତ ପରୋକ୍ଷ ଭାବରେ ଝିଅକୁ ବିବାହ କରି ନେବାପାଇଁ କହିପାରିବେ। ମା' ହିସାବରେ ତାଙ୍କର କ'ଣ ଏତିକି ଅଧିକାର ନାହିଁ ?

ସାମାନ୍ୟ ଥତମତ ହୋଇ ସୁବର୍ଣ୍ଣା କହି ପକେଇଲା, ''ଏରିକ୍ ସହିତ ଜେସିକାର ବିବାହ ହୋଇପାରିଲେ ଭାରି ଭଲ ହୁଅନ୍ତା, ନୁହଁ ?''

ଅବୁଝା ଆଖିରେ ତାକୁ ଚାହିଁଲେ ଡ଼ୋରୋଥି।

''ବିବାହ ? ହୁ କେଆର୍‌ସ ଆବାଉଟ୍ ମ୍ୟାରେଜ ? ସେମାନେ ବିବାହ କଲେ କରନ୍ତୁ, ନ କଲେ ନାହିଁ। ଏଇଟା ସେମାନଙ୍କର ନିଷ୍ପତ୍ତି, ସେମାନଙ୍କର ଜୀବନ।''

ତେବେ ? ସୁବର୍ଣ୍ଣା ବୁଝିପାରୁ ନଥିଲା। ଯଦି ଡ଼ୋରୋଥିଙ୍କ ଚିନ୍ତାଧାରା ଏଇଭଳି, ତେବେ ଅଯଥା ଚିନ୍ତିତ ବା ଉଦ୍‌ବିଗ୍ନ ହେବାର ମାନେ କ'ଣ ? କିଛି ସମୟ ନୀରବ ରହି ହଠାତ୍ ଫାଟି ପଡିଲେ ଡ଼ୋରୋଥି।

''କୁହ, ଜେସିକାର ଏଭଳି ନିଷ୍ପତ୍ତିରେ ମୁଁ କାହିଁକି ଜଡିତ ହେବି ? ମୁଁ ତାକୁ ଜନ୍ମ ଦେଇଛି ସତ, କିନ୍ତୁ ସେ ଏବେ ସ୍ୱାଧୀନ। ସେ ଯଦି ମା' ହେବା ପାଇଁ ଚାହିଁଲା, ତେବେ ନିଜେ ନିଜର ଦାୟିତ୍ୱ ନେବା ଉଚିତ୍ ନୁହଁ କି ? ଯେହେତୁ ଏରିକ୍‌ର ମଧ୍ୟ ଏଥିରେ ମତ ଅଛି, ସେ ଏରିକ୍‌ର ସାହାଯ୍ୟ ନେଇପାରେ। ତା'ର ଇନ୍‌ସ୍ୟୁରାନ୍‌ସ ରହିଛି। ପ୍ରେଗ୍‌ନାନ୍‌ସି ବା ଡ଼େଲିଭରି ଖର୍ଚ୍ଚ

ତୁଲାଇବାରେ କୌଣସି ଅସୁବିଧା ନାହିଁ। ତେବେ ମୋ ଆଡକୁ ମୁହଁ ବୁଲେଇଛି କାହିଁକି ?''

ଘୂରିଯାଇ କମ୍ପ୍ୟୁଟର୍ ଉପରେ ଦୁଇ କହୁଣୀର ଭାରା ଥୋଇ ଦେଲେ ଡ଼ୋରୋଥି।

''ଜେସିକା ଆଜି ସକାଳେ ଫୋନ୍ କରି କହିଲା ଯେ ସେ ମାର୍ଚ୍ଚ ମାସରେ ମୋ ପାଖରେ ଆସି ରହିବ। ଏପ୍ରିଲ୍ ମାସରେ ତା'ର ଡ଼େଲିଭରି। ଏଠିକାର ଗୁଡ୍ ସାମାରିଟାନ୍ ହସ୍‌ପିଟାଲ୍ ସହିତ୍ ସେ କଥାବାର୍ତ୍ତା କରିଛି। ସେଇଠାରେ ସେ ଡ଼େଲିଭରି କରାଇବାକୁ ଚାହେଁ। ତୁମେ କୁହ, ମୁଁ କେମିତି ଏସବୁ ସମ୍ଭାଳିବି ? ମୁଁ ବା କାହିଁକି ସମ୍ଭାଳିବି ? ଆଫଟର୍ ଅଲ୍, ମୋର ମଧ୍ୟ ଗୋଟିଏ ଜୀବନ ଅଛି। ମୁଁ ତା' ପାଇଁ ଘାଣ୍ଟି ହେବାର କୌଣସି ମାନେ ହୁଏ ? ହଁ, ପିଲା ଜନ୍ମ ପରେ ସେ ଯଦି ମତେ ନିମନ୍ତ୍ରଣ କରିଥାଆନ୍ତା, ତେବେ ମୁଁ ନିଶ୍ଚୟ ଛୁଟିରେ ତା' ପାଖକୁ ଯାଇଥାଆନ୍ତି। କିନ୍ତୁ ଏମିତି ହଠାତ୍ ! ଓଃ ହାଓ ଟେରିବଲ୍।''

ସୁବର୍ଣ୍ଣାର କହିବା ପାଇଁ ଶକ୍ତି ଟିକକ ଯେମିତି ଚାଲିଯାଇଥିଲା। ଅନ୍ୟମନସ୍କ ଭାବରେ ତା' ଡାହାଣ ହାତର ଆଙ୍ଗୁଠିଗୁଡିକ କମ୍ପ୍ୟୁଟର୍‌ର କି-ବୋର୍ଡ ଉପରେ ଚାପ ଦେଇ ଚାଲିଥିଲେ। କେବେ ନ ଦେଖିଥିବା ଜେସିକା ଓ ସାନଭଉଣୀ ଅପୁର ମୁହଁ କମ୍ପ୍ୟୁଟର୍ ପରଦାରେ ଯେମିତି ଆଙ୍କି ହୋଇ ଏକ ହୋଇ ଯାଉଥିଲା। କିନ୍ତୁ ଚେଷ୍ଟା କରି ଡ଼ୋରୋଥିଙ୍କ ରେଖାକୃତି ଉପରେ ତା' ବୋଉର ପ୍ରତିଛବିଟିକୁ ଧରି ପାରୁ ନଥିଲା ସେ। □□

# ନିଷିଦ୍ଧ ନୀଡ଼

କୌଣସି ମହାର୍ଘ ପଦାର୍ଥକୁ କେହି ଯେମିତି ସଂପି ଦେଇ ଯାଇଛି। ଶୁଭଶ୍ରୀ ଋଷି କନ୍ୟା ଭଳି ଧ୍ୟାନସ୍ଥ ହୋଇ ବସିଥିଲା। ଦୁଇ ଖୋଲା ହାତରେ ତା'ର ଏବେ ବି ରହିଥିଲା ସେଇ ଅମୂଲ୍ୟ ଜିନିଷଟି। ବୀଣା ମାଉସୀଙ୍କ ହାତ ଲେଖା ପାଞ୍ଚ ଧାଡ଼ିର ଚିଠି। ପୋଷ୍ଟମ୍ୟାନ୍‌ର ଡ଼ାକରେ ଥାଳି ଛାଡ଼ି ସେ ଉଠି ଆସିଥିଲା। ତା'ପରେ ଚିଠି ପାଇ, ପଢ଼ି ଏ ଅବସ୍ଥା। ସେତେବେଳଠୁଁ ସେଇମିତି ବସିଛି ଯେ ସେ ବସିଛି। ଭାତ ତେଣେ ଶୁଖି ଚଣା ଚାଉଳ ହୋଇ ସାରିବଣି। ହଉ ପଛକେ - ଏଭଳି ଜିନିଷଟିଏକୁ ହାତରୁ କାଢ଼ି ରଖି କେହି ଭାତ ଖାଇ ବସେ ନା କ'ଣ ?

ପ୍ରାୟ ଦଶ ଥର ପଢ଼ି ସାରିଥିବା ଚିଠିଟି ଭିତରେ ଶୁଭଶ୍ରୀ ମୁହଁ ଗୁଞ୍ଜି ଦେଲା। ମାଉସୀର ଅଙ୍କା ବଙ୍କା ଅକ୍ଷର ଦେଇ, ପୋଷ୍ଟ ଅଫିସ୍‌ର ମୋହର ଦେଇ ତା' ଗାଁ ମାଟିର ଭିଜା ଭିଜା ବାସ୍ନା ଯେମିତି ପଶି ଆସିଛି ଏଥିରେ। ସେଥିରେ ଗୋଳେଇ ହୋଇଯାଇଛି ମାଉସୀର ଅଫୁରନ୍ତ ସ୍ନେହ। ମୁହଁ ଟେକି ଆଣି ପୁଣି ଥରେ ଚିଠିଟିକୁ ପଢ଼ିବାକୁ ଚେଷ୍ଟା କଲା ସେ। କାହିଁକି ଭଲରେ ପଢ଼ି ହେଉନି ? ଅପାଠୋଇ ମାଉସୀର ବୟସ୍କ ହାତର ଲେଖା କ୍ରମଶଃ ଅଧିକ ଆଲୁବାଲୁ ହୋଇଯାଉଛି ନା ଲୁହରେ ରୁଂଧି ହୋଇ ତା' ଆଖି ଦିଇଟା ହିଁ ଢାଲଢାଲୁଆ ହୋଇ ଯାଇଛି ? ଶାଢ଼ି କାନିରେ ଭଲ କରି ମୁହଁ ପୋଛି ଆଣିଲା ଶୁଭଶ୍ରୀ।

ଟିକିର ବାହାଘର। ଏଇ ଖବର ନେଇ ଶହଶହ ମାଇଲ ଅତିକ୍ରମ କରି ଆସିଛି ଚିଠିଟି। ମାଉସୀ ତା'ର ସ୍ନେହବୋଳା ହୃଦୟରୁ କାଣିଚାଏ କାଗଜ ଉପରେ ଅଜାଡ଼ି ଦେଇ ତାଗିଦା କରି ଲେଖିଛି - ସେ ଓ ଅମରେନ୍ଦ୍ର ଯେମିତି ହାତରେ ସମୟ ରଖି ବାହାଘରର ବେଶ୍ କିଛିଦିନ ଆଗରୁ ଆସି ପହଞ୍ଚନ୍ତି। ନହେଲେ କ'ଣ କେମିତି ହେବ ଯେ ? କିଏ ଉଠେଇବ ବାହାଘର ?

ଲୁହବୋଳା ମୁହଁରେ ଫିକ୍ କରି ହସି ଦେଲା ଶୁଭଶ୍ରୀ। ମାଉସୀର ଯେଉଁ କଥା! ତିନି ପୁଅ ବୋହୁ, ଦୁଇଝିଅ ଜ୍ୱାଇଁ, ଦିଅର ଜାଆ, ନଣଂଦ ନଣଂଦେଇ... ଏତେ ବଡ଼ ସଂସାର ତା'ର। ଅଥଚ କୋଡ଼ିଏ ବର୍ଷର ଶୁଭଶ୍ରୀ ଓ ଛବିଶ ବର୍ଷର ଅମରେଂଦ୍ର ନ ଆସିଲେ ସବୁ ଯେମିତି ଅଟକି ଯିବ! ସେ ଦୁଇ ଜଣଙ୍କ ଛଡ଼ା ତା'ର ଆଉ ଯେମିତି କେହି ନିଜର ନାହାନ୍ତି।

ଶୁଭଶ୍ରୀ ଅନ୍ୟମନସ୍କ ହୋଇପଡ଼ିଲା। ପରକୁ କିଏ ଏତେ ଆପଣାର କରେ ?

ଯେତେବେଳେ ଶୁଭଶ୍ରୀର ବୟସ ମାତ୍ର ଏଗାର, ସେତେବେଳେ କୋଉ ଗୋଟାଏ ମଂଦିର ଦର୍ଶନ କରିବାକୁ ଯାଇ ଆଉ ଫେରି ନ ଥିଲେ ତା' ବାପା ମା'। ଖବର ଆସିଥିଲା ନୌକା ବୁଡ଼ିଛି। ନାଉରୀ ସମେତ ସବୁ ଯାତ୍ରୀ ଶେଷ। ବାସ୍ - ମୁହୂର୍ତ୍ତକ ମଧ୍ୟରେ ଦୁନିଆ ଓଲଟପାଲଟ ହୋଇଗଲା ଶୁଭଶ୍ରୀର।

ଏକମାତ୍ର ସନ୍ତାନ ବୋଲି ମା' ବାପାଙ୍କ କୋଳରେ କୋଳରେ ବଢ଼ି ଆସିଥିବା ପିଲାଟି ହଠାତ୍ ଅନାଥ, ଆଶ୍ରୟହୀନ ହୋଇ ପଡ଼ିଲା। ତାକୁ ନେଇ ଯେଉଁ ଠେଲାଠେଲି ଆରମ୍ଭ ହୋଇଯାଇଥିଲା, ସେ କଥା ଦେଖି ସେ ଏତେ ବେଶୀ ଅବାକ୍ ହୋଇଯାଇଥିଲା ଯେ ଆଖି ଲୁହ ଝରାଇବା କଥା ଭୁଲିଯାଇଥିଲା। ଏବେ ବି ସେ ବିଷୟ ମନେ ପଡ଼ିଲେ ଘାଣ୍ଟୁ ପାଲଟିଯାଏ ଶୁଭଶ୍ରୀ। କେହି ଯେମିତି ତାକୁ ଛୁଇଁବାକୁ ପ୍ରସ୍ତୁତ ନ ଥିଲେ। ବାବାରେ ବାବା। ଏକେ ତ ଝିଅ। ପୁଣି ମା' ବାପାଙ୍କର ମୁହଁବଢ଼ା ଝିଅ। ଜାଣିଶୁଣି କିଏ ମୁଠାଏ ନିଆଁକୁ ଅଞ୍ଚିରେ ପୁରାଏ ? ବଡ଼ କକେଇ ଖୁଡ଼ୀ ବୋଝ ବଢ଼େଇ ଦେଇଥିଲେ ସାନ କକେଇ ଖୁଡ଼ୀଙ୍କୁ। ସାନ ଖୁଡ଼ୀଙ୍କ ମୁହଁମୋଡ଼ାରେ ଅତିଷ୍ଠ ହୋଇ ସାନ କକେଇ ତାକୁ ଠେଲିଦେଇଥିଲେ ପିଉସୀ ଦୁଆର ମୁହଁକୁ।

ଏତେଦିନ ନିଜର ବୋଲି ଭାବିନେଇଥିବା ମଣିଷମାନେ ଏମିତି ଖାପଛଡ଼ା ବ୍ୟବହାର କରିପାରନ୍ତି ? ଏ ଦୁଆରରୁ ସେ ଦୁଆରକୁ ଠେଲା ଖାଇ ଖାଇ

ଯେତେବେଳେ ଶୁଭଶ୍ରୀର କୋମଳ ହୃଦୟ ରକ୍ତାକ୍ତ ହୋଇ ଆସିଥିଲା, ଠିକ୍ ସେତିକିବେଳେ ଭାଗ୍ୟ ଫେରିଥିଲା ତା'ର। ସ୍ନିଗ୍ଧ ଚାଂଦ ଆଲୁଅର ଘୋଡ଼ଣୀ ବେଢ଼ାଇ, ସ୍ନେହର ପାଲିଙ୍କିରେ ରାଜକନ୍ୟା ଭଳି ବସେଇ ତାକୁ ପାଖକୁ ନେଇ ଯାଇଥିଲା ବୀଣା ମାଉସୀ।

ସ୍ୱସ୍ତିର ନିଶ୍ୱାସ ନେଇଥିଲେ କକେଇ ଖୁଡ଼ୀ, ପିଉସା ପିଉସୀ। ବଞ୍ଚେଇ ଦେଲେ ଜଗନ୍ନାଥ !

ମଣିଷ ପୁଣି ଏତେ ବୋକା ହୁଏ ? ଗାଁର କେଇଜଣ ମାଉସୀକୁ ଚେତେଇ ଦେବାକୁ ଆସିଥିଲେ। କୋଉ ଅବା ନିଜ ଭଉଣୀର ପିଲା ଯେ ଏତେ କଥା ? କ'ଣ ନା ସଂଗାତର ଝିଅ। ନିଜ ରକ୍ତ ଯେଉଁଠି ମୁହଁ ବୁଲାଇ ନଉଛି, ସେଠି ତୁମର କ'ଣ ଦରକାର ଧୂଳି ଖେଳ ସାଥୀକୁ ମନେ ପକେଇ ତା' ଝିଅକୁ କୋଳେଇ ନେବା ?

ଗର୍ଜି ଉଠିଥିଲା ମାଉସୀ, ''ମଲାମର, ତମର ଖାଇ ଯାଉଛି ନା କ'ଣ ପିଲାଟା ? ଏଡ଼ିକି ଟିକିଏ ସେଁଏକି ଝିଅ। ତାକୁ ଦେଖି ତମ ଦିହ କାହିଁକି ସହୁନି ବା ? ମୋର ପାଞ୍ଚୋଟା ଥିଲେ, ଏବକୁ ଛଅଟା ହେଲେ।''

ବୀଣା ମାଉସୀର ଶାଣଦିଆ ମୁହଁ ବାହାରର ସମସ୍ତଙ୍କୁ ଚୁପ୍ କରେଇ ଦେଇଥିଲା। କହିଥିଲେ କହିଥାନ୍ତେ ଶ୍ୟାମ ମଉସା। କିନ୍ତୁ ସେ ତ ସଂସାର ଭୋଳା ଲୋକ। ସବୁ ଦାୟିତ୍ୱ ସ୍ତ୍ରୀକୁ ଦେଇ ନିଶ୍ଚିନ୍ତ। ତାଙ୍କର ଏସବୁରେ କ'ଣ ଯାଏ ଆସେ ? ବୀଣା ଯଦି ବୋଝ ମୁଣ୍ଡେଇ ପାରିବ, କରୁ। ମାଉସୀର ଦୁଇ ଦିଅର ଏଭଳି ନିଷ୍ପତ୍ତିରେ ଖୁବ୍ ଗୋଟାଏ ଖୁସୀ ହୋଇ ନ ଥିଲେ ବୋଧହୁଏ। କିନ୍ତୁ ସେମାନେ ଭାଇନା, ଭାଉଜଙ୍କର ଆଶ୍ରିତ। ମୁହଁ ଖୋଲି ସମାଲୋଚନା କରିଥିଲେ ଯେ ନିଜ ଆସ୍ଥାନ ଟଳମଳ ହୋଇଥାଆନ୍ତା। ତେଣୁ ଅଗତ୍ୟା ନୀରବ ରହିଯାଇଥିଲେ ସେମାନେ।

ଏବଂ ଶୁଭଶ୍ରୀ ନିଜର ପେଡ଼ିପେଟରା ବାନ୍ଧି ବୀଣା ମାଉସୀ ଘରେ ସବୁଦିନ ପାଇଁ ରହିବାକୁ ଚାଲି ଆସିଥିଲା। ଘରର ଅନ୍ୟ ସଦସ୍ୟମାନଙ୍କର ମନତଳେ ଥିବା ହେୟ ଭାବକୁ ସେ ଠିକ୍ ବୁଝି ପାରିଥିଲା। ହେଲେ ମାଉସୀ କାନିତଳେ ରହି ପୁଣି ଭୟ କାହାକୁ ?

ବୀଣା ମାଉସୀ ଘରେ ଏଇଭଳି ଅଯାଚିତ ଭଲପାଇବା ଶୁଭଶ୍ରୀ ପାଇଥିଲା

ଆଉ ଜଣଙ୍କଠୁଁ। ସେ ହେଲା ଟିକି। ମାଉସୀର ସବା ସାନ କୋଳପୋଛା ଝିଅ। ଏ ସେଇ ଟିକି, ଯାହା ବାହାଘର ପାଇଁ ଅନଭିଜ୍ଞ ହାତରେ କଲମ ଧରିଛି ମାଉସୀ। ଯିଏ ଆଉ ମାସଟାଏ ପରେ ଓଢ଼ଣା ପକେଇ ସତସତିକା ବୋହୂ ହୋଇ ବେଦୀରେ ବସିବ। ତା'ଠାରୁ ବର୍ଷେ ସାନ ଟିକି। କିନ୍ତୁ କେବେହେଲେ ସେ ଶୁଭଶ୍ରୀକୁ ନାନୀ ବୋଲି ଡ଼ାକିନାହିଁ। ମାଉସୀଠୁ ଗାଳି ଖାଇଲେ, ସମସ୍ତଙ୍କ ସାମ୍ନାରେ ଦୋଷ କଟେଇବାକୁ ସେ ସିନା ଡ଼ାକେ 'ଶୁଭନାନୀ' ବୋଲି; ହେଲେ ଏକାନ୍ତରେ ତା'ର ସେଇ ଅତି ନିଜର ଡ଼ାକ 'ଶ୍ରୀ'।

''ଏଇଟା ଗୋଟାଏ କି ଡ଼ାକ?'' ମୁହଁ ମୋଡ଼ିଥିଲେ ସମସ୍ତେ, ''ଶ୍ରୀ ନା ଛତୁ!''

ଟିକି ରାଗି ନଥିଲା। ଦୟା କଲା ଭଳି କହିଥିଲା, ''ପାଠ ଶାଠ ନ ପଢ଼ିଲେ ଏ ଶବ୍ଦର ଅର୍ଥ ତୁମେମାନେ ବୁଝିବନି। ଶ୍ରୀ ମାନେ ଐଶ୍ୱର୍ଯ୍ୟ। ଶ୍ରୀ ମାନେ ସୌଭାଗ୍ୟ। ଲକ୍ଷ୍ମୀ, ସରସ୍ୱତୀଙ୍କ କଳା ନେଇ ଯିଏ ଜନ୍ମ ନିଏ ସେ ହିଁ ଶ୍ରୀ।''

ଏଥର ବୀଣା ମାଉସୀ ବି ହସି ପକେଇଥିଲା। ''ହଇଲୋ ଏ ଟିକି, ଏସବୁ ଗୁଣ ଅଛି ଆମ ଶୁଭ ଭିତରେ?''

''ତୁ ଯଦି ଜାଣି ପାରୁନୁ, ଅନ୍ୟ ମାନେ ତାହେଲେ କେମିତି ଜାଣିବେ?'' ଟିକି ସାମାନ୍ୟ ବିରକ୍ତ ହୋଇ କହିଥିଲା।

ମାଉସୀ ହସିଦେଇ ପଳେଇଥିଲା। ଆଉ ସତରେ ଅବାକ ହୋଇଯାଇଥିଲା ଶୁଭଶ୍ରୀ। ଏ ଝିଅଟି ତାକୁ ଟେକି ନେଇ କେଉଁଠି ବସେଇ ଦେଉଛି? ସତେ କ'ଣ ଏଭଳି ଗୋଟିଏ ଆସ୍ଥାନର ଯୋଗ୍ୟ ସେ?

ଭାଇଭଉଣୀଶୂନ୍ୟ ସଂସାରରେ ବଢ଼ି ଆସିଥିଲା ଶୁଭଶ୍ରୀ। ତା' ଭିତରେ ଏତେଦିନ ଖାଲି ସାଇତା ହୋଇ ରହିଥିଲା ସ୍ନେହ ମମତାର ପେଡ଼ିଟି। ଏତେ ବର୍ଷ ପରେ ଟିକିକୁ ପାଇ ଅକୁଣ୍ଠିତ ଭାବରେ ସେ ସବୁ ଅଜାଡ଼ି ଦେଇଥିଲା। ଟିକି ଆଉ ସେ ହୋଇଗଲେ ଅଭିନ୍ନ। ଏକାଠି ସ୍କୁଲ ଯିବା, ଏକାଠି କଉଡ଼ି ଖେଳିବା, ଏକାଠି ପଖାଳ ଖାଇବା... ସବୁ କିଛି ତ ଥିଲା ସାଙ୍ଗ ହୋଇ।

ତା'ରି ଭିତରେ ଦିନେ ଶୁଭଶ୍ରୀର ବାହାଘର ଠିକ୍ ହୋଇଗଲା ଅମରେନ୍ଦ୍ର ସାଙ୍ଗରେ। ସେ ଦିନାକେତେ ଜିଦି ଧରିଥିଲା। ଏବେ ବାହା ହେବ ନାହିଁ।

ଆହୁରି ପଢ଼ିବ। ଟିକି ବି ଘରେ ପାଟିତୁଣ୍ଡ କରିଥିଲା। ଯିଏ ଏତେ ଭଲ ପାଠ ପଢୁଛି, ତାକୁ ଅଧିକ ପଢ଼ିବାର ସୁଯୋଗ ଦେବା ଉଚିତ। ନିଜ ଗୋଡ଼ରେ ଠିଆ ହେବାର ଶକ୍ତି ଦେବା ଉଚିତ। କିଏ ଜାଣେ ଭବିଷ୍ୟତ କଥା? କିନ୍ତୁ ସେଇ ଅଳିଟି ରଖିଲା ନାହିଁ ମାଉସୀ। ଅଧିକ ପଢ଼ି କ'ଣ ଦେଶ ଉଜାଳିବ? ଠାକୁରଙ୍କ କୃପାରୁ ଭଲ ବର, ଭଲ ଘର ମିଳିଛି। ସେସବୁ କିଏ ହାତଛଡ଼ା କରେ?

ତା' ବାହାଘର ହୋଇଗଲା। ଶୁଭଶ୍ରୀ ଭାବିଥିଲା ବୋଧହୁଏ ସାଇ ପଡ଼ିଶାଙ୍କ ଭୟରେ ପରଝିଅ ବୋଲି ତାକୁ ଶୀଘ୍ର ବାହା କରେଇ ଦେଉଛି ମାଉସୀ। କାଲେ କିଏ କହିବ ଅନାଥ ପିଲାଟାକୁ ଘରେ ରଖି ବେଠି ଖଟାଉଛି। କିନ୍ତୁ ଟିକିକୁ ନିଶ୍ଚୟ ପଢ଼ାଇବ ସେ। ଟିକି ବି ପାଠ ପଢ଼େ ଭଲ। ତା'ର କେତେ ଇଚ୍ଛା ଡ଼ାକ୍ତରଟିଏ ହେବାକୁ। ମାଉସୀ ନିଶ୍ଚୟ ସାନ ଝିଅର ମନକଥା ରଖିବ। ହେଲେ କାହିଁ? ତା' କାଂଧରେ ବି ତ ଜୁଆଳି ପକେଇ ଦେବାକୁ ବସିଲାଣି ସେ। ହଉ କରୁ ମାଉସୀ। ସେ କ'ଣ ଆଉ ନ ଭାବି ନ ଚିନ୍ତି ଝିଅକୁ ଟେକି ଦେଉଥିବ?

ସେ ତ ପୁଣି ଅମରେଂଦ୍ର ଭଳି ଜଣଙ୍କୁ ବାଛି ଆଣିଲା ଶୁଭଶ୍ରୀ ପାଇଁ। ଅମରେଂଦ୍ରଙ୍କ ଚାକିରି ଛୋଟ। କିନ୍ତୁ ମଣିଷ ହିସାବରେ ତାଙ୍କର ତୁଳନା ହୁଏ?

କାନିରେ ମୁହଁ ପୋଛି ଚିଠିଟିକୁ ସଜାଡ଼ି ରଖିଲା ଶୁଭଶ୍ରୀ। ଅମରେଂଦ୍ର ଆସିଲେ ଦେଖାଇବାକୁ ହେବ। ମାଉସୀ କେତେ କରି ଲେଖିଛି - ବାହାଘର ଦଶ ଦିନ ଆଗରୁ ଅନ୍ତତଃ ଆସିବାକୁ। ପରେ ପୁଣି ଅଷ୍ଟ ମଙ୍ଗଳା ଯାଏଁ ରହିବାକୁ। ଯିବା ଆସିବା ସବୁ ମିଶାଇଲେ କୋଡ଼ିଏ ବାଇଶ ଦିନ ହୋଇଯିବ। ସତେ କ'ଣ ତାଙ୍କୁ ଏତେ ଗୁଡ଼ାଏ ଦିନ ଛୁଟି ମିଳିବ?

ତାଙ୍କର ଛୋଟ ଚାକିରିରେ ସମସ୍ତଙ୍କର ମନ ଜଗିବାକୁ ହୁଏ। ଆଜିକାଲିକା କଥା। ଛୋଟ ଛୋଟ କାରଣରେ ଚାକିରିରୁ ଛଟେଇ କରିଦେବାର ଦୃଷ୍ଟାନ୍ତ କମ୍ ନାହିଁ। ସେଭଳି କଛି ହେଲେ କି ଅବସ୍ଥା ହେବ? କେତେ ଲୋକ ଅମରେଂଦ୍ରଙ୍କର ସେଇ ଦରମା ମୁଠାକ ଉପରେ ନିର୍ଭର କରନ୍ତି? ଗାଁରେ ଶାଶୁ ଶ୍ୱଶୁର। ହଷ୍ଟେଲରେ ଦୁଇ ଦିଅର। ଆଉ ସେମାନେ ଦୁଇ ଜଣ ତ ଅଛନ୍ତି। ଏତେ ଗୁଡ଼ାଏ ଜୀବନ ଯେଉଁଠି ଗୋଟିଏ ଚାକିରିକୁ ଆଶ୍ରା କରି ରହିଛନ୍ତି,

ତାକୁ କ'ଣ ବାଜି ଲଗେଇ ଛୁଟି ନେବା ଚଳେ ?

ଶୁଭଶ୍ରୀ ଭାବନାରେ ପଡ଼ିଗଲା ।

ନା- ଭାବିବାର କ'ଣ ଅଛି ? ଅମରେଂଦ୍ରକୁ ଛୁଟି ମିଳିଲେ ଭଲ କଥା । ନହେଲେ କ'ଣ ଟ୍ରେନ୍, ବସ୍ କରି ସେ ଗାଁରେ ପହଞ୍ଚି ପାରିବନି ? ଦିଲ୍ଲୀରୁ ନୀଳାଚଳରେ କଟକ । ଷ୍ଟେସନରୁ ରିକ୍ସା କରି ବସ୍‌ଷ୍ଟାଣ୍ଡ୍ । ସେଠୁ ପ୍ରାଇଭେଟ ବସ୍ ଧରିଲେ ସିଧା ଗାଁ ମୁଣ୍ଡରେ ଓହ୍ଲେଇଦେବ । ଏତିକି ସେ ପାରିବନି ? ବେଶୀ ପାଠ ପଢ଼ି ଚାକିରି କରିଥିଲେ ପୁଣି କେମିତି ହୋଇଥାନ୍ତା ? ସେତେବେଳେ ତ ବାରଲୋକଙ୍କ ସାଙ୍ଗରେ ବସ୍ ଟ୍ରେନ୍‌ରେ ଯିବାକୁ ପଡ଼ିଥାଆନ୍ତା ତାକୁ ।

ଶୁଭଶ୍ରୀ ଅଇଁଠା ଥାଳି ଉଠେଇନେଇ ଭାତତକ ରାସ୍ତା କଡ଼ରେ ଗଦେଇଦେଲା । ନଷ୍ଟ କାହିଁକି ହେବ ? ଖାଆନ୍ତୁ କୁକୁର ବିଲେଇ । ରୋଷେଇ ଘରେ ପଡ଼ିଥିବା ବାସନ ଦୁଇ ଖଣ୍ଡ ମାଜିନେଇ ସେ ତଳ ପୋଛି ନେଲା । ଓଃ, କାହିଁକି ଯେ ସମୟ ଆଜି ଆଉ ଟିକିଏ ଶୀଘ୍ର ଶୀଘ୍ର ଯାଉନି ! ସେ ଅମରେଂଦ୍ରଙ୍କ ଆସିବା ପାଇଁ ଏମିତି ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରି ରହିଛି, ଅଥଚ ସମୟ ଯେମିତି ଜିଭ ଦେଖେଇ ଖତେଇ ହେଉଛି ତାକୁ । ଘଡ଼ିର କଣ୍ଟାକୁ ପଛରୁ ଟାଣି ଟାଣି ଧରୁଛି ମଜା ଦେଖିବାକୁ ।

ମାଉସୀ ଚିଠିକୁ ଜାକିଧରି ବିଛଣାରେ ଗଡ଼ି ପଡ଼ିଲା ଶୁଭଶ୍ରୀ । ନିଠେଇ ନିଠେଇ ପଢୁ ପଢୁ ଆଖି ଲାଗିଯାଇଥିଲା ବୋଧହୁଏ ତା'ର । ବାହାର କବାଟର ଝଂଜିର ଖଡ଼ଖଡ଼ରେ ତା' ନିଦ ଚଟ୍ କରି ଭାଙ୍ଗିଗଲା । ଆସିଗଲେ ଅମରେଂଦ୍ର ? ୟା ଭିତରେ କ'ଣ ସାଢ଼େ ପାଞ୍ଚଟା ହୋଇଗଲା ?

ଝର୍କା ବାହାରେ ଏବେବି ଜୋର ଖରା । ଝର୍କା ସେପାଖ ରାସ୍ତାରେ ଦଳଦଳ ହୋଇ ସ୍କୁଲ ପିଲା ଚାଲିଛନ୍ତି । ତା'ମାନେ ଏପର୍ଯ୍ୟନ୍ତ ଚାରିଟା ବି ବାଜିନି । କିଏ ଆସିଲା ଏମିତି ଅବେଳରେ ? ଅଧା ନିଦ ଅଧା ଜଗା ଭିତରେ ଦାଣ୍ଡ କବାଟକୁ ଚଟ୍ କରି ଖୋଲିଦେଲା ଶୁଭଶ୍ରୀ ।

ବାହାରେ ପ୍ରବଳ ଭିଡ଼ । କିଏ ସବୁ ଦଳ ବାଂଧି ଠିଆ ହୋଇଥିଲେ ଗେଟ୍ ପାଖରେ । କବାଟ ଖଡ଼ଖଡ଼ କରିଥିବା ଲୋକଟିର ମୁହଁକୁ ଚାହିଁଲା ସେ । ଯେ ଅମରେଂଦ୍ର ଅଫିସରେ କାମ କରନ୍ତି ନା କ'ଣ । ଦେଖିବା ଭଳି ଲାଗୁଛି । କ'ଣ ସବୁ ସେ ପାଗଳଙ୍କ ଭଳି କହୁଛନ୍ତି ?

ଆକ୍ସିଡ଼େଣ୍ଟ ! କାହାର ଆକ୍ସିଡ଼େଣ୍ଟ ? ଟିକିଏ ଦୂରରେ ଧଳା ଚାଦର ଘୋଡ଼ା ହୋଇ କାହାକୁ ଜାଣ ଶୁଆ ହୋଇଛି । ଧଳା ଚାଦର ଉପରେ ନାଲି ନାଲି ଦାଗ । ରକ୍ତ ? କିଏ ସେ ? ତାକୁ ଶୁଭଶ୍ରୀ ଦୁଆର ମୁହଁକୁ କାହିଁକି ଆଣିଛନ୍ତି ?

ଚଦର ଘୋଡ଼ା ମଣିଷର ବାଁ ହାତ ଟିକିଏ ବାହାରକୁ ବାହାରି ଆସିଛି । ନୀଳ ଆଉ କଳା ରଙ୍ଗର ଚେକ୍ ସାର୍ଟ । ଗୋରା ହାତରେ ଧଳା ପଥର ବସା ମୁଦିଟିଏ । ଶୁଭଶ୍ରୀ କ'ଣ ଏ ମୁଦି ପିଂଧା ହାତକୁ ଚିହ୍ନେନାହିଁ ? ସତରେ କ'ଣ ଚେକ୍ ସାର୍ଟଟା ତା'ର ଅଜଣା ? କାଲି ହିଁ ତ ସେ ନିଜ ହାତରେ ସେଇ ସାର୍ଟଟିକୁ କାଚି ଶୁଖାଇଥିଲା । ମଇଳା ଛଡ଼େଇବାକୁ ଜୋରରେ ଚଳେ କଚି ଦେଇଥିଲା ଯେ ହାତ ବୋତାମ ଅଧା ଭାଙ୍ଗି ଯାଇଥିଲା । ଏତେ ଦୂରରୁ ବି ସେ ଦେଖିପାରୁଥିଲା ଅଧା ଭଙ୍ଗା ବୋତାମଟା ।

ଆଃ-

ତା'ପରେ କ'ଣ ଯେ ହୋଇଥିଲା ଶୁଭଶ୍ରୀ କିଛି ଜାଣେ ନାହିଁ । କିଏ ସବୁ କେମିତି ବହୁତ ଦୂରରୁ କ'ଣ କଥା କହୁଥିଲେ । କିଏ ଜେଜାଣି ଏମାନେ ? ତା' ଘରେ ସମସ୍ତେ କାହିଁକି ଭିଡ଼ ଜମେଇଛନ୍ତି, ସେ ବୁଝି ପାରୁ ନ ଥିଲା । ଆଖି ବୁଲେଇ ଆଣିଲା ସେ । ଆରେ, ତା' ଶାଶୁ ଶ୍ୱଶୁର ଆସିଲେ କେତେବେଳେ ? ସେ ତ ଏପର୍ଯ୍ୟନ୍ତ ସେମାନଙ୍କୁ ମୁଣ୍ଡିଆ ମାରିନି !

''ଉଠନି ଭାଉଜ, ଉଠନି । ହାତରେ ସାଲାଇନ୍ ଲାଗିଛି ।''

ଏ ତ ଦିଅର ରାଜେନ୍ଦ୍ର ! ସେ ବି ହଷ୍ଟେଲରୁ ଚାଲି ଆସିଛନ୍ତି ? ହଠାତ୍ ହାତଟା ସିରିସିରି ହୋଇ ଉଠିଲା ଶୁଭଶ୍ରୀର । ଆରେ, ହାତରେ ଛୁଞ୍ଚି ଫୋଡ଼ା ହୋଇ ଟିଉବ୍‌ଟିଏ ଲାଗିଛି ଯେ ! ସେ କ'ଣ ଅସୁସ୍ଥ ହୋଇ ପଡ଼ିଥିଲା ?

ହଠାତ୍ ସବୁ ମନେ ପଡ଼ିଗଲା ଶୁଭଶ୍ରୀର । ବିକଳ ହୋଇ ଚିତ୍କାର କରି ଉଠିଲା ସେ, ''ବୀଣା ମାଉସୀ ଲୋ !''

ଶୁଭଶ୍ରୀ ମୁଣ୍ଡରେ କିଏ ଜଣେ ହାତ ବୁଲେଇ ଦେଲା । ଲୁହର ପର୍ଦା ତଳୁ ଭଲକରି ଦେଖିବାକୁ ଚେଷ୍ଟା କଲା ସେ । ''ମଉସା !'' ଶ୍ୟାମ ମଉସା ଆଉ ସମ୍ଭାଳି ପାରିଲେ ନାହିଁ । ବାଁ ହାତ ଆଖି ଉପରେ ମାଡ଼ି ଦେଇ ସକସକ ହେଇ କାଂଦି ପକେଇଲେ ।

ସେପାଖରେ କିଏ ଜଣେ କାହାକୁ କହୁଥିଲା, ''କିଛି କେଉଁଠି ନାହିଁ ।

ମଣିଷଟା ଦୋକାନରେ ଚାହା ପିଇ ଅଫିସକୁ ଫେରୁଥିଲା । କୋଉଠୁ ଗୋଟାଏ ଗାଡ଼ି ସାଏଁ କରି ଆସି ମଡ଼େଇ ଦେଇ ଚାଲିଗଲା । ସେଇଠି ସବୁ ଶେଷ ।''

''ଡ଼ାକ୍ତରଖାନା ନେଲ ନାହିଁ ।''

''ନେଇଥିଲୁ ! ଆଉ କ'ଣ ବାକି ଥିଲା ଯେ ! ସବୁ ଭାଇ ଭାଗ୍ୟ । ନହେଲେ ଏମିତିଆ ଭଲ ମଣିଷଟା ଏମିତି ଭାବରେ ଯାଇଥାଆନ୍ତା... ।''

ଏମାନେ କାହା କଥା କହୁଛନ୍ତି ? ଶୁଭଶ୍ରୀକୁ ଭଲ ଲାଗୁ ନଥିଲା । କାହାନ୍ତି, କାହାନ୍ତି ଅମରେନ୍ଦ୍ର ? ଗୋଟାଏ ଶୂନ୍ୟତାର ବୋଝ ହଠାତ୍ କରି ତା' ଉପରେ ଲଦି ହୋଇଗଲା । ମାଟି ଭିତରେ ଧସି ଯାଉଛି ଯେମିତି ସେ । ମକଚି ଯେମିତି ହୋଇଯାଉଛି ତା' ଅନ୍ତନାଡ଼ୀ । ପୁଣି ସେଇ ଅତି ପ୍ରିୟ ଅଂଧାର ।

ଶୁଭଶ୍ରୀ ସାମାନ୍ୟ ସୁସ୍ଥ ହୋଇ ଯେଉଁଦିନ ବିଛଣା ଛାଡ଼ିଲା, ସେଦିନକୁ ଅମରେନ୍ଦ୍ର ଯିବାର ପଂଦର ଦିନ ହୋଇ ସାରିଥିଲା । ତାଙ୍କ ଛୋଟ ଘରେ କିଏ କ'ଣ କଲା, କେମିତି ସବୁ ହେଲା, ସେ କିଛି ଜାଣେ ନାହିଁ । ସେ କୁଆଡ଼େ ବାରଂବାର ଅଜ୍ଞାନ ହୋଇ ଯାଉଥିଲା ବୋଲି ଡ଼ାକ୍ତର ତାକୁ ଔଷଧ ଦେଇ ଶୁଆଇ ରଖୁଥିଲେ । ସବୁଦିନ ପାଇଁ ଶୋଇଯାଇଥାଆନ୍ତା ହେଲେ । ଦୀର୍ଘ ନିଶ୍ୱାସ ନେଲା ସେ ।

''ଭାଉଜ, ସବୁ ଜିନିଷ ବଂଧାବଂଧି କରି ଦେଇଛି । କାଲି ସଂଧ୍ୟା ଟ୍ରେନ୍‌ରେ ଯିବାକୁ ହେବ ।''

ଦିଅର ମୁହଁକୁ ଆବାକାବା ହୋଇ ଚାହିଁଲା ଶୁଭଶ୍ରୀ । ଯିବାକୁ ହେବ ? କୁଆଡ଼େ ??

''ଆମେ ଗାଁକୁ ଫେରିଯିବା ମା' । ଏଠି ଆଉ କ'ଣ ରହିଲା ?'' ଶ୍ୱଶୁର ଭଙ୍ଗା ଭଙ୍ଗା ଗଳାରେ କହିଲେ । ତାଙ୍କ ମୁହଁକୁ ଆହୁରି ଆଶ୍ଚର୍ଯ୍ୟ ହୋଇ ଚାହିଁଲା ଶୁଭଶ୍ରୀ ।

ନା-ନା-ନା- ସେ କୁଆଡ଼େ ଯିବ ନାହିଁ । ମାଉସୀ ଛଡ଼ା ସେ ଆଉ କାହା ପାଖକୁ ଯିବ ନାହିଁ । ତା' କୋଳରେ ମୁହଁ ରଖି ଛୋଟ ପିଲାଟିଏ ହୋଇଯିବ । ଭୁଲିଯିବ ସବୁ କିଛି । ''ମାଉସୀ ଲୋ ।'' ଆଉ ଥରେ ବିକଳ ହୋଇ ଚିତ୍କାର କରି ଉଠିଲା ସେ ।

''ସମୁଦୀ, ଆପଣ ଯଦି ଅରାଜି ନ ହୁଅନ୍ତେ, ତେବେ ଶୁଭ ମା'କୁ

ମୁଁ ଆମ ଗାଁକୁ କିଛିଦିନ ପାଇଁ ନେଇ ଯାଆନ୍ତି। ତା' ମାଉସୀକୁ ଦେଖିଲେ ତାକୁ ନିଶ୍ଚୟ ଟିକିଏ ଭଲ ଲାଗିବ।'' ଶ୍ୟାମ ମଉସା ଅମରେନ୍ଦ୍ରଙ୍କ ବାପାଙ୍କ ହାତ ଧରି କହିଲେ।

ସ୍ତ୍ରୀଙ୍କ ମୁହଁକୁ ଚାହିଁଲେ ସେ। ''ଯିବ ଯଦି ଯାଉ କିଛି ଦିନ ପାଇଁ। ହେଲେ ସମୁଦୀ, ଶୀଘ୍ର ପଠେଇଦେବେ ବୋହୂକୁ ଆମର।''

ସେଇ ନୀଳାଚଳ ଏକ୍ସପ୍ରେସ୍। କଟକ ଷ୍ଟେସନ। ରିକ୍ସାରେ ବସ୍‌ଷ୍ଟାଣ୍ଡ୍। ବସ୍‌ରେ ଗାଁ। ଠିକ୍ ଯେମିତି ଗାଁକୁ ଯିବ ବୋଲି ଭାବିଥିଲା ଶୁଭଶ୍ରୀ, ସବୁ ସେଇମିତି ହେଲା। କିନ୍ତୁ ସେ ଏକା ଯାଉ ନ ଥିଲା। ସାଙ୍ଗରେ ଥିଲେ ମଉସା। ଏମିତି ଆଉ ଦିନେ ସେ ଏଇ ଗାଁକୁ ଚାଲି ଆସିଥିଲା ମାଉସୀ ସାଙ୍ଗରେ। ସେତେବେଳେ ମନରେ ଭୟ ଥିଲା, ଆଶଙ୍କା ଥିଲା। କାଳେ ଯଦି ମା'ର ସଙ୍ଗାତ କିଛି ଦିନ ପାଖରେ ରଖିବା ପରେ ବିରକ୍ତ ହୋଇପଡ଼ିବେ! ଯେମିତି କକେଇ ଖୁଡ଼ୀ ବିରକ୍ତ ହୋଇଥିଲେ। ପିଉସୀ ପିଉସା ଚିଡ଼ି ଯାଇଥିଲେ।

ବାଁ ପଟ ଓଠ କଣ ଉପରକୁ ଟିକିଏ ମୋଡ଼ି ହୋଇଗଲା ଶୁଭଶ୍ରୀର। ସେଦିନ ଭଳି ଗୋଟାଏ ଦୁଃଖର ପାହାଡ଼ ନେଇ ସେ ସେଇ ଗାଁକୁ ଫେରୁଛି। କିନ୍ତୁ କୌଣସି ଭୟ, ଆଶଙ୍କା ନ ଥିଲା ତା' ମନରେ। ସେ ଯେ ତା'ର ଅତି ନିଜର ବୀଣା ମାଉସୀ ପାଖକୁ ଯାଉଛି।

ଘର ପାଖରେ ପହଞ୍ଚି ଅବାକ୍ ହୋଇଗଲା ଶୁଭଶ୍ରୀ। ଏ କ'ଣ? ଦୁଆର ମୁଣ୍ଡରେ ଛାମୁଣ୍ଡିଆ କାହିଁକି? ସେଇଠି ପୁଣି ସଜା ହୋଇ ରହିଛି ନାଲି ନେଳି ରଙ୍ଗକାଗଜ ଫୁଲର ମାଳ। ଦୁଇ ଚାରିଜଣ କିଏ ଲିଚୁ ଲାଇଟ ଝୁଲାଉଛନ୍ତି ଘରର ଛାତ ଉପରକୁ। ଏଠି କ'ଣ ହେଉଛି କି? ପଚାରିବା ଆଖି ନେଇ ଶ୍ୟାମ ମଉସାଙ୍କ ମୁହଁକୁ ଚାହିଁଲା ସେ।

ମଉସାଙ୍କ ମୁହଁ ସାମାନ୍ୟ ବିବର୍ଣ୍ଣ ହୋଇ ପଡ଼ିଛି। ଏହା ଭିତରେ କ'ଣ ଏମିତି ହୋଇଗଲା ଯେ ତାକୁ ସେ କହିପାରୁନାହାନ୍ତି।

ଗଳା ଝାଡ଼ିଲେ ମଉସା। ''ଟିକି ବାହାଘର କାଲି।''

କେଇଟା ଶବ୍ଦର ଛୋଟ ବାକ୍ୟ। ତାକୁ ଶୁଣି ଶୁଭଶ୍ରୀର ଛାତି ଭିତରଟା ମକ୍‌ଚି ହୋଇଗଲା କାହିଁକି? କାହିଁକି ଖଟ୍‌କା ଲାଗିଲା ତା'ର କ୍ଷତବିକ୍ଷତ ମନ ଭିତରେ? ଏତେ ସବୁ ଭିତରେ ବି ଟିକି ବାହାଘର ହେଉଛି? ଯେଉଁଠି ଏତେବଡ଼

ଗୋଟାଏ ବିପର୍ଯ୍ୟୟ ହୋଇଗଲା, ସେଇଠି ବାହାଘର ଭଳି ଘଟଣାଟିଏ କଥା ଅନ୍ୟ ସମସ୍ତେ ଭାବିପାରିଲେ କେମିତି? କିଛିଦିନ ପାଇଁ ଘୁଞ୍ଚେଇ ଦେଇ ତ ହୋଇଥାଆନ୍ତା!

ମଉସା ବୋଧହୁଏ ତା' ମନତଳ କଥା ପଢ଼ିପାରିଲେ। ଧୀରେ ଧୀରେ କହିଲେ, ''ଟିକି ଜିଦି ଧରି ବସିଥିଲା ଏମିତିଆ ସମୟରେ ବାହା ହେବ ନାହିଁ। ହେଲେ ତା' ଶାଶୂଘର ଲୋକଙ୍କୁ ବୁଝେଇବ କିଏ? ସେମାନେ କହିଲେ ଏ ବର୍ଷର ଏଇଟା ଶେଷ ତିଥି। ଏବେ ବାହାଘର ନ କଲେ ଗୁଡ଼ାଏ ଦିନ ଡେ଼ରି ହୋଇଯିବ। ତେଣେ ବାହାଘର ପାଇଁ ସବୁ ଆୟୋଜନ ସରିଛି। ପୁଅ ବି ଛୁଟି ନେଇ ଆସି ସାରିଛି। ପରେ ଆଉରି ଥରେ ଛୁଟି ନେବ କେମିତି? ଏସବୁ କଥା ଶୁଣି ମୁଁ ପୁରୋହିତଙ୍କ ପାଖକୁ ଯାଇଥିଲି। ସେ କହିଲେ, ବାହାଘର କଲେ କିଛି କ୍ଷତି ନାହିଁ। ତୋର ତ ମା' ଗୋତ୍ର ଭିନ୍ନ। ତେଣୁ ଏଇଟା ଆମ ପାଇଁ ଆଶୌଚ ବୋଲି ଧରାଯିବ ନାହିଁ।''

କିଛି କହିଲା ନାହିଁ ଶୁଭଶ୍ରୀ। ଏଇଟା କ'ଣ କେବଳ ଦେହର ଅଶୁଚି କଥା ପଡ଼ିଛି? ମନର ଅଶୁଚିତା ବୋଲି କିଛି ନାହିଁ!

ପାଦ ଦିଇଟା ବୋଧହୁଏ ଅଟକି ଯାଇଥିଲା ତା'ର। ''ଆ ରେ ମା', ରହିଗଲୁ କାହିଁକି?'' ସ୍ନେହ ବୋଳା କଣ୍ଠରେ ଶ୍ୟାମ ମଉସା କହିଲେ।

ସଂବିତ ଫେରି ପାଇଲା ଶୁଭଶ୍ରୀ। ସେ ପୁଣି କେବେଠୁ ଏତେ ଅଭିମାନୀ ହୋଇ ପଡ଼ିଲା! କୁଆଡ଼େ ଗଲା ତା'ର ବୁଝିବା ସୁଝିବା ମନ? ଟିକିର ନୂଆ ଜୀବନ ଆରମ୍ଭ ହେବା ଆଗରୁ ସେଥିରେ ଅଶାନ୍ତି ଭରିଦେବା କ'ଣ ଉଚିତ ହୋଇଥାଆନ୍ତା? ତା' ପାଇଁ ଯଦି କାହାର କିଛି ଚିନ୍ତା ଭାବନା ନାହିଁ, ତା'ହେଲେ ସବୁ କାମଦାମ ଛାଡ଼ି ମଉସା କେମିତି ଖବର ପାଇ ତା' ପାଖରେ ପହଞ୍ଚିଗଲେ? ମାଉସୀ ଆସିଥିଲେ ତାକୁ ଆଉ ଟିକେ ଭଲ ଲାଗିଥାଆନ୍ତା। କିନ୍ତୁ ତା'ର ବୁଝିବା ଉଚିତ। ଏତେ ଜଂଜାଳ ଭିତରେ ଘରର ଦୁଇ ମୁରବୀ କେମିତି ଘରଛାଡ଼ି ଚାଲିଯାଇଥାଆନ୍ତେ?

''ଚାଲନ୍ତୁ ମଉସା।''

ଛାମୁଣ୍ଡିଆ ଟପି ଦାଣ୍ଡ ବାରଣ୍ଡାରେ ପାଦ ଦେବାକୁ ବସିଲା ସେ।

କୋଉଠୁ ଗୋଟାଏ କିଳିକିଳିଆ ନାଦ ଆସି କଂପେଇ ଦେଲା ଖଣ୍ଡମଣ୍ଡଳ।

"ଆଲୋ ଆଲୋ। କରୁଛୁ କ'ଣ ବା ? କରମ ସାଙ୍ଗରେ ତୋର ବୁଦ୍ଧି ସୁଦ୍ଧି ସବୁ ଖାଇ ବସିଲୁଣି ନା କ'ଣ ?"

ଛାଟ ଖାଇବା ଭଳି ବଢ଼େଇଥିବା ପାଦ ଫେରାଇ ଆଣିଲା ଶୁଭଶ୍ରୀ। ଘର ଭିତରୁ ବାହାରି ଆସିଲେ ଅଶୀ ବର୍ଷର ଜଣେ ବୁଢ଼ୀ। ଡ଼ାଙ୍ଗ ଭଳି ଚେହେରାରେ ଧଳା ଥାନ ଖଣ୍ଡିଏ ଗୁଡ଼ା ହୋଇଥିଲା। ମଉସାଙ୍କ ବାଲ୍ୟବିଧବା ସାନ ପିଉସୀ। ରହନ୍ତି ତ ତାଙ୍କ ଶ୍ୱଶୁର ଘର ଗାଁରେ। ଏବେ ବାହାଘର ପାଇଁ ଆସିଛନ୍ତି ବୋଧହୁଏ। ଧଳା ଥାନ ତଳୁ କଳା ହାତଟାକୁ ବାହାର କରି ବାହାର ବାରଣ୍ଡାରେ ନାଚଟାଏ ଦେଖାଇଦେଲେ ସେ। "ହଇରେ ଶ୍ୟାମ। ଏଠି ତୋ ଝିଅ ବାହାଘର। ଏଭଳି ବେଳଟାରେ କିଏ ଅଶୁଦ୍ଧି ଘରକୁ ଯାଏ ? ଗଲୁ ବା ଯଦି କରମପୋଡ଼ୀକୁ ଏଠିକି ଆଣିଲୁ କାହିଁକି ? କେଇଟା ଦିନ ପାଇଁ ଶାଶୁଘରେ ରହିପାରିଲାନାହିଁ ସେ ? ଦେଖୁଛୁ ତ ଏଇଟାର ବୁଦ୍ଧି ସୁଦ୍ଧି। ଏଇଠି ଗଦା ହୋଇ ରହିଛି ବାହାଘରର ଜିନିଷପତ୍ର। ତା' ପାଖ ଦେଇ ଚାଲିଯିବାକୁ ବସିଛି। ତା'ର ଛାଇ ପଡ଼ିଥିଲେ ସରିଥାଆନ୍ତା କଥା।"

ଶୁଭଶ୍ରୀ ମଉସାଙ୍କ ମୁହଁକୁ ଚାହିଁଲା। ଭାବିଥିଲା ସେ କିଛି କହିବେ। ପିଉସୀ ଉପରେ ବିରକ୍ତ ହେବେ। ବିନା ଦୋଷରେ ଝିଅଟାକୁ ଖରାପ କରି କାହିଁକି କହୁଛି ବୋଲି ଚିଡ଼ି ଉଠିବେ।

ନା- ମଉସା କିଛି କହିଲେ ନାହିଁ। ଦୋଷ ହୋଇଯାଇଥିବା ଭଳି ମୁଣ୍ଡକୁ ତଳକୁ ପୋତି କେବଳ ଠିଆ ହୋଇ ରହିଲେ।

"ଆଲୋ ଏ ସାଆନ୍ତାଣୀ, ଏଠି ଏମିତି ଖୁଣ୍ଟଟା ଭଳି ଠିଆ ହୋଇ ରହିଲୁ କାହିଁକି ବା। ଯା- ପଛପଟ ଦେଇ ଭିତର ଖଞ୍ଜାକୁ ଯା। ଖବରଦାର। ଏପଟକୁ ଯେମିତି ନ ଆସୁ।" ପୁଣି ଗର୍ଜି ଉଠିଲେ ବୁଢ଼ୀ।

ଶୁଭଶ୍ରୀର ପେଟ ଭିତରୁ ମନ୍ଥି ହୋଇ କୋହ ବାହାରି ଆସୁଛି। ମଜା ଦେଖିବାକୁ ଘର ସାମ୍ନାରେ ଲୋକ କେଇ ଜଣ ଜମିଗଲେଣି। ଛାମୁଣ୍ଡିଆରେ କାଗଜ ଫୁଲ ଲଗାଉଥିବା ଲୋକ, ଲିଟୁ ଲାଇଟ ଲଗାଉଥିବା ଲୋକ ନିଜ ନିଜ କାମ ବନ୍ଦ କରି ଅନେଇ ରହିଛନ୍ତି। ଆଉ ସହି ପାରିଲା ନାହିଁ ସେ। ପାଟିରେ ଶାଢ଼ି କାନି ଗୁଞ୍ଜି ଦେଇ ପଛପଟକୁ ଚାଲିଗଲା ସେ। ମାଉସୀ ଲୋ ! ଦେଖୁଛୁ କେମିତି ହିନିମାନି କରୁଛନ୍ତି ତୋ ଶୁଭକୁ। କାହିଁ ବୀଣା ମାଉସୀ ?

ଝଡ଼ ଭଳି ଘର ଭିତରେ ପଶିଯାଇ ଆଖି ଦୁଇଟା ବୁଲେଇ ଆଣିଲା ଶୁଭଶ୍ରୀ। ମାଉସୀର କୋଳରେ ମୁହଁ ଗୁଞ୍ଜି ମନଭରି କାନ୍ଦିନେବ ସେ। ତା'ପରେ ଯାଇ ମନଟା ଟିକିଏ ହାଲୁକା ଲାଗିବ। ଥରେ ସେଇ ପରମ ଆଶ୍ରୟଦାତ୍ରୀ ପାଖରେ ପହଞ୍ଚିଗଲେ କିଏ କେମିତି ଖରାପ କରି କହିବ କହୁ ତ ଦେଖି।

"ଆରେ ଆରେ ଶୁଭ ନା କ'ଣ। କେତେବେଳେ ଆସିଲୁ? ସେପଟକୁ କୁଆଡ଼େ ଯାଉଛୁ?" ମାଉସୀର ସାନ ଯା' ଗାଧୋଇ ଯାଉ ଯାଉ ରହିଗଲେ।

"ବୀଣା ମାଉସୀ କାହିଁ?"

"ନାନୀ ତ ଭଣ୍ଡାର ଘରେ ଭାର ଥୋର ସଜାଡୁଛନ୍ତି। ତୁ ଏଇଠି ବସ। ମୁଁ ନାନୀଙ୍କୁ ଡ଼ାକି ଦେଉଛି।" ପିଢ଼ାଟାଏ ଠେଲି ଦେଲେ ସେ।

କ'ଣ ଯେମିତି ହୋଇଗଲା ଶୁଭଶ୍ରୀ ମୁଣ୍ଡ ଭିତରେ। ପିଢ଼ାଟାକୁ ଗୋଡ଼ରେ ଠେଲି ଦେଇ ପାଗଳୀଙ୍କ ଭଳି ସେ ଧାଇଁ ଗଲା ଭଣ୍ଡାର ଘର ଆଡ଼କୁ। ପଛରୁ ପାଟି ଶୁଭୁଥିଲା, "ଆଲୋ ଆଲୋ, ସେଆଡ଼େ କୁଆଡ଼େ ଯାଉଛୁ? ଯାଆନା। ଯାଆନା।"

ଶୁଭଶ୍ରୀ କାନରେ କିଛି ପଶୁ ନଥିଲା। ଆଉ ଦିଇଟା ପାଦ ଗଲେ ଭଣ୍ଡାର ଘର। ସେଇଠି ଅଛି ମାଉସୀ। ଦେଖିଲାକ୍ଷଣି କୋଳେଇ ନେବ।

"ଶୁ-ଭ-।"

ଗମ୍ଭୀର ଗଳାର ସ୍ୱରରେ ପାଦଦିଇଟା ଅଟକିଗଲା ତା'ର। ଭଣ୍ଡାର ଘର ଦରଜା ପାଖରେ ସିଧା ହୋଇ ଠିଆ ହୋଇଛି ତା' ବୀଣା ମାଉସୀ। ଦୌଡ଼ି ଆସୁନି କାହିଁକି? କୋଳେଇ ନଉନି କାହିଁକି? କ'ଣ ଏମିତି କହୁଛି?

"କାହା କଥା ନ ମାନି ଏପଟକୁ ଆସୁଛୁ କାହିଁକି, ଶୁଭ? ଆଉ ଟିକକରେ ଏ ସବୁ ଜିନିଷ ଅଶୁଦ୍ଧ ହୋଇ ଯାଇଥାଆନ୍ତା। ତୁ ଯା - ସେପାଖ କଣର ଘରଟାକୁ ମୁଁ ଲିପେଇ ପୋଛେଇ ରଖିଛି। ସେଇଠି ଘର ଭିତରେ ରହିବୁ ଏଇ କେଇଟା ଦିନ। ସାମାନ୍ୟ ସୁରାକ ପାଇଲେ ଟିକି ଶାଶୂ ଘର ଲୋକେ ପୃଥୀ ଓଲଟେଇ ରଖିଦେବେ।"

ଏକଥା ବୀଣା ମାଉସୀ କହୁଛି? ନା- ହୋଇ ପାରେନା। ନିଶ୍ଚୟ ଆଉ କିଏ ପଶି ଯାଇଛି ତା' ଭିତରେ। ଶୁଭଶ୍ରୀ ସ୍ଥିର ଦୃଷ୍ଟିରେ ଅନେଇଲା। ମାଉସୀ କ'ଣ ଆଉ ତାକୁ ଚିହ୍ନି ପାରୁନି କି? ଏଇ କେତେଟା ମାସରେ ସେ କ'ଣ

ସତେ ଏତେ ବଦଳିଗଲା ? ମାଉସୀ ଲୋ, ମୁଁ ତୋ ଶୁଭ ପରା । ଯାହାକୁ ତୁ କୋଳରେ ସାଉଁଟି ନେଇଥିଲୁ । ମୁଁ ପୁଣି ଅଶୁଭ ହେଲି କେବେଠୁଁ ? ତା' ଓଠ ଦିଓଟି ହଲିଗଲା । କିନ୍ତୁ ପାଟିରୁ କୌଣସି କଥା ବାହାରୁ ନ ଥିଲା । ବାଉଳୀଙ୍କ ଭଳି ହାତ ସାମ୍ନାକୁ ବଢ଼େଇଦେଲା ସେ । ଆଶ୍ରା ଦେ ମାଉସୀ । ତୋ ଶୁଭକୁ ଆଶ୍ରା ଦେ ।

''ଆରେ ଆରେ !'' ପଛକୁ ଦି' ପାଦ ଘୁଞ୍ଚିଗଲା ନେଳିଆ ସମ୍ବଲପୁରୀ ପିଂଧିଥିବା ମଣିଷଟି ।

ପଥର ହୋଇଗଲା ଯେମିତି ଶୁଭଶ୍ରୀ । ବଢ଼େଇଥିବା ହାତକୁ ନିଜ ପାଖକୁ ଫେରାଇ ଆଣି ଥପ୍ କରି ବସିଗଲା ସେଇଠି ମାଟି ଉପରେ । ନରମ ଭାବରେ ସାମ୍ନାକୁ ଚାହିଁ ରହିଲା କେବଳ କିଛି ସମୟ ପାଇଁ । ତା'ପରେ ଆରମ୍ଭ ହେଲା ହସ । ଗଗନ ପବନ କଂପେଇଦେଲା ତା' ହସ । ଧୀରେ ଧୀରେ ଅଗଣାରେ ଭିଡ଼ ଜମୁଥିଲା । ଦୂରତ୍ୱ ଜଗି ରଖି ସମସ୍ତେ ଖାଲି ଦେଖୁଥିଲେ । ପାଖକୁ ଆସି କେହି ଆଉଁସି ଦଉ ନ ଥିଲେ ।

ସବୁ ଭିଡ଼ କଟେଇ ଆଗେଇ ଆସିଲା କେବଳ ଜଣେ । ସମ୍ମିଳିତ ଆର୍ତ୍ତନାଦକୁ ଖାତିର ନ କରି ମଙ୍ଗୁଳା କନିଆ ଜଣକ ପାଖକୁ ଆସି ଶୁଭଶ୍ରୀର ମୁଣ୍ଡ ଆଉଁସି ଦେଲା । ଦୁଇ ହାତ ଜଡ଼େଇ ଧରି ତାକୁ ଉଠାଉ ଉଠାଉ କହିଲା, ''ମାଟିଟାରେ ବସିଲୁ କାହିଁକି ଶ୍ରୀ ? ଆ ମୋ ସାଙ୍ଗରେ ଆ । କେତେ କଥା କହିବାକୁ ବାକି ଅଛି ।'' □□

# କଳଙ୍କି

ଗାଡ଼ି ଚାବିଟା ରଘୁ ହାତକୁ ବଢ଼େଇଦେଇ ପ୍ରସନ୍ନ ଅଫିସ ଭିତରକୁ ଧପ୍‌ଧପ୍ କରି ପଶିଗଲା। ଅଭ୍ୟସ୍ତ ରଘୁକୁ କିଛି ବୁଝେଇ କହିବାକୁ ହୁଏ ନାହିଁ। ଏହି ଚାବି ହସ୍ତାନ୍ତରର ଅର୍ଥ ପ୍ରସନ୍ନ ସାହେବଙ୍କର ଡ଼େରି ହୋଇ ଯାଇଛି। ଗାଡ଼ି ପାର୍କ କରିବାର ବେଳ ନାହିଁ। ରଘୁକୁ ଗାଡ଼ିଟା ରାସ୍ତା ଉପରୁ ନେଇ ଅଫିସ୍ ତଳେ ଥିବା ବେସ୍‌ମେଣ୍ଟ ପାର୍କିଙ୍ଗରେ ରଖିବାକୁ ହେବ। ସାହେବଙ୍କର ଅଫିସ ପହଞ୍ଚିବାରେ ଡ଼େରି ହେଲେ, ଏଇଟା ରଘୁର ଡ୍ୟୁଟିରେ ଯୋଡ଼ି ହୋଇଯାଏ।

ମୁହଁଟା କଠିନ ହୋଇଗଲା ପ୍ରସନ୍ନର। କେତେଦିନ ଠିକ୍ ସମୟରେ ଅଫିସରେ ପହଞ୍ଚେ ସେ ? ମାସରେ ପନ୍ଦରଟା ଦିନ ତ ତା'ର ଡ଼େରି ହୋଇଯାଏ। ସବୁରକମର ଚେଷ୍ଟା କରି ସେ ଦେଖି ସାରିଛି। ହେଲେ ଶ୍ୱଶୁର ଘରୁ ଆମଦାନୀ ହୋଇଥିବା ମୁହଁବଢ଼ା ଚାକରବାକରଙ୍କ ଉପରେ ନିର୍ଭର କଲେ ଯାହା ହୁଏ।

ପ୍ରସନ୍ନ କେତେଥର ଭାବିଛି ଶର୍ବରୀକୁ ଚେତେଇ ଦେବ। ଚାକରବାକରଙ୍କୁ ନିୟନ୍ତ୍ରଣରେ ନ ରଖିଲେ ଘରକରଣା ସୁରୁଖୁରୁରେ ଚଳିବ କେମିତି ? କିଂତୁ ସେ କିଛି କହିପାରେନି। ଅଲିଅଳରେ ବଢ଼ି ଆସିଥିବା ସ୍ତ୍ରୀକୁ ଜୋର ଦେଇ କିଛି କହିବା ସମ୍ଭବ ହୁଏ ନାହିଁ। ସୁନାରୂପାରେ ମଣ୍ଡି ହୋଇ ଘର ଭର୍ତ୍ତି ଯୌତୁକ ସାଙ୍ଗରେ ଧରି ଆସିଥିବା ବେଳେ ଶର୍ବରୀ ସାଙ୍ଗରେ ଏଇ ଅଲିଖିତ ଅକୁହା ସର୍ତ୍ତ ତା'ର ହୋଇ ଯାଇଛି।

କିନ୍ତୁ ପ୍ରସନ୍ନକୁ ଆଶ୍ଚର୍ଯ୍ୟ ଲାଗେ। ସୁନ୍ଦରୀ ଶର୍ବରୀର ଅସ୍ୱସ୍ତି ହୁଏ ନାହିଁ କେମିତି ? ଯିଏ ନିଜକୁ ଅଧିକରୁ ଅଧିକ ସୁନ୍ଦରୀ କରିବା ପାଇଁ ଏତେଗୁଡ଼ାଏ

ସମୟ, ଅର୍ଥ ବରବାଦ କରିଦିଏ, ସେ କେମିତି ଚାହେଁ ନାହିଁ ଯେ ସେ ବସବାସ କରୁଥିବା ସ୍ଥାନଟି ଅନୁରୂପ ସୁନ୍ଦର ହେଉ। କିଏ କହୁଛି ଶାଢ଼ି କାନି ଅଣ୍ଟାରେ ବାନ୍ଧି କାମ କରିବାକୁ ? ଖାଲି ଟିକିଏ ବୁଝାସୁଝା କଲେ ତ ହୁଅନ୍ତା।

ହେଲେ ନା - ମହାରାଣୀଙ୍କର ପହଡ଼ ଭାଙ୍ଗେ ସକାଳ ଦଶଟା ପରେ। ଲାସ୍ୟମୟୀ ତା'ପରେ ଅଳସେଇ ଡ଼ାକନ୍ତି 'ମେ-ଏ-ରୀ'। ମେରୀପାଇଁ ସେତିକି ଡ଼ାକ ଯଥେଷ୍ଟ। ସେ ବେଡ୍ ଟି ଧରି ପହଞ୍ଚିଯାଏ। ଚାହା ପିଉପିଉ ଖବରକାଗଜରେ ବାହାରିଥିବା ବିଜ୍ଞାପନ, ଟି.ଭି ପ୍ରୋଗ୍ରାମ ଉପରେ ଆଖି ବୁଲା ହୋଇଯାଏ ଶର୍ବରୀର। ତା'ପରେ ଗାଧୁଆ ପାଧୁଆ କରି ଦିନ ବାରଟା ବେଳକୁ ମ୍ୟାଡ଼ମ୍ ରେଡ଼ି। ଶାଢ଼ି ଦୋକାନ ବୁଲା, କିଟି ପାର୍ଟି, ସାଙ୍ଗମାନଙ୍କ ସହ ହୋଟେଲରେ ଲଞ୍ଚ୍। ଓଃ, ଫୁରୁସତ କାହିଁ ?

ମେରୀଠାରୁ ଆରମ୍ଭ କରି ବାକୀ ତିନିଜଣ ଚାକର ଚାକରାଣୀ ବୁଝି ଯାଇଛନ୍ତି ଯେ ଏ ଘରର ପ୍ରକୃତ ଭାଗ୍ୟନିଅନ୍ତା କିଏ। ସେଇଥିପାଇଁ ସେମାନେ ସାହେବଙ୍କୁ ପାସଙ୍ଗରେ ପକାନ୍ତି ନାହିଁ। ସକାଳୁ ପ୍ରସନ୍ନର କାମ ବେଳକୁ ସମୟର ଅଭାବ ହୋଇଯାଏ। ସେ ବେଶୀ ପାଟିତୁଣ୍ଡ କଲେ ଶଙ୍କର ଆସି ଅଣ୍ଟା ଭାଙ୍ଗି ଠିଆ ହୋଇଯାଏ, ''ସାର୍, ରାଜୁବାବୁଙ୍କର ଜୋତା ପଲିସ୍ କରୁଛି। ଆଜି ତାଙ୍କର ମ୍ୟାଚ୍ ଅଛି ଯେ ସକାଳୁ ମତେ ଧରେଇଦେଇଛନ୍ତି।''

କିମ୍ବା ମେରୀ ଦାନ୍ତ ନିକୁଟି କହେ, ''ଜିନି ବେବିଙ୍କର ଡ୍ରେସ୍ ଇସ୍ତ୍ରୀ କରୁଛି, ସାହେବ। ତାଙ୍କ ସ୍କୁଲ ବେଳ ହୋଇଗଲାଣି।''

ଜିନି ବେବି, ରାଜୁ ବାବୁ ସମସ୍ତେ ଏ ଘରେ ଗୋଟିଏ ଗୋଟିଏ ମୁରବୀ। ଆଉ ଯେଉଁ ଶଳା ଟଙ୍କା ରୋଜଗାର କରି ଏ ଘରଟାକୁ ଚଳାଉଛି ସେ ହିଁ ଅଚଳନ୍ତି ପଇସା !

''ସାର୍, ନମସ୍କାର।''

ଧପଧପ ଚାଲିଟା ବ୍ରେକ୍ ଲାଗିବାଭଳି ହଠାତ୍ ଅଟକିଗଲା। କିଏ ଏଇଟା ?

''ସାର୍, ମୁଁ ରାମଚନ୍ଦ୍ର।''

ରାମଚନ୍ଦ୍ର ? ରାମଚନ୍ଦ୍ର ତ ତ୍ରେତା ଯୁଗରୁ ତରିଲେଣି। ତା'ପରେ ଦ୍ୱାପର ଯାଇ ଏବେ ଘୋର କଳି। ତମେ ପୁଣି କେଉଁ ରାମଚନ୍ଦ୍ର ବିରାଜିଲ ?

''ସାର୍, ରଘୁ କହିଥିଲା ଆପଣଙ୍କର ଡ୍ରାଇଭର୍ ଦରକାର।''

ଡ୍ରାଇଭର୍? ଲୋକଟାକୁ ମୁଣ୍ଡଠାରୁ ଗୋଡ଼ଯାଏଁ ପ୍ରସନ୍ନ ପରଖିନେଲା। କୋଉ ଚିଡ଼ିଆଖାନାରୁ ଏଇ ଜନ୍ତୁକୁ ଧରି ଆଣିଛି ରଘୁ?

''ରଘୁ... ଏ ରଘୁ।''

ପ୍ରସନ୍ନର ବଡ଼ ପାଟିରେ ଜନ୍ତୁ ମଣିଷଟି ନିଜ ଭିତରେ କୁଙ୍କୁଡ଼ି କାଙ୍କୁଡ଼ି ହୋଇ କାନ୍ଥ ସାଙ୍ଗରେ ପ୍ରାୟ ମିଶି ସାରିଲାଣି।

''ସାର୍, ଏ ବଡ଼ ପୋଖତ ଡ୍ରାଇଭର୍। ଗୋଟିଏ କାର୍ ଏଜେନ୍‌ସିରେ ଥିଲା। ତାଙ୍କ ଟୁରିଷ୍ଟଙ୍କୁ ଗାଡ଼ିରେ ବୁଲାଉଥିଲା। ହେଲେ ଓଭରଟାଇମ ଦେବାରେ ସେମାନେ ଗଣ୍ଡଗୋଳ କଲେ। ବେଶୀ ଥର କହିବାରୁ ଯାକୁ ଚାକିରିରୁ ତଡ଼ି ଦେଲେ। ଭଲ ଗାଡ଼ି ଚଳାଏ ଆଜ୍ଞା।'' ରଘୁ ଚୁପ୍‌ଚୁପ୍ କହିଲା।

ଏଥର ପ୍ରସନ୍ନ ମଣିଷଟାକୁ ଆଉଥରେ ଭଲକରି ଦେଖିଲା। ସତେଇଶ ଅଠେଇଶ ବର୍ଷର ଟୋକାଟାଏ। ସରୁସରୁ ଗୋଡ଼ ହାତ। ମୁହଁର ହନୁ ହାଡ଼ ବାହାରି ଆସିଛି। ଆଖିଦିଇଟା କୋରଡ଼ ଭିତରେ ପଶିଯାଇଛି। ନୁଖୁରା ବାଳରେ ପାନିଆ, ତେଲ କେବେଠାରୁ ବାଜିନି ବୋଧହୁଏ। ଯେମିତି ନଅଙ୍କ ଦୁର୍ଭିକ୍ଷରୁ ଉଠି ଆସିଛି।

ତା'ରି ଭାଗ୍ୟକୁ ଥାଆନ୍ତି ଏମିତିଆ ଲୋକଗୁଡ଼ାକ ଜୁଟିବାକୁ! ପ୍ରସନ୍ନର ଦୁର୍ଭିକ୍ଷିଆ ମଣିଷ ବା ରଘୁ ଉପରେ ଯେତେ ରାଗ ହେଉ ନଥିଲା, ତା'ଠାରୁ ବେଶୀ ରାଗ ହେଉ ଥିଲା ସ୍ତ୍ରୀ ଆଉ ପୁଅ ଝିଅଙ୍କ ଉପରେ। ସବୁ ଗୋଟିଏ ଗୋଟିଏ ନବାବ ନନ୍ଦନ ନନ୍ଦିନୀ ନା, ଡ୍ରାଇଭର ନ ହେଲେ ହଲି ପାରୁନାହାନ୍ତି।

ସ୍କୁଲ ଯିବା କଥା ତ ବସ୍‌ରେ ଯାଉନ। ଯେମିତି ଆଉ ଚାଳିଶଟା ପିଲା ଯାଉଛନ୍ତି। ଆଉ ତା'ପରେ ଅଛି ରାଜପୁତ୍ରଙ୍କର କ୍ୟାରେଟେ କ୍ଲାସ, କ୍ରିକେଟ କୋଚିଙ୍ଗ ଏବଂ ରାଜକନ୍ୟାଙ୍କର ଥେଇଥେଇ ନାଚ ଓ ବିକଟାଳ ରଡ଼ି ଛାଡ଼ି ହିନ୍ଦୁସ୍ତାନୀ ସଙ୍ଗୀତ ଶିକ୍ଷା। ଏସବୁ ଗାଡ଼ି ଛଡ଼ା, ଡ୍ରାଇଭର ଛଡ଼ା ହେବ କେମିତି?

ହେଲେ ସବୁ ନାଟର ଗୋବର୍ଦ୍ଧନ ତ ସେମାନଙ୍କର ମା' ଖଣ୍ଡକ। ଶର୍ବରୀ ତା'ର ଚିରାଚରିତ ମଦାଳସା ଭଙ୍ଗୀରେ କହିବ, ''ପ୍ରସନ୍ନ ଡ଼ାର୍ଲିଙ୍ଗ, କେମିତି ପିଲାମାନେ ବସ୍, ରିକ୍ସାରେ ଯିବେ କୁହ? ଆଉ ମୋର ଦେଖ ନା କେତେ ଅସୁବିଧା! ଆଜି ସାଢ଼େ ବାରଟା ବେଳେ ଲେଡ଼ିଜ୍ କ୍ଲବ୍‌ରେ ଲଞ୍ଚ, ତା'ପରେ

ମିସେସ ଶ୍ରୀନିବାସନ୍‌ଙ୍କ ଘରେ ବ୍ରିଜ୍ ସେସନ୍। ଗାଡ଼ି ନ ହେଲେ କେତେ ଅସୁବିଧା। କାହାକୁ ଗୋଟାଏ ଅନୁରୋଧ କରିବାକୁ ହେବ ମତେ ଲିଫ୍ଟ ହେବାକୁ। ତୁମ ପ୍ରେଷ୍ଟିଜ୍‌ରେ ଆଞ୍ଚ ଆସିବନି ?''

ପୋଡ଼ି ଯାଉ ତା' ପ୍ରେଷ୍ଟିଜ୍ !

ଯାହା ତ ଚାଲିଥିଲା ଚାଲିଥିଲା। ଶ୍ୱଶୁର ଘରୁ ଆସିଥିବା ବୁଢ଼ା ଡ୍ରାଇଭର ନଂଦ ସେମାନଙ୍କର ଫରମାଇସ ଖଟୁଥିଲା। ତା'ର ପେଟ୍ରୋଲ ଚୋରି ଗୁଣ, ଗଞ୍ଜେଇ ନିଶା ସବୁ ଜାଣି ମଧ ପାଟି ଖୋଲି ନ ଥିଲା କେବେ ପ୍ରସନ୍ନ। ହେଲେ ଲୋକଟାର କ'ଣ ଯେ ହେଲା ଦିନେ ଚାକିରି ଛାଡ଼ି ଚାଲିଗଲା ଗାଁକୁ।

ସେଇଠୁ ପ୍ରସନ୍ନ ଉପରେ ତିନି ତରଫରୁ ଚାପ, ''ଆଣ ଡ୍ରାଇଭର।''

ପ୍ରସନ୍ନ ଦୁର୍ଭିକ୍ଷିଆ ମଣିଷଟିକୁ ତୀକ୍ଷ୍ଣ ଭାବରେ ଚାହିଁଲା, ''ଆସ ମୋ ରୁମ୍ ଭିତରକୁ।''

ନିଜ ଚୌକିରେ ବସି ପଡ଼ି ସେ ସିଧାସଳଖ ଜେରା କରିବା ଆରମ୍ଭ କରିଦେଲା, ''ନାଁ କ'ଣ ?''

''ରାମଚନ୍ଦ୍ର ସାର୍।''

ଓହୋ, କଳିଯୁଗର ରାମଚନ୍ଦ୍ର ପରା। ''ପାଠ ?''

''ବେଶୀ ପଢ଼ିନି ଆଜ୍ଞା। ପଞ୍ଚମ ପାଶ କରିଛି।''

ତା' ବୋକା ବୋକା ଚେହେରାରୁ ପ୍ରସନ୍ନର ଅନୁମାନ କରିନେବା ଉଚିତ ଥିଲା ଯେ ଏଇଟା ଗଜ ମୂର୍ଖଟାଏ ହୋଇଥିବ।

''ହୁଁ ଲାଇସେନ୍ସ ଦେଖାଅ। ...କେତେ ଥର ଆକ୍ସିଡ଼େଣ୍ଟ କରିଛ ?''

ରାମଚନ୍ଦ୍ର ଶିହରି ଉଠିଲା, ''ଆକ୍ସିଡ଼େଣ୍ଟ ସାର୍ ? ଆକ୍ସିଡ଼େଣ୍ଟ କେବେ କରିନି।'' ରହି ରହି ପୁଣି ଯୋଡ଼ିଲା, ''ମେକାନିକ୍ କାମ ଟିକିଏ ଟିକିଏ ଶିଖିଛି। ଗାଡ଼ି ଖରାପ ହେଲେ ସଜାଡ଼ି ଦେଇ ପାରିବି।''

''ହୁଁ.. ଓ.କେ, ଠିକ୍ ଅଛି ତୁମେ ଆଜିଠୁଁ ଗାଡ଼ି ଚଲାଅ। କିନ୍ତୁ ମନେରଖ ଚାକିରି ପକ୍କା ନୁହଁ। ମୁଁ ତିନି ମାସ ତୁମ ଗାଡ଼ିଚଲା, ହାବଭାବ ଦେଖିବି। ତା'ପରେ ଯାଇଁ...।''

''ଆଜ୍ଞା।''

ରାମଚନ୍ଦ୍ର ଚାଲି ଯାଉଥିଲା, ତାକୁ ପଛକୁ ଡ଼ାକିଲା ପ୍ରସନ୍ନ। ପକେଟରୁ

କୋଡ଼ିଏଟା ଟଙ୍କା କାଢ଼ି କାଚ ଟେବୁଲ ଉପରେ ଫୋପାଡ଼ି ଦେଇ ସେ କହିଲା, "ଏ ଟଂକାଟା ନିଅ। ଆଗ ଯାଇ ବାଳ କାଟିବ। ତା'ପରେ ଏ ଯେଉଁ ଲୁଗାପଟା ପିନ୍ଧିଛ, ତାକୁ କାଚି ଇସ୍ତ୍ରୀ କରି ଟିକିଏ ଭଦ୍ର ବେଶରେ କାଲି ସକାଳେ ମୋ ଘରେ ପହଞ୍ଚ। ଏ ଦୁଃଖିଆ ହିରୋ ଚେହେରା ଚଳିବନି, ବୁଝିଲ। ରଘୁଠୁ ମୋ ଘର ଠିକଣା ବୁଝିନେବ।"

"ଆଜ୍ଞା।" ବିହ୍ୱଳ ଭାବରେ ଟଙ୍କାଟା ଉଠେଇ ଚାଲିଗଲା ରାମଚନ୍ଦ୍ର।

ତା'ର ବିନୀତ ଚାଲିଚଳଣ, ନରମ ଚାହାଣୀ ପ୍ରସନ୍ନକୁ କୋମଳ କରି ଦେଉଥିଲା। ହଠାତ୍ ନିଜକୁ ଝିଙ୍କିନେଇ କଠିନ କରିଦେଲା ସେ। ନା- ଏସବୁ ଅଭିନୟରେ ସେ ଭୁଲିବ ନାହିଁ। ଏ ସଂସାରରେ ପ୍ରତ୍ୟେକଟି ଲୋକ ଖଳା ଗୋଟାଏ ଗୋଟାଏ ଚାଲ୍‌ବାଜ୍। ଅଭିନୟ କରିବାରେ ଧୁରନ୍ଧର। ନିଜ ସ୍ୱାର୍ଥ ପାଇଁ ସବୁ କରିପାରିବେ। କେହି ଏଥିରୁ ମୁକ୍ତ ନୁହଁନ୍ତି। ଶର୍ବରୀ ବା ପିଲାମାନେ ତ ନୁହଁ, ତା' ମା', ବାପା କ'ଣ ଏଥିରୁ ବାହାର ?

ମା' କହିଦେଲେ ଯେମିତି ଦଶଟା ଲୋକ ବିଗଳିତ ହୋଇ ପଡ଼ନ୍ତି, ସେସବୁ ପ୍ରସନ୍ନର ନାହିଁ। ଅଯଥା ସେଣ୍ଟିମେଣ୍ଟାଲିଟି ଭିତରକୁ ସେ ପଶେ ନାହିଁ। ତା' ମା' ଯଦି ଏମିତି ମହୀୟସୀ, ସ୍ନେହ ପ୍ରେମର ଦେବୀ, ସର୍ବଂସହା ଧରିତ୍ରୀ, ତେବେ ସୁବିଧା ବେଳକୁ ସେ କାହିଁକି ରଙ୍ଗ ବଦଳାଇ ଦେଲା ?

ପ୍ରସନ୍ନ ଯେତେବେଳେ ବାହାରେ କଲେଜରେ ପଢୁଥିଲା, ସେତେବେଳେ ଦୂର କଲୋନିରେ ରହୁଥିଲେ ତା' ବାପା ମା'। ପଡ଼ିଶା ଘର ଝିଅ ପ୍ରତିମାକୁ ଦେଖି ତା' ମା' ସବୁବେଳେ କହୁଥିଲା, "ଲକ୍ଷ୍ମୀ ପ୍ରତିମାଟିଏ। କି ଶାନ୍ତ ସୁଧାର! ଯାହା ଘରକୁ ଯିବ ତା' ଘର ଉଜ୍ଜ୍ୱଳ କରିବ।"

ଆଣିଲ ନାହିଁ ତା'ହେଲେ ତୁମ ଘରକୁ ଉଜ୍ଜ୍ୱଳ କରେଇ? ନା- ସେ ଯେ ଜଣେ ସାଧାରଣ ସରକାରୀ ଚାକିରିଆର ତିନି ନମ୍ବର ଝିଅ। ଯେତେବେଳେ ଝିଅଟି ଶାନ୍ତ ସୁଶୀଳା, ଆନଂଦମୟୀ ମନେ ହେଉଥିଲା ସେତେବେଳେ ପ୍ରସନ୍ନର ବାପା ମଧ୍ୟ ସେଇ ଝିଅଟିର ବାପା ପରି ଏକା ସ୍ତରରେ ଚାକିରି କରୁଥିଲେ। ଆଉ ନିଜେ ପ୍ରସନ୍ନ ଥିଲା ମୋଟାମୋଟି ଭଲ ରେଜଲ୍‌ଟ କରି ପାଶ୍ କରି ଯାଉଥିବା ଛାତ୍ରଟିଏ। ହଠାତ୍ ଯେ ସେ ଏମିତି ଲୋଭନୀୟ ଦରମାର ଚାକିରିଟିଏ ପାଇଯିବ, ସେ କଥା କ'ଣ ତା' ବାପା ମା' ଭାବି ପାରିଥିଲେ? ଚାକିରିର

ପଦବୀଟା ତା' ନାଁ ସାଙ୍ଗରେ ଲାଗିଯିବା କ୍ଷଣି ସମସ୍ତେ ବଦଳିଗଲେ। ଯେମିତିକି କୃତିତ୍ୱଟା ପ୍ରସନ୍ନର ନୁହଁ, ସେମାନଙ୍କର ସବୁ। ତା'ପରେ କି ପ୍ରତିମା ପ୍ରତିମାଙ୍କୁ କିଏ ଫୁଲ ଚନ୍ଦନରେ ସଜେଇ ଘରକୁ ଆଣେ ?

ଘରକୁ ଅଣାଯାଏ କେବେ ମାଟିରେ ଚାଲି ନ ଥିବା, ପୃଥିବୀର ଦୁଃଖ ସନ୍ତାପ ଛୁଇଁ ନଥିବା, ଶୀତତାପନିୟନ୍ତ୍ରିତ ସୌଖୀନ୍ ଘରେ ବଢ଼ିଥିବା ଶର୍ବରୀଙ୍କୁ। ଆଧୁନିକ ଯୁଗର ରାଜଜେମା ଯିଏ।

ପରୋକ୍ଷ ଭାବରେ ପ୍ରସନ୍ନ ମଧ୍ୟ ଏଥିପାଇଁ ଦାୟୀ। ତା'ର ସିନା ପ୍ରତିମା ପ୍ରତି କୌଣସି ଦୁର୍ବଳତା ନ ଥିଲା, ତଥାପି ବି ତ ସେ ଭାବି ନେଇଥିଲା ଯେ ସେଇ ପଡ଼ିଶା ଘରଟି ହିଁ ତା'ର ଭାବୀ ଶ୍ୱଶୁର ଘର। କେମିତି ସେ ଭଳିଗଲା ? ରାଜାଙ୍କର ରାଜକୋଷ, ନଅର, ହାତୀଘୋଡ଼ା ତା' ମନକୁ କେମିତି ବଦଳେଇଦେଲା ?

ହେଃ- ଛାଡ଼। ସେ କେଉଁ ସଂସାରରୁ ବାହାର ? ସମସ୍ତଙ୍କ ଭଳି ସେ ବି ତ ସେଇ ଚାଲ୍‌ବାଜ୍ ଗୋତ୍ରର।

ରାମଚନ୍ଦ୍ର ପରଦିନ ଠିକ୍ ସମୟ ଅନୁସାରେ ଘରେ ପହଞ୍ଚିଗଲା। ପହଞ୍ଚୁ ନ ପହଞ୍ଚୁଣୁ ଡ୍ୟୁଟିରେ ଲାଗିଗଲା ସେ। ସେଇ ପୁରୁଣା ରୁଟୀନ ଯାହା ନନ୍ଦ ଏତେଦିନ କରି ଆସୁଥିଲା। ସାହେବଙ୍କୁ ଅଫିସରେ ପହଞ୍ଚେଇଦେଇ ଘରକୁ ଫେରି ମ୍ୟାଡ଼ମଙ୍କର ଡ୍ୟୁଟି। ତଥାପି ପ୍ରସନ୍ନ ତାକୁ ଆଖିରେ ଆଖିରେ ଜଗେ।

କିନ୍ତୁ ଲୋକଟା ଯେମିତି ମନେ ମନେ ଠିକ୍ କରି ରଖିଛି ଯେ ଏଇ ତିନି ମାସ ଅତି ମନ ଦେଇ କାମ କରିବ। ଥରେ ଚାକିରି ପର୍ମାନେଣ୍ଟ ହୋଇଗଲେ, ଅଫିସ୍‌ର ଫାଇଲରେ ନାଁ ରହିଗଲେ, ତଡ଼ି ଦେବା କ'ଣ ସହଜ ? ପ୍ରସନ୍ନ ଏମାନଙ୍କୁ ହାଡ଼େ ହାଡ଼େ ଚିହ୍ନିଛି। 'ଆରେ ତୁ ଡ଼ାଳେ ଡ଼ାଳେ ଗଲେ ମୁଁ ପତ୍ରେ ପତ୍ରେ ଯାଏ।' ତାକୁ ଫାଙ୍କି ଦେବା ଏତେ ସହଜ ନା କ'ଣ ?

ହେଲେ କେମିତିଆ ଯେ ଲୋକଟା ? ଦିନେ ବି ତା'ର ଡ଼େରି ହୁଏ ନାହିଁ। କେଉଁଦିନ ତା'ର ପେଟ କାଟେନି କି କେଉଁଦିନ ତା'ର ଆଈ ବା ଶାଶୁଙ୍କର ଶ୍ରାଦ୍ଧ ପଡ଼େନି।

ଏହା ଭିତରେ ଦିନଟିଏ ବ୍ୟତିକ୍ରମ ହେଲା। ପ୍ରସନ୍ନ ଭାବିଥିଲା ଏଇ ମୌକାରେ

ବିଦାୟ କରିଦେବ ଲୋକଟିକୁ। ସବୁବେଳେ ଏମିତି ଆଉ ଭଲଲୋକିଆ ଅଭିନୟ ସହି ହେଉନାହିଁ। ତା'ଛଡ଼ା କି ବିଶ୍ୱାସ ଏ ପୋଡାମୁହାଁ ଛୁପା ଗୁଣ୍ଡମଗୁଡ଼ାଙ୍କ ଉପରେ ?

ବ୍ୟତିକ୍ରମ ହେବାଭଳି ଘଟଣାଟି ଘଟିଥିଲା ଏଇଭଳି। ସେଦିନ ଘରକୁ ଫେରିବା ବେଳେ ନିହାତି କାକୁତିମିନତି ହୋଇ ରାମଚଂଦ୍ର କହିଥିଲା, ''ସାର୍, ଟଙ୍କା ଟିକିଏ ଦରକାର ଥିଲା। ପଚାଶଟା ଟଙ୍କା ଯଦି ଦେଇଥାଆନ୍ତେ...''

ଗର୍ଜି ଉଠିଲା ପ୍ରସନ୍ନ, ''କ'ଣ ଆରମ୍ଭ ହୋଇଗଲା ଆଡ଼୍‌ଭାନ୍‌ସ ଧନ୍ଦା। ଏସବୁ ଏଠି ଚଳିବନି। ତୁମେ ଅନ୍ୟ ବାଟ ଦେଖ।''

ପ୍ରାୟ ମାଟି ସାଙ୍ଗରେ ମିଶିଯାଇ ଭିଜା ଭିଜା ସ୍ୱରରେ କହିଲା, ''ସାର୍, ଥରେ ନିୟମିତ ଭାବରେ ଦରମା ପାଇଲେ ଏମିତି ହେବ ନାହିଁ। ଶେଷ ଦୁଇ ମାସର ଦରମା କାର ଏଜେନ୍‌ସି ଏବେବି ବାକୀ ରଖିଛି। ସେଥିପାଇଁ ଗୁଡ଼ାଏ ଧାର ହୋଇ ଯାଇଥିଲା। ଗତ ମାସ ଯାହା ଟଙ୍କା ଏଠୁ ପାଇଲି ସବୁ ଧାର ସୁଝିବାରେ ଗଲା। କେଉଁଠୁ ମାଗିଯାଚି ସିନା ଆମେ ବଡ଼ମାନେ ଚଳିଯିବୁ। କିନ୍ତୁ ବର୍ଷକର ପୁଅଟା କ୍ଷୀର ପାଇଁ ଯେତେବେଳେ ବିକଳ ହୋଇ କାଂଦେ, ସହି ହୁଏ ନାହିଁ।''

ପ୍ରସନ୍ନର ରାଗ ବରଫ ହୋଇ ଯାଇଥିଲା। ସତରେ ତ ଏ ଲୋକଟିର ଘର ପରିବାର ବିଷୟରେ ସେ କିଛି ଜାଣେ ନାହିଁ। କେବେ କିଛି ସେ ପଚାରି ମଧ୍ୟ ନାହିଁ।

''ତୁମେ ବାହା ହୋଇଛ ?''

''ଆଜ୍ଞା। ଗୋଟିଏ ପୁଅ।''

''ଘରେ ଆଉ କିଏ ?''

''ସ୍ତ୍ରୀ ମାଳତୀ। ବାପା, ମା, ଦି' ଭଉଣୀ।''

''ବାପା କିଛି କରେନି ?''

''ବାପା ମାଳୀ। କିନ୍ତୁ ଯାହା ରୋଜଗାର କରେ ସବୁ ମଦପିଇ ଉଡ଼େଇ ଦିଏ। ମା' ଦି'ଭଉଣୀଙ୍କୁ କାହା କାହା ଘରେ ଠିକା କାମ କରିବାକୁ ରଖେଇଦେଇଥିଲା। ହେଲେ ମୁଁ ଛଡ଼େଇଦେଇ ସେମାନଙ୍କୁ ସ୍କୁଲରେ ଦେଇଛି। ପାଠ ଦି' ଅକ୍ଷର ପଢ଼ିଥିଲେ ଭବିଷ୍ୟତରେ କ'ଣ କରି ଖାଇବେ। ନହେଲେ ତ ଅଇଣ୍ଠା ଖାଇ

ଖାଇ ଜୀବନ ଯିବ।''

ପ୍ରସନ୍ନ ଯେମିତି ନୂଆ କରି ଲୋକଟାକୁ ଦେଖୁଥିଲା। ଆଖି ଦୁଇଟା ନରମ ହୋଇ ଆସୁଥିଲା ତା'ର।

ଆରେ !! ସେ କରୁଛି କ'ଣ ? ଅଯଥା ଭାବପ୍ରବଣ ହୋଇ ଯାଉଛି ଯେ ? ଏତେ ବର୍ଷ ଧରି ସେ ଦେଖୁଛି। ଲୋକଙ୍କୁ ବିଶ୍ୱାସ କରିବାର ଫଳ ଭୋଗୁଛି। ପୁଣି ସେଇ ବିଶ୍ୱାସ ? ତା' ମନ ଉପରେ ସମସ୍ତେ ଯେଉଁ ଅତ୍ୟାଚାର କରି ଆସିଛନ୍ତି, ସେଇଟା ଏତେ ଶୀଘ୍ର ଭୁଲିଯିବ କେମିତି ?

ସ୍ୱରକୁ ଯଥା ସମ୍ଭବ ଗମ୍ଭୀର କରି ସେ କହିଲା, ''ଏଇ ନିଅ ପଚାଶ ଟଙ୍କା। କିନ୍ତୁ ଦରମାରୁ କାଟିବି।''

''ଆଜ୍ଞା।'' ମୁଣ୍ଡ ନୁଆଇଁ ରାମଚନ୍ଦ୍ର ଚାଲିଯାଇଥିଲା।

ତା'ର ଯିବା ବାଟକୁ ଚାହିଁ ଭାବି ହେଉଥିଲା ପ୍ରସନ୍ନ। ଦୁଇ ମାସ ଉପରେ ହୋଇଗଲାଣି। ଆଉ ମାସକରୁ ମଧ୍ୟ କମ୍ ସମୟ ଅଛି କଣ୍ଟ ପୁରିବାକୁ। ତଥାପି ଏ ପର୍ଯ୍ୟନ୍ତ ଲୋକଟା ଏମିତି କିଛି କଲାନାହିଁ ଯେଉଁଥିରେ କି ଦୋଷ ଦେଇ ହେବ। ଶର୍ବରୀ ମଧ୍ୟ ନୂଆ ଡ୍ରାଇଭର ଉପରେ ଖୁସୀ।

''ବୁଝିଲ, ଲୋକଟା ଅତ୍ୟନ୍ତ ନିରୀହ। ଆଜ୍ଞାବହ। ମୁଁ ସେଦିନ୍ ମିସେସ୍ ସାନ୍ୟାଲ ଘରେ ତମ୍ବୋଲା ଖେଳରେ ବସିଗଲି। ରାମଚଂଦ୍ରକୁ ଯେ ଦୁଇପହରେ ଖାଇବାପାଇଁ ପଠେଇବା କଥା, ଏକଦମ୍ ଭୁଲିଗଲି। ଅଥଚ ସେ ଥରେ ଆସି ମତେ ଡ଼ିଷ୍ଟର୍ବ କଲା ନାହିଁ। ସେମିତି ଓପାସରେ ଦିନ ସାଢ଼େ ଚାରିଟା ଯାଏଁ ରହିଗଲା।''

ବାଃ ବାଃ। ପ୍ରସନ୍ନ ମନେ ମନେ ସାବାସି ଦିଏ ତା' ସ୍ତ୍ରୀକୁ। ତମ୍ବୋଲା ଖେଳରେ ମଗ୍ନ ହୋଇ ପାଟିରେ ଏଣୁତେଣୁ ସ୍ନାକ ପକାଇବାବେଳେ ନୌକରଚାକରଙ୍କ କଥା କିଏ ମନେ ପକାଏ ? ଆଉ ଏ ରାମଚଂଦ୍ର ବୋକା ବୋକା ଦିଶେ ସିନା, ମହା ଚାଲାକ ପ୍ରକୃତରେ। ସେ ମଧ୍ୟ ବୁଝିଗଲାଣି ଯେ ଏ ଘରର ଚାବିକାଠି ମ୍ୟାଡ଼ମଙ୍କ ହାତରେ। ତେଣୁ ତାଙ୍କ ସାମ୍ନାରେ ଆଣ୍ଠୁ ଭାଙ୍ଗି ଆଜ୍ଞାବହ ହନୁମାନ ହୋଇଗଲେ ଲାଭ ଅଛି।

ଶଳା ଯିବ କୁଆଡ଼େ ? ଦିନେ ନା ଦିନେ ଧରା ପଡ଼ିବ।

ସେଦିନ ସାଧାରଣତନ୍ତ୍ର ଦିବସ ଥିଲା। ପ୍ରସନ୍ନର ଅଫିସ ଛୁଟି। କିନ୍ତୁ ତା'ର

ଛୁଟି ବୋଲି ଘରଯାକର ରୁଟୀନ ଏପାଖସେପାଖ ହୋଇ ଯାଇଥାଆନ୍ତା କି ? ଫଳରେ ଶର୍ବରୀ ଯାଇଛି ତା' ଲେଡ଼ିଜ୍ କ୍ଲବ ତରଫରୁ ସମାଜସେବା ପାଇଁ। ଅର୍ଥାତ କିଛି କିଛି ଫଳ, ବିସ୍କୁଟ ଏକାଠି କରି ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ଡ଼ାକ୍ତରଖାନାର ଶିଶୁୱାର୍ଡ଼ରେ ପଡ଼ିଥିବା ପିଲାଙ୍କୁ ଦିଆଯିବ। ସାଙ୍ଗରେ ରହିଥିବ ଫଟୋଗ୍ରାଫର। ଆସନ୍ତାକାଲି ଖବରକାଗଜରେ ସମ୍ବାଦ ସହିତ ଫଟୋ ମଧ୍ୟ ବାହାରିଯିବ। ଭଲ ଭଲ। ସମାଜସେବା ବଡ଼ ନା ସ୍ୱାମୀ ପାଖରେ ବସି ରହି ହସଖୁସି କରିବା ବଡ଼ ?

ଜିନି, ରାଜୁଙ୍କ କଥା ଆଉ କାହିଁକି ? ସେମାନଙ୍କ ସ୍କୁଲରେ ଆଜି ଫଙ୍କସନ୍। ନା- ପତାକା ଉତ୍ତୋଳନ, ଜାତୀୟ ସଙ୍ଗୀତ ଗାନ - ଏସବୁ ମାନ୍ଧାତା ଅମଳର ଷ୍ଟୁପିଡ଼୍ ଜିନିଷ, ନୁହଁ। ଆଜି ହେବ ବିଭିନ୍ନ କ୍ଲାସ୍ ଭିତରେ କୁଇଜ୍, ଅନ୍ତାକ୍ଷରୀ ଓ ଫ୍ୟାସନ ପ୍ୟାରେଡ଼୍। ସେମାନେ ଏସବୁ ଛାଡ଼ି ଘରେ ରହନ୍ତେ ବା କେମିତି ?

ଆଉ ଅସଲ ମାଲିକମାନେ ଘରେ ନ ରହିଲେ ଚାକରଚାକରାଣୀମାନେ ବସି ରହିବେ କାହିଁକି ? ପ୍ରସନ୍ନର ଖାଇବା ହଟ୍‌କେଶରେ ଓ ଚାହା ଫ୍ଲାସ୍କରେ ରଖି ସେମାନେ ଯାଇ ଆଉଟ୍‌ହାଉସ୍‌ରେ। ସେଠି ଗୁଲିଖଟି ଚାଲିଥିବ ସେମାନଙ୍କର।

ପ୍ରସନ୍ନକୁ କିନ୍ତୁ ଭାରି ଭଲ ଲାଗୁଥିଲା। କେତେଦିନ ଏମିତି ଶାନ୍ତ ପରିବେଶ ଉପଭୋଗ କରିବାର ସୁଯୋଗ ସେ ପାଏ ? ଦାଣ୍ଡ ଘରେ ବସି ସୁନ୍ଦର ବହିଟିଏ ପଢୁଥିଲା ସେ। ହଠାତ୍ ତାକୁ ଚମକାଇ ଦେଇ ଫୋନ୍‌ଟା ବାଜି ଉଠିଲା। ଏ ଅବେଳରେ ପୁଣି କିଏ ?

"ହ୍ୟାଲୋ।"

ସେପଟୁ କେବଳ ଗୁଡ଼ାଏ ଶବ୍ଦ, ଗାଡ଼ି ମଟରର ପେଁ ପାଁ ଆଉ ଖୁବ୍ କ୍ଷୀଣ ଗୋଟିଏ ନାରୀ କଣ୍ଠ। ନିଶ୍ଚୟ କିଏ ଜଣେ ପବ୍ଲିକ ଫୋନ ବୁଥ୍‌ରୁ ଫୋନ୍ କରୁଛି।

"ହ୍ୟାଲୋ।" ଗଳାରେ ଜୋର ଦେଇ ସେ ଆଉ ଥରେ କହିଲା।

"ଆଜ୍ଞା, ରାମଚନ୍ଦ୍ର ଅଛନ୍ତି ?" ସେପଟର କ୍ଷୀଣ ନାରୀ ସ୍ୱର ଟିକିଏ ରହିରହି କହିଲା।

"ଏଠି ରାମଚନ୍ଦ୍ର କେହି ରହନ୍ତି ନାହିଁ। ରଂ ନମ୍ବର।" ପ୍ରସନ୍ନ ଫୋନ୍ ରଖିଦେବାକୁ ଯାଉଥିଲା।

କିନ୍ତୁ ଉଦ୍‌ବିଗ୍ନ ସ୍ୱରଟିଏ ତରବରିଆରେ କହିପକେଇଲା, ''ରାମଚନ୍ଦ୍ର ଡ୍ରାଇଭର।''

ପ୍ରସନ୍ନର ମୁହଁ ଗମ୍ଭୀର ହୋଇଗଲା। ଓ..., ତାହେଲେ ବାବୁଙ୍କର ଫୋନ୍ ଆସିବା ଆରମ୍ଭ ହୋଇ ଗଲାଣି। ମେରୀ, ଶଂକର ଭଳି ଏଇଟାକୁ ହାତରେ ରଖିବାପାଇଁ ଶର୍ବରୀ ତାହେଲେ ତା'କୁ ମୁହଁବନ୍ଧା କରିସାରିଲାଣି। ମନ୍ଦ କ'ଣ ?

''ସେ ନାହିଁ। ଗାଡ଼ି ନେଇ ଯାଇଛି।''

''ଆଜ୍ଞା, ସେ ଆସିଲେ ଟିକିଏ କହିଦେବେ ମୁଁ ପାର୍ବତୀ। ବସ୍‌ଷ୍ଟାଣ୍ଡରେ ଅପେକ୍ଷା କରିଛି। ସେ ଯେମିତି ହେଲେ ଆସିବେ।'' ଡ଼ରୁଆ ସ୍ୱରରେ କଥା କେଇ ପଦ ଭାସିଆସିଲା।

ଫୋନ୍ ରଖିଦେଇ ପ୍ରସନ୍ନ ଭାବି ହେଲା। ବହୁତ ଦିନ ତଳେ ତା' ସ୍ତ୍ରୀର ନାଁ କ'ଣ ବୋଲି କହିଥିଲା ରାମଚନ୍ଦ୍ର ? ସୁମତୀ ନା ମାଳତୀ - ଏମିତି କ'ଣଟାଏ। ଏ ପାର୍ବତୀ ପୁଣି ଆସିଲେ କେଉଁଠୁ ? କୌଣସି ଆତ୍ମୀୟ ଯଦି, ଘରକୁ ନ ଯାଇ ଏମିତି ବସ୍‌ଷ୍ଟାଣ୍ଡରେ ଅପେକ୍ଷା କରିବାର ମାନେ କ'ଣ ?

ଶଳାର ନିଶ୍ଚୟ କିଛି ଲଫଡ଼ା ଅଛି। ସତକଥା ତ, ଏହା ପୂର୍ବରୁ ସେ କେଉଁ ସହରରେ ଥିଲା - ସେକଥା ପ୍ରସନ୍ନ କେବେ ପଚାରି ବୁଝିନି। ହୁଏତ, ଦୂରରେ କେଉଁଠି ଥିଲା। ପିଲାଛୁଆଙ୍କୁ ଏଠି ଛାଡ଼ି ଯାଇଥିଲା। ଆଉ ସେଠି କେଉଁ ସ୍ତ୍ରୀ ଲୋକ ଚକ୍କରରେ ପଡ଼ିଥିଲା। ସୁବିଧା ଦେଖି ଭାଗି ଆସିଛି ଏଠିକି। ଏବେ ନିଶ୍ଚୟ ସେଇ ସ୍ତ୍ରୀଲୋକ ଏହାର ଠିକଣା ଯୋଗାଡ଼ କରି ପହଞ୍ଚିଛି।

ଆସୁ ସେ ବଦମାସ।

ପ୍ରାୟ ସାତଟା ବେଳକୁ ଶର୍ବରୀକୁ ନେଇ ଫେରିଲା ରାମଚନ୍ଦ୍ର। ଗାଡ଼ି ପୋଛି ଗାଡ଼ିକୁ ଗ୍ୟାରେଜରେ ରଖିଲା। ତା'ପରେ ଗ୍ୟାରେଜରେ ତାଲା ଦେଇ ମେରୀକୁ ଚାବି ଦେଇ ଠିକ୍ ଚାଲିଗଲା ବେଳେ ତାକୁ ପଛରୁ ଡ଼ାକିଲା ପ୍ରସନ୍ନ।

''ରାମଚନ୍ଦ୍ର, ତୁମ ପାଇଁ ଗୋଟିଏ ଫୋନ୍ ଆସିଥିଲା। ତୁମେ ଆମ ଫୋନ୍ ନମ୍ବର କାହାକୁ କାହାକୁ ଦେଇଥିଲ କି ?''

''ନାଇଁ ତ ସାର୍। ଘର ଲୋକ ଛଡ଼ା ଆଉ କାହାକୁ ଦେଇନାହିଁ। ଅସୁବିଧା ନ ହେଲେ କେହି ଫୋନ୍ କରିବେନି। କିଏ ଫୋନ୍ କରିଥିଲା କି ସାର୍ ?'' ତା'ର ଗଳା ସ୍ୱର ବଦଳି ଯାଇଛି। ଗୋଟିଏ ଆତଙ୍କ ଚାପି ଧରିଛି ଯେମିତି

ତା'କୁ।

କି ଅଭିନୟ!! ଆଖିର ପଲକ ନ ପକାଇ ମିଛ କହି ଯାଉଛି ଲୋକଟା। ''କହିଲା ପାର୍ବତୀ। ବସ୍‌ଷ୍ଟାଣ୍ଡରେ ତୁମ ପାଇଁ ଅପେକ୍ଷା କରିଛି।'' ପ୍ରସନ୍ନ କଥାଟା କହିଦେଇ ଡ୍ରାଇଭର ମୁହଁକୁ ଚାହିଁଲା। ଏବେ କ'ଣ କହିବ? କି କୈଫିୟତ ଦେବ ସେ?

ନା- କୌଣସି କୈଫିୟତ ଦେଲା ନାହିଁ ସେ। କେବଳ ଅସ୍ପଷ୍ଟ ଭାବରେ କହିଲା, ''ପାର? ବସ୍‌ଷ୍ଟାଣ୍ଡରେ??'' ସେ ମୁହୂର୍ତ୍ତେ ଚୁପ୍ ହୋଇ ଠିଆହୋଇ ରହିଲା। ତା'ପରେ ହଠାତ ବୁଲିପଡ଼ି ସାଇକେଲ ଉପରେ ଉଠିଯାଇ ପାଗଳଙ୍କ ଭଳି କୁଆଡ଼େ ଛୁଟିଗଲା।

ପାଟିରୁ ଗାଳିଟିଏ ବାହାରି ଆସିଲା ପ୍ରସନ୍ନର। ଏତେ ପ୍ରେମ! ଆସୁ ସେ କାଲି ସକାଳେ।

କିଂତୁ ପରଦିନ ସକାଳେ ରାମଚଂଦ୍ର ଆସିଲା ନାହିଁ। ଗତ ଅଢ଼େଇମାସର ରୁଟୀନ ପ୍ରଥମ ଥର ପାଇଁ ଏପାଖସେପାଖ ହେଲା। ଥ୍ୟାଙ୍କ୍ ଗଡ୍। ତିନି ମାସର କଣ୍ଟ ପୂରିବା ଆଗରୁ ଲୋକଟିର ଅସଲ ସ୍ୱରୂପ ଧରା ପଡ଼ିଗଲା। ନହେଲେ ଥରେ ଚାକିରି ପର୍ମାନେଣ୍ଟ ହୋଇଯାଇଥିଲେ ଛଟେଇ କରିବା କି ଯେ ଝାମେଲା!

ତଥାପି ପ୍ରସନ୍ନ ମନତଳେ ଟିକିଏ ଅସ୍ୱସ୍ତି ରହିଯାଇଥିଲା। ଏ ବଦମାସ ସେ ମାଇକିନାକୁ ଧରି ଭାଗିଯାଇନାହିଁ ତ? ଯଦି ସେମିତି କିଛି କରିଥିବ ତେବେ ଭୋକଉପାସରେ ସଢୁଥିବେ ତା' ପିଲାଛୁଆ। ଏଣେ ତା'ର ଏ ମାସର ବାଇଶ ଦିନର ଦରମା ବାକୀ ଅଛି। ସେଇତକ ଦେଇଦେଲେ ଅନ୍ତତଃ ସେମାନେ କିଛିଦିନ ଚଳିଯିବେ। ତା' ଭିତରେ ପୁଣି ନିଜର ଅନ୍ୟ କିଛି ବ୍ୟବସ୍ଥା କରିନେଇପାରିବେ।

ପ୍ରସନ୍ନ ରଘୁ ହାତରେ ଟଙ୍କାଟା ପଠେଇ ଦେଇ ପାରିଥାନ୍ତା। କିନ୍ତୁ କାହିଁକି କେଜାଣି, ଗୋଟିଏ ହୋସ୍‌ରେ ସେ ନିଜେ ଗାଡ଼ି ବାହାରକଲା। ରଘୁକୁ ସାଙ୍ଗରେ ନେଇ ରାମଚଂଦ୍ର ରହୁଥିବା ବସ୍ତିରେ ପହଞ୍ଚିବାକୁ ତାକୁ ବେଶୀ ସମୟ ଲାଗିଲା ନାହିଁ।

ଇସ୍- ଏଠି ପୁଣି ମଣିଷ ରହନ୍ତି? ଦୁର୍ଗଂଧଭରା ନାଳ। ତା'ର ଗୋଟିଏ ପଟେ ସଂସାରଯାକର ଆବର୍ଜନା ଗଦାହୋଇ ରହିଛି। ଅନ୍ୟ ପଟେ ଛୋଟ ଛୋଟ ଚାଳିଆ। ''ସେଇ ଘରଟା ଆଜ୍ଞା।'' ରଘୁ ଆଙ୍ଗୁଠି ଦେଖେଇଲା।

''ହୁଁ- ଯା । ତା' ଘରୁ କାହାକୁ ଡ଼ାକିନେଇ ଆ ।''

ମୁଣ୍ଡ ଟୁଙ୍ଗାରି ଚାଲିଗଲା ରଘୁ ।

କିଛି ସମୟ ପରେ ଚାଳିଆ ଭିତରୁ ଯିଏ ବାହାରି ଆସିଲା ସେ ରାମଚନ୍ଦ୍ରର ମା' ନୁହଁ କି ସ୍ତ୍ରୀ ନୁହଁ । ଖୋଦ ରାମଚନ୍ଦ୍ର ନିଜେ ।

ଏ କି ଚେହେରା ? ଚବିଶ ଘଣ୍ଟା ଭିତରେ ଲୋକଟାର ବୟସ ଦଶବର୍ଷ ବଢ଼ିଗଲା ନା କ'ଣ ?

ପ୍ରସନ୍ନ ପାଖକୁ ଆସି ତା' ଗୋଡ଼ ଧରି ପକେଇଲା ସେ ।

''ଆରେ, ଆରେ, ଏ କ'ଣ ହେଉଛି ?''

''ସାର୍, ଆଜି ଡ୍ୟୁଟିକୁ ଆସି ପାରିଲିନି । ସେଥିପାଇଁ ଚାକିରିରୁ ତଡ଼ିଦେବେନି ସାର୍ । ଚଉଁଶଟାଯାକ ଛଟପଟ ହୋଇଯିବେ । ...ହଠାତ୍ ଏମିତି ପାର ଆସି ପହଞ୍ଚିବ ବୋଲି ଜାଣି ନ ଥିଲି । ପାର୍ବତୀ ମୋ ତଳ ଭଉଣୀ । ଦୁଇବର୍ଷ ତଳେ ବାହାହୋଇ ବାଲେଶ୍ୱରରେ ଥିଲା । ତା' ବର ଆମ ଦେବାନେବାରେ ଅସନ୍ତୁଷ୍ଟ ହୋଇ ତାକୁ ବାପଘର ପଠାଉ ନଥିଲା । ତଥାପି ମୁଁ ମନ ଖରାପ କରିନି । ସେ ଭଲରେ ରହିଲେ ଗଲା । ...ହେଲେ, ଯା ଭିତରେ ଯେ ଏତେ କଥା ହୋଇଗଲାଣି, ତା' ମୁଁ ଜାଣି ନ ଥିଲି । ତା' ବର କୋଉଠୁ ଗୋଟାଏ ସ୍ତ୍ରୀଲୋକ ଆଣି ଘରେ ପୂରେଇଛି । ସେ ଦୁହିଁଙ୍କର ଫରମାଇସ ଖଟିବାକୁ ଗୋଟାଏ ମଣିଷ -- ଆମ ପାର । ଏତେ କରି ବି ପଦେ ଭଲ କଥା ନାହିଁ । ଯେତେକ ମାଡ଼ ଗୋଇଠା ସବୁ ଯା ଉପରେ । ପାର ଚୁପଚାପ ସହି ନଉଥିଲା । କିନ୍ତୁ କାଲି ଯେତେବେଳେ ପାରକୁ କୁଲଟା କହି ତା' ଆଠ ମାସର ଝିଅର ତଣ୍ଟି ଚିପି ଦେବାକୁ ବସିଲା, ସେ ଆଉ ସହି ପାରିଲାନି । ଲୁଚି ବସ୍‌ରେ ବସି ଚାଲିଆସିଲା ଏଠିକି । ନୂଆ ଜାଗା । ଭେଟଣା ଟିକିଏ ହୋଇଯାଇଥିଲା । ତେଣୁ ମତେ ଫୋନ୍ କରିଥିଲା ।''

କୋହରେ ରୁନ୍ଧି ହୋଇଯାଉଛି ତା' ଗଳା ସ୍ୱର । ତଥାପି ସେ କହି ଚାଲିଥିଲା, ''ଭାଗ୍ୟକୁ ମୁଁ ଏଠିକା ନମ୍ବର ଦେଇ ଚିଠିଟାଏ ଦେଇ ଥିଲି କିଛି ଦିନ ତଳେ । ଲେଖିଥିଲି ବେଶୀ ଅସହ୍ୟ ହେଲେ ମତେ ଫୋନ୍ କରିଦେଲେ ମୁଁ ଯାଇ ନେଇ ଆସିବି । ହେଲେ...'' ସକ ସକ ହୋଇ କାନ୍ଦି ପକେଇଲା ରାମଚନ୍ଦ୍ର, ''ଏଡ଼ିକି ଟିକିଏ ଦୁଧଖିଆ ଛୁଆ । ତା' ଦେହରେ ବି ନୋଳା

ବସେଇ ଦେଇଛି ଚଣ୍ଡାଳ। ବାପ ନା କଂସେଇ କେଜାଣି! ଆଜି ସକାଳେ ଡ଼ାକ୍ତରଖାନା ନେଇଥିଲି ମା', ଝିଅଙ୍କୁ। ଓଷଧ, ଇଂଜେକ୍‌ସନ୍ କରି ଏବେ ଫେରୁଛି।''

ନିଜକୁ ନିଜେ ବୋଧ ଦେବା ଭଳି ସିଧା ହୋଇ ଠିଆ ହେଲା ରାମଚଂଦ୍ର, ''ଏଇଠି ରଖିବି ମୋ ପାରକୁ। ସାତ ପ୍ରାଣୀ କୁଟୁମ୍ବ ଚଳାଉଥିଲି, ଆଉ ଦିଇଟା ପେଟ ପୋଷିପାରିବିନି? ...ହେଲେ ସାର୍... ଆଜିର ଭୁଲ ପାଇଁ ଚାକିରିରୁ ତଡ଼ି ଦେବେ ନାହିଁ। ନଅ ପ୍ରାଣୀ କୁଟୁମ୍ବ ଛଟପଟ ହୋଇ ମରିଯିବେ।''

ଏସବୁ ଅଭିନୟ? ଏ ନଳା, ନଳା ପାଖ ଚାଳିଆ, ଚାଳିଆ ଭିତରୁ ଆସୁଥିବା ସୁକୁସୁକୁ କାଂଦ ଆଉ ରାମଚଂଦ୍ରର ବିକଳ ଭାବ ...ଏସବୁ ବି କ'ଣ ଅଭିନୟ?

ଅସମ୍ଭବ !!

ପ୍ରସନ୍ନ ରାମଚଂଦ୍ରକୁ ଦେଖୁଥିଲା। ଦେଖୁଥିଲା ଦାରିଦ୍ର୍ୟରେ ଲଟପଟ ହୋଇଯାଇଥିବା ମଣିଷଟିକୁ। ନଇଁ ଯାଇଛି, କିନ୍ତୁ ଏବେବି ଭାଙ୍ଗି ପଡ଼ିନି। ବିନା ଆକ୍ରୋଶରେ, ବିନା ଦ୍ୱିଧାରେ ସେ ନିଜର ଧସିଯାଇଥିବା କାଂଧ ଉପରକୁ ଟାଣି ନେଉଛି ଆଉରି ଅଧିକ ବୋଝ। ସ୍ୱେଚ୍ଛାରେ।

ଆଶ୍ଚର୍ଯ୍ୟ! ଏ କ'ଣ ଏଇ ସଂସାରର ମଣିଷ ଭିତରୁ ଜଣେ? ପ୍ରସନ୍ନର କଳଙ୍କି ଲାଗିଯାଇଥିବା ମନକୁ କିଏ ଯେମିତି ଘଷି ମାଜି ପରିଷ୍କାର କରିଦେଉଥିଲା। ଅନିଚ୍ଛା ସତ୍ତ୍ୱେ ଅନ୍ୟ ମଣିଷ ପ୍ରତି ତା'ର ବିଶ୍ୱାସ ଫେରି ଆସୁଥିଲା। ▢▢

# ଅପ୍ରତିଶ୍ରୁତ

ଅସହନୀୟ ଶବ୍ଦର ଆକ୍ରମଣରେ ଅତିଷ୍ଠ ହୋଇ ପଡ଼ିଲା କବିତା। ବାବାରେ! ଏମାନେ ଏକା ନୂଆ ବର୍ଷକୁ ସ୍ୱାଗତ କରି ଜାଣନ୍ତି। କୋଳାହଳର କମ୍ବଳ ଭିତରେ ମୁହଁ ଗୁଞ୍ଜି ନ ପଡ଼ିଲେ କ'ଣ ପାର୍ଟି ହୁଏ ନାହିଁ? ଏତେ ଜୋର୍‌ରେ ଷ୍ଟେରିଓ ବାଜୁଛି ଯେ ତା' କାନ ଅତଡ଼ା ପଡ଼ି ଯାଉଛି। ଅଥଚ କାହାର ଯେମିତି କୌଣସି ଅସୁବିଧା ହେଉ ନାହିଁ। ବରଂ ଷ୍ଟେରିଓରେ ବାଜୁଥିବା ପାଶ୍ଚାତ୍ୟ ସଙ୍ଗୀତକୁ ଦବେଇ ଦେଇ ଆହୁରି ଜୋରରେ ନିଜ ନିଜ ଭିତରେ କଥା କହି ଚାଲିଛନ୍ତି ସେମାନେ। ମଧ୍ୟ ରାତ୍ରିର ଅବ୍ୟବହିତ ପୂର୍ବରୁ କେଇ ଜଣ ଅଠର ଉଣେଇଶ ବର୍ଷର ପୁଅ ଝିଅ ନାଚିବା ଆରମ୍ଭ କରି ଦେଇ ଥିଲେ। ଏବେ ନାଚ ଆସରର ସଂଖ୍ୟା ବଢ଼ିଛି। ପଚାଶ ବର୍ଷର ମିହିର ରାୟଙ୍କଠାରୁ ଆରମ୍ଭ କରି ତିନି ବର୍ଷର ସୋମା ସେଇ ଦଳରେ ମିଶି ସାରିଛି।

ସେଇମିତି ନାଚି ନାଚି ଆସି ତା' ହାତ ଟାଣିଲେ ସୀମା ନାନୀ, "କମ୍ ଅନ୍ କବିତା। ଜଏନ୍ ଅସ୍। କ'ଣ ଏମିତି ଚୁପ୍‌ଚାପ୍ ବସି ରହିଛ?"

ହସି ଦେଇ କବିତା ମୁଣ୍ଡ ହଲାଇଲା, "ନା- ନାଚ ଜଣା ନାହିଁ।"

"ଆରେ ଆମକୁ ସବୁ ନାଚ ଜଣା ନା କ'ଣ? ଖାଲି ଏନ୍‌ଜୟ କରିବା କଥା। ଏଠି କ'ଣ କଂପିଟିସନ୍ ହେଉଛି କି?"

"ନା- ଇଚ୍ଛା ନାହିଁ।"

ସୀମା ନାନୀ ଚାଲିଗଲେ।

ବଡ଼ ହସଖୁସିଆ ମଣିଷ ଏଇ ସୀମା ନାନୀ। ସବୁବେଳେ ହସୁଥାନ୍ତି। ଆଉ ହସାଉଥାଆନ୍ତି ତାଙ୍କ ଚାରିପାଖରେ ଥିବା ମଣିଷମାନଙ୍କୁ। କାହାକୁ ମୁହଁ ଶୁଖାଇବାର ଦେଖିଲେ ହେଲା। ତା' ପଛରେ ଲାଗି ଲାଗି ତା' ମନକୁ ଖୁସୀ ନ କରିବା ପର୍ଯ୍ୟନ୍ତ ତାଙ୍କର ଯେମିତି ଶାନ୍ତି ନାହିଁ।

ଏଇ କବିତାର ଯେମିତି ହୋଇଥିଲା। ହଠାତ୍ ଚାରିଦିନ ତଳେ ଖବର ଆସିଲା ଯେ ଶ୍ୱଶୁରଙ୍କର ହିପ୍‌ବୋନ୍ ଫ୍ରାକ୍‌ଚର୍। କଟକ ମେଡ଼ିକାଲ୍‌ର ଆଇ.ସି.ୟୁ.ରେ ଭର୍ତ୍ତି କରାଯାଇଛି ତାଙ୍କୁ। ଏ ଖବର ପାଇ କୌଣସି ମତେ ଟିକେଟ୍ ଯୋଗାଡ଼ କରି ତା' ସ୍ୱାମୀ ଇଂଦ୍ରନୀଳ ଚାଲିଗଲେ। କବିତା ଯାଇଥାଆନ୍ତା କେମିତି? କାହିଁ ଆମେରିକା ଆଉ କାହିଁ ଭାରତ? ଷ୍ଟୁଡ଼େଣ୍ଟ ସ୍କଲାରସିପ୍‌ରେ କ'ଣ ଏମିତି ଦୁଇ ଦୁଇଟା ଟିକେଟ ଫୁଲ୍‌ରେଟ୍‌ରେ କରିହୁଏ? ତା'ଛଡ଼ା ଆକାଶକୁ ଛାଡ଼ି ଥାଆନ୍ତା କେଉଁଠି? ଏଣେ ଶ୍ୱଶୁରଙ୍କ ପାଇଁ ଦୁଶ୍ଚିନ୍ତା, ତେଣେ ଇଂଦ୍ରନୀଳଙ୍କ ବିନା ଏତେ ଗୁଡ଼ାଏ ଦିନ ଏକା ଏକା ରହିବା - ବଡ଼ ବ୍ୟସ୍ତ ଲାଗୁଥିଲା କବିତାକୁ। ଆଗରୁ ଜଣାଥିଲେ ମଧ୍ୟ ଭାରତୀୟମାନଙ୍କର ନୂଆବର୍ଷ ପାଳନ ଉତ୍ସବକୁ ଆସିବାର କୌଣସି ଇଚ୍ଛା ନ ଥିଲା ତା'ର। ଇଚ୍ଛା ଥିଲେ ବି ଯାଇଥାଆନ୍ତା କେମିତି? ତାକୁ କେଉଁ ଡ୍ରାଇଭିଙ୍ଗ୍ ଜଣା ଯେ?

ସେତିକିବେଳେ ଫୋନ୍ କରି ଜବରଦସ୍ତି ତାକୁ ଘରୁ ବାହାର କରାଇଥିଲେ ସୀମା ନାନୀ। ନିଜେ ଆସି ତାଙ୍କ ସାଙ୍ଗରେ ତାକୁ ଓ ଆକାଶକୁ ନେଇଗଲେ। ପରେ ପୁଣି ଛାଡ଼ି ଦେଇ ଯିବେ। କିନ୍ତୁ ଏଠିକି ଆସି ଲାଭଟା କ'ଣ ହେଲା? ବରଂ ଘରେ ଟି.ଭି ସାମ୍ନାରେ ବସିଥିଲେ ଭଲ ହୋଇଥାଆନ୍ତା।

ଏ ଶବ୍ଦର ଅତ୍ୟାଚାର ଯେ ଅସହ୍ୟ ହୋଇ ପଡୁଛି କବିତା ପାଇଁ।

କୌଣସି ଏକ ସ୍କୁଲ୍‌ର ଅଡ଼ିଟୋରିୟମ୍ ଏଇଟା। ଆଜି ରାତି ପାଇଁ ଭଡ଼ା ନିଆ ହୋଇଛି। ଅଡ଼ିଟୋରିୟମ୍ ବାହାରେ ସୁନ୍ଦର ଫୁଲ ବଗିଚା। ସେଠି ମାର୍ବଲର ବେଞ୍ଚ୍ ପଡ଼ିଛି। କି ଲୋଭନୀୟ! କବିତାର ଇଚ୍ଛା ହେଉଥିଲା ଚୁପ୍‌ଚାପ୍ ସେଠିକି ଚାଲିଯିବ। ତାରା ଝିକିମିକି ଆକାଶ ତଳେ କିଛି ସମୟ ପାଇଁ ନିଜକୁ ହଜେଇ ଦେବ। ଉଃ- ନିଜ ଅଜାଣତରେ ଶିହରି ଉଠିଲା ତା' ଦେହ। ଉଷୁମ ଅଡ଼ିଟୋରିୟମ୍ ଭିତରେ ଜଣା ପଡୁନି ସିନା, ବାହାରେ ଏବେ ତ ହାଡ଼ଥରା ଥଣ୍ଡା ପଡ଼ିଥିବ। ସିଲ୍‌କ ଶାଢ଼ି ଆଉ ହାଲୁକା ଶାଲ୍‌ରେ କ'ଣ ତା'ର ସାମ୍ନା କରିହୁଏ? ତେଣୁ

ଏଇ ଶଢ ଓ ବାଚାଳତା ସହ୍ୟ କରିବା ଛଡ଼ା କବିତାର ଅନ୍ୟ କୌଣସି ଉପାୟ ନାହିଁ।

"ଏମିତି ଏକା ଏକା କାହିଁକି ବସିଛ, କବିତା ?"

ମୁହଁ ବୁଲାଇଲା ସେ। ହାତରେ ସିଗାରେଟ୍ ଧରି ପାଖରେ ଠିଆ ହୋଇଥିଲେ ରଜତ।

"ଝରକା ଦେଇ କି ସୁନ୍ଦର ଲାଗୁଛି ଫୁଲ ବଗିଚା। ଏଇଠୁ ବସି ବସି ଦେଖୁଥିଲି।"

"ହଁ... ସୁନ୍ଦର।" ଅନ୍ୟମନସ୍କ ଭାବରେ ରଜତ କହିଲେ। "ଇଂଦ୍ରନୀଳ କେବେ ଫେରିବ ?"

"କେଜାଣି ? ବାବା ଏବେବି ଆଇ.ସି.ୟୁରେ। କାଲି ଫୋନ୍‌ରେ ସେ କହୁଥିଲେ ଯେ ଅପରେସନ୍ କରିବାକୁ ପଡ଼ିପାରେ। ଯଦି ସେକଥା ହୁଏ ତେବେ ଫେରୁ ଫେରୁ ତାଙ୍କର ନିଶ୍ଚୟ ଆହୁରି ମାସେ ଦେଢ଼ ମାସ ଲାଗିଯିବ।"

"ଆଇ ସି।" ସିଗାରେଟ୍‌ରେ ଟାଣ ଦେଲେ ରଜତ। ତା'ପରେ କବିତାକୁ ସ୍ଥିର ଭାବରେ ଚାହିଁ କହିଲେ, "ଆଇ ନିଡ୍ ଏ ଫେଭର୍, କବିତା।"

ଫେଭର୍ ? ରଜତ ତା'ଠାରୁ ସାହାଯ୍ୟ ଚାହୁଁଛନ୍ତି ? କି ସାହାଯ୍ୟ ତାଙ୍କୁ କରିପାରିବ କବିତା ?

ହୁଏତ ସାହାଯ୍ୟ କରିବାର କ୍ଷମତା ହିଁ ତା'ର ନାହିଁ। କିନ୍ତୁ ରଜତଙ୍କ ଭଳି ଜଣଙ୍କର କଥା ନ ଶୁଣି କ'ଣ ଆଡ଼େଇ ଦେବା ଚଳେ ?

ଆମେରିକାରେ ଆସି ପହଞ୍ଚିବା ପରେ ଇଂଦ୍ରନୀଳ ଓ କବିତା ପାଇଁ କ'ଣ ନ କରିଛନ୍ତି ସେ ? ପି.ଏଚ୍.ଡ଼ି କରିବା ପାଇଁ ଇଂଦ୍ରନୀଳ ଯେତେବେଳେ ନିଜ ଦେଶ ଛାଡ଼ିବା କଥା ଭାବିଲେ ସେତେବେଳେ କବିତାର ଚିନ୍ତା ବଢ଼ି ଯାଇଥିଲା। ବସା ସଂସାରକୁ ଉଜାଡ଼ି ଦେଇ କିଏ ଏମିତି ଅଜଣା ଅଶୁଣା ଦେଶକୁ ଯାଏ ? ପୁଣି କ'ଣ ନା ପାଠ ପଢ଼ିବାକୁ। ନୂଆ ଦେଶରେ କେହି ଚିହ୍ନା ପରିଚୟ ନାହିଁ, କେହି ଆତ୍ମୀୟ ନାହାନ୍ତି, କ'ଣ କେମିତି ଘର ବସେଇବ କବିତା ? ତା' ପାଠ-ପାଗଳା ସ୍ୱାମୀଠୁ କିଛି ସାହାଯ୍ୟ ଆଶା କରିବା ଯେ ନିରର୍ଥକ। ସେ ନିଜ କଥା ବୁଝିଲେ ବହୁତ ବେଶୀ। ସ୍ୱାମୀକୁ କିଛି ନ କହି କବିତା ଏଠି ସେଠି ଖୋଜ ନେଇଥିଲା। ଏମିତି ଖୋଜ ନେଉ ନେଉ ରଜତ ରାୟଙ୍କ

ଠିକଣା ମିଳି ଯାଇଥିଲା ତାକୁ। ତା' ସାଙ୍ଗ ବିନୀତାର ପିଉସୀ ପୁଅ ଭାଇ। ପିଉସୀ ଚାଲିଯିବା ପରେ ଆଉ ସେମିତି ଘନିଷ୍ଠ ସଂପର୍କ ନାହିଁ। ତଥାପି ବାହାଘର, ନୂଆବର୍ଷରେ ଚିଠିଟିଏ ବା କାର୍ଡ଼ଟିଏ ଆଦାନ ପ୍ରଦାନ ହେବାର ରୀତିଟି ଏ ପର୍ଯ୍ୟନ୍ତ ରହିଛି। ବଡ଼ କଥା ସେ ମଧ ଥାଆନ୍ତି କ୍ୟାଲିଫୋର୍ଣ୍ଣିଆରେ। ବର୍କଲେ ବିଶ୍ୱବିଦ୍ୟାଳୟରୁ ବେଶୀ ଦୂରରେ ନୁହଁ।

ବାସ୍ - ସେଇ କୁଟା ଖିଅକକୁ ଗଳା ମାଳି କରି କବିତା ଓ ଇଂଦ୍ରନୀଳ ପୁଅ ଆକାଶକୁ ଧରି ବର୍କଲେ ପହଞ୍ଚିଯାଇଥିଲେ। ପହଞ୍ଚିବାର ପରଦିନ ହିଁ କବିତା କୁଣ୍ଠିତ ଭାବରେ ରଜତଙ୍କୁ ଫୋନ୍ କରିଥିଲା। ଯଦି ରଜତ ରାୟ ଏତେ ବର୍ଷ ପରେ ଭାରତରେ ରହିଥିବା ତାଙ୍କ ମାମୁଁ ଝିଅ ଭଉଣୀ ବିନୀତାକୁ ନ ଚିହ୍ନନ୍ତି? ତେବେ କ'ଣ କହି ନିଜର ପରିଚୟ ଦେବ କବିତା?

କବିତାର ଆଶଙ୍କା ଅମୂଳକ ଥିଲା। ସେଇ ଗୋଟିଏ ଫୋନ୍ ପାଇବା ପରେ ସାହାଯ୍ୟ କରିବା ପାଇଁ ହାତ ବଢ଼େଇ ଦେଇଥିଲେ ରଜତ। ସେମାନଙ୍କ ପାଇଁ ଆପାର୍ଟମେଣ୍ଟ ଖୋଜିଦେବା, ସେକେଣ୍ଡ ହ୍ୟାଣ୍ଡ ଗାଡ଼ି, ଫରନିଚର୍ କିଣେଇଦେବା, ସାତ ବର୍ଷର ପୁଅର ସ୍କୁଲ ବ୍ୟବସ୍ଥା କରିଦେବା, ଅନ୍ୟ ଭାରତୀୟଙ୍କ ସାଙ୍ଗରେ ଚିହ୍ନା ପରିଚୟ କରେଇ ଦେବା - ସବୁ ସେ କରିଥିଲେ। ନିଜର ବ୍ୟସ୍ତ ସମୟରୁ ସମୟ କାଢ଼ି ସେ କରିଥିଲେ। ଏମିତି ଜଣଙ୍କୁ କ'ଣ ଆଡ଼େଇ ଦେବା ଚଳେ? ଇଂଦ୍ରନୀଳ, କବିତାଙ୍କ ଉପରେ ତାଙ୍କର ଯେ ବଡ଼ ଋଣଟିଏ ଅଛି।

ହେଲେ କି ସାହାଯ୍ୟ କରିପାରିବ କବିତା? ନୂଆ ଦେଶକୁ ଆସି ସଂପୂର୍ଣ୍ଣ ରୂପେ ଘରଣୀଟିଏ ହୋଇଯାଇଛି ସେ। ଚାରି କାନ୍ଥ ଭିତରେ ବଂଦୀ। ଏଠିକାର ଭାଷା, ଚାଲିଚଳଣ ସେ ଏପର୍ଯ୍ୟନ୍ତ ଭଲ ଭାବରେ ଶିଖିପାରିନି, ସେଥିପାଇଁ ଏବେବି ମନରେ କୁଣ୍ଠା। ଏମିତିଆ ଜଣେ ମଣିଷ ରଜତଙ୍କୁ ପୁଣି ସାହାଯ୍ୟ କରିବ?

''କ'ଣ ହେଲା?'' ରଜତ ପଚାରିଲେ।

କବିତା ସମ୍ବିତ ଫେରି ପାଇଲା, ''...କି ପାଟିତୁଣ୍ଡ ଏଠି ଚାଲିଛି। କିଛି ଭଲରେ ଶୁଣି ହେଉନି। କୁହନ୍ତୁ, କ'ଣ କରିବି?''

ରଜତ ଚୁପ ରହିଲେ କିଛି ସମୟ ପାଇଁ। ଯେଉଁ କଥାଟା ଗୋଟିଏ ସରଳ ବାକ୍ୟରେ କିଛି ସମୟ ଆଗରୁ କବିତାକୁ କହିଦେଇଥିଲେ, ସେଇ କଥାଟା

କେମିତି ବିସ୍ତାରିତ କରି କହିବେ, ତାହା ହିଁ ବୋଧହୁଏ ଭାବି ହେଉଥିଲେ।

"ତୁମେ ବୋଧେ ଜାଣନି, ଏଠି ମୋ ବାପା ରହନ୍ତି।"

"ଆପଣଙ୍କର ବାପା ?" କବିତା ଆଶ୍ଚର୍ଯ୍ୟ ହୋଇଗଲା, "ଆମେରିକାରେ ରହନ୍ତି...?"

ଧୀରେ ଧୀରେ ମୁଣ୍ଡ ଟୁଙ୍ଗାରିଲେ ସେ, "ହଁ। ମୁଁ ତ ଆମେରିକାର ନାଗରିକତ୍ୱ ନେଇ ରହିଗଲି। ସେତେବେଳେ ମା' ବାପା ରହୁଥିଲେ ପୁରୀରେ। ମା' ଚାଲିଯିବା ପରେ ବାପାଙ୍କୁ ଦେଖିଥାଆନ୍ତା କିଏ ? ତେଣୁ ମୁଁ ବୁଝେଇ ସୁଝେଇ ମୋ ପାଖକୁ ନେଇ ଆସିଲି। କିନ୍ତୁ ଏଠିକି ଆସିବା ପରେ ଭୀଷଣ ଅସୁସ୍ଥ ହୋଇ ପଡ଼ିଲେ ସେ। ଏଇଟା ତ ଭାରତ ନୁହଁ। ତାଙ୍କ ଖବର ବୁଝିବା ଲୋକ ମିଳିଥାଆନ୍ତେ କେଉଁଠୁ ? ବାଧ୍ୟ ହୋଇ ଏଠୁ ଚାଳିଶ ମାଇଲ ଦୂର ଗୋଟିଏ ସିନିୟର ସିଟିଜେନ୍‌ସ ହୋମ୍‌ରେ ତାଙ୍କୁ ରଖେଇ ଦେଇଛି।"

ସିନିୟର ସିଟିଜେନ୍‌ସ ହୋମ୍ ? ଅର୍ଥାତ ଜରା-ନିବାସ ?

ହଁ - ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି? ରଜତ ଯଦି ଏପର୍ଯ୍ୟନ୍ତ ତାଙ୍କର ପ୍ରଥମ ଭାରତୀୟ ପତ୍ନୀ ଉର୍ମିଳାକୁ ବାହା ହୋଇ ରହି ଥାଆନ୍ତେ ଏବଂ ଘରେ ବାପାଙ୍କୁ ରଖି ତାଙ୍କର ସେବା କରିଥାଆନ୍ତେ, ତେବେ ବୋଧହୁଏ ଆଶ୍ଚର୍ଯ୍ୟ ହେବାଟା ଶୋଭା ପାଇଥାଆନ୍ତା। କିନ୍ତୁ ସେସବୁ ତ କେବେଠାରୁ ଇତିହାସ ହୋଇ ସାରିଲାଣି। ଉର୍ମିଳାକୁ ଛାଡ଼ପତ୍ର ଦେଇ ପାଞ୍ଚବର୍ଷ ତଳେ ଲୁସିଆନ୍‌କୁ ବିବାହ କରିଛନ୍ତି ରଜତ।

ଲୁସିଆନ୍ ଆମେରିକାନ୍ ଝିଅ। ସେ କାହିଁକି ଅଯଥା ଜଂଜାଳ ମୁଣ୍ଡେଇଥାଆନ୍ତା ? ତା'ଛଡ଼ା ସେ ଜଣେ ବ୍ୟସ୍ତ ଓକିଲ। ଏସବୁ ନିହାତି ଘରୁଆ କାମଦାମ ପାଇଁ ତା'ର ସମୟ କାହିଁ? ତେଣୁ ବୁଢ଼ାଙ୍କୁ ଜରାନିବାସରେ ରଖିଦେଲେ ସବୁଆଡୁ ସମସ୍ତେ ନିଶ୍ଚିନ୍ତ। ଏ ଦେଶରେ ଏଇଟା ଏମିତି କିଛି ମାରିହାଣି ପକେଇବା ଭଳି କଥା ନୁହଁ। ନିହାତି ଗତାନୁଗତିକ।

ତଥାପି ଏଠିକାର ଭାରତୀୟମାନେ ଏପର୍ଯ୍ୟନ୍ତ ଏସବୁକୁ ସାବଲୀଳ ଭାବରେ ଗ୍ରହଣ କରି ନେଇ ପାରିନାହାନ୍ତି। ପରଦା ଆଢୁଆଳରେ ଅନ୍ୟ ଘରର ଛିଦ୍ର ନେଇ ଏବେ ବି ବେଶ୍ ରସାଳ ଆଲୋଚନାମାନ ହୁଏ। କିନ୍ତୁ ଜାଣିଶୁଣି କେହି ନିଜ ଘରର ଗୋହି ବାହାରେ ପକାନ୍ତି ନାହିଁ। ସଂଭ୍ରମର ସିନ୍ଦୁକ ଭିତରେ

ବିକଳାଙ୍ଗ କଙ୍କାଳକୁ ଲୁଚେଇ ଛପେଇ ରଖିଦିଅନ୍ତି।

ତା'ହେଲେ ଏସବୁ କଥା କବିତାକୁ କାହିଁକି କହୁଛନ୍ତି ରଜତ? ତାଙ୍କୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲା ସେ।

''ମୁଁ ସବୁ ସପ୍ତାହରେ ଥରେ ଦୁଇଥର ଯାଇ ବାପାଙ୍କୁ ଦେଖି ଆସେ। ନହେଲେ ଭାରି ମନ ଖରାପ କରନ୍ତି ସେ। ଆତଙ୍କିତ ହୋଇପଡ଼ନ୍ତି। ହାଇ ବ୍ଲଡ୍ ପ୍ରେସର୍ ରୋଗୀ।'' ମୁହୂର୍ତ୍ତେ ଚୁପ୍ ରହି ସେ ପୁଣି କହିଲେ, ''ମୁଁ ଦୁଇ ମାସ ପାଇଁ ଟୋକିଓ ଯାଉଛି। ଗୋଟିଏ ପ୍ରୋଜେକ୍ଟରେ। ଏ ଦୁଇ ମାସ କଥା କ'ଣ କେମିତି କରିବି କିଛି ବୁଝିପାରୁନି। ଲୁସିଆନ୍ ଏସବୁ ସେଣ୍ଟିମେଣ୍ଟାଲିଟି ବୁଝେନି। ତା'ଛଡ଼ା ସେ ପରିଷ୍କାର ମନା କରିଦେଲା। ସିନିୟର ସିଟିଜେନ୍‌ସ ହୋମ୍‌କୁ ସେ ଯିବନି। ସେଠିକି ଗଲେ ତା'ର ଡ଼ିପ୍ରେସନ୍ ହୁଏ। ...ତୁମେ ଯଦି ଟିକିଏ ସାହାଯ୍ୟ କରନ୍ତ ...ଇଂଦ୍ରନୀଳ ଥିଲେ ମୁଁ ତୁମକୁ ଆଦୌ କହି ନ ଥାଆନ୍ତି। ହେଲେ...।''

''ମୁଁ? ମୁଁ ପୁଣି ଲୁସିଆନ୍‌କୁ ବୁଝେଇବି?'' କବିତା ବିବ୍ରତ ହୋଇ ପଡ଼ିଲା। ସେ ରଜତଙ୍କ ସ୍ତ୍ରୀଙ୍କୁ ଏମିତିଆ କଥା କହିବ କେମିତି? ଦୁଇ ତିନି ଥର ମାତ୍ର ଯାହା ସାଙ୍ଗରେ ଦେଖା, ତାକୁ ପୁଣି ସେ ଉପଦେଶ ଦେବାକୁ ଯିବ?

''ନା- ଲୁସିଆନ୍‌କୁ କିଛି ବୁଝେଇବାକୁ ହେବନି। ବୁଝେଇ ଲାଭ ବି ନାହିଁ। ...ସେ କଥା ନୁହଁ। ଆକାଶ ସ୍କୁଲରେ ଥିବା ସମୟରେ ତୁମେ ଯଦି ସପ୍ତାହକୁ ଦୁଇ ଥର ଯାଇ ବାପାଙ୍କୁ ଟିକିଏ ଦେଖିଆସନ୍ତ, ଘଣ୍ଟେ ଦୁଇ ଘଣ୍ଟା ତାଙ୍କ ସାଙ୍ଗରେ ଗପସପ କରି ଆସନ୍ତ, ତେବେ ମୋ ପାଇଁ ବହୁତ ବଡ଼ ସାହାଯ୍ୟ ହୁଅନ୍ତା।''

କବିତା ଅବାକ୍ ହୋଇ ରଜତଙ୍କ ମୁହଁକୁ ଚାହିଁଲା। ତା'ର ଶୁଣିବାରେ କିଛି ଭୁଲ ରହିଗଲା ନା ସତରେ ଏମିତି ଉଦ୍ଭଟ ପ୍ରସ୍ତାବଟିଏ ତା' ସାମ୍ନାରେ ରଖିଲେ ସେ?

''ମୁଁ ତ ତାଙ୍କୁ ଚିହ୍ନିନି, ଜାଣିନି। କ'ଣ ଗପିବି? ତା'ଛଡ଼ା ଏତେ ଗୁଡ଼ାଏ ବାଟ ମୁଁ ଯିବି କେମିତି? ମତେ ତ ଗାଡ଼ି ଚଲେଇ ଆସେନି।'' କବିତା କ'ଣ କେମିତି କହି କଥା ଟାଳିବ ବୁଝିପାରୁ ନଥିଲା।

''ଆରେ ଏଗୁଡ଼ା ପୁଣି ପ୍ରବ୍ଲେମ୍ ନା କ'ଣ?'' ହଠାତ୍ ରଜତଙ୍କ ମୁଣ୍ଡ

ଉପର ବୋଝ ହାଲୁକା ହୋଇ ଗଲା ଯେମିତି। କବିତାର ଉତ୍ତର ଶୁଣି ସେ ବୋଧହୁଏ ଧରିନେଲେ ଯେ ସେ ରାଜି ହିଁ ହୋଇଗଲା। ନା- ନା- ତା'ର ତ ବୁଝେଇ ଦେବା ଉଚିତ। ତାଙ୍କୁ ମନା କରିଦେବା ଉଚିତ। ଏଭଳି ଗୋଟିଏ ଦାୟିତ୍ୱ ସେ ନେଇ ପାରିବନି।

କିନ୍ତୁ କିଛି କହି ପାରିଲା ନାହିଁ ସେ। କେମିତି ମନା କରିବ? ଯେଉଁ ଲୋକ ସେମାନଙ୍କ ପାଇଁ ଏତେ କରିଛି, ତା'ର ଗୋଟିଏ ଅନୁରୋଧ ସେ ରଖି ପାରିବ ନାହିଁ? ତଥାପି କାହିଁକି ମାଡ଼ି ମାଡ଼ି ପଡୁଛି। ନିଜ ପୃଥିବୀ ଭିତରେ ସବୁବେଳେ ରହି ରହି କେମିତି ଅନ୍ୟ ରକମ ହୋଇ ଯାଇଛି କବିତା। ଆଉ କାହାର ଏତେ ବଡ଼ ଦାୟିତ୍ୱ ନେବା କଥା ଭାବିଲେ ହିଁ ତା'ର ହାତ ଗୋଡ଼ ଝାଳେଇ ଯାଉଛି।

''ମତେ ଡ୍ରାଇଭିଙ୍ଗ୍ ଜଣା ନାହିଁ।'' ମୂର୍ଖଙ୍କ ଭଳି କବିତା ଆଉ ଥରେ କଥାଟିକୁ ଦୋହରାଇଲା।

''ତୁମକୁ ଡ୍ରାଇଭିଙ୍ଗ କରିବାକୁ କିଏ କହୁଛି? ମୁଁ ଗୋଟିଏ ଟ୍ୟାକ୍ସି କଂପାନୀ ସହିତ କଥା କହିନେବି। ସବୁ ମଙ୍ଗଳବାର ଆଉ ଶୁକ୍ରବାର ଗାଡ଼ିଟିଏ ଆସି ତୁମକୁ ନେଇଯିବ। ଆଉ ଦୁଇ ତିନି ଘଣ୍ଟା ପରେ ଆଣି ଘରେ ଛାଡ଼ି ଦେଇଯିବ। ଠିକ୍ ତ? କାଲି ମୁଁ ତୁମକୁ ବାପାଙ୍କ ପାଖକୁ ନେଇଯିବି। ଚିହ୍ନା କରେଇଦେବି। କିଛି ଅସୁବିଧା ହେବନି ତୁମର।''

ନୀରବ ଭାବରେ ମୁଣ୍ଡ ଟୁଙ୍ଗାରିଲା କବିତା।

ତା'ର ତଥାପି ଆଶାଟିଏ ଥିଲା। ଇଂଦ୍ରନୀଳ ନିଶ୍ଚୟ ଏ ପ୍ରସ୍ତାବରେ ରାଜି ହେବେ ନାହିଁ। ସେ ରଜତଙ୍କୁ ବୁଝାଇ ଅନ୍ୟ କିଛି ବ୍ୟବସ୍ଥା କରାଇବେ।

କିନ୍ତୁ କାହିଁ? ଏମିତି ହେଲା କେଉଁଠି? ଇଂଦ୍ରନୀଳ ଫୋନ୍‌ରେ ସବୁ ଶୁଣିଲେ। ହେଲେ ଶୁଣିବା ପରେ ଯେମିତି ଫଁ କରି ତାତି ଉଠିବେ ବୋଲି କବିତା ଭାବିଥିଲା, ତା' ଆଉ ହେଲାନାହିଁ। ବରଂ ସେ ଯେମିତି ଋଣ ସୁଝିବାର ମାଧ୍ୟମଟିଏ ପାଇଗଲେ।

''ଏଥିରେ ଅସୁବିଧା କ'ଣ ଅଛି? ଗାଡ଼ି ନେଇଯିବ, ଛାଡ଼ି ଦେଇଯିବ। ସବୁବେଳେ ଘର ଭିତରେ ବନ୍ଦ ହୋଇ ରହୁଛ। ବାହାରକୁ ବାହାରିଲେ ମନ ଭଲ ଲାଗିବ ନିଶ୍ଚୟ। ତା'ଛଡ଼ା ବୟସ୍କ ହୁଅନ୍ତୁ ପଛକେ ଓଡ଼ିଆ ଲୋକଟିଏ

ସାଙ୍ଗରେ କଥା କହିଲେ ଦେଖିବ ତୁମକୁ ବହୁତ ଭଲ ଲାଗିବ।''

ବାସ୍ - ଏପଟୁ ଆଶାଟି ଗଲା। କବିତା ଫୋନ୍‌ରେ କ'ଣ ଇଂଦ୍ରନୀଳ ସାଙ୍ଗରେ ଯୁକ୍ତି କରିଥାଆନ୍ତା? ଯେଉଁଠି ଅପରେସନ୍ ଭଳି ବିରାଟ ଚିନ୍ତାରେ ମ୍ରିୟମାଣ ହୋଇ ପଡ଼ିଛନ୍ତି ସେ, ସେଇଠି ସାମାନ୍ୟ ଗୋଟିଏ ବିଷୟ ନେଇ ସେ କେମିତି ତାଙ୍କର ଚିନ୍ତାର ଭାର ବଢ଼େଇ ଦେଇଥାଆନ୍ତା?

ନା- କବିତା ବରଂ ରଜତଙ୍କ ପ୍ରସ୍ତାବ ମାନିନେବ। ଦେଖାଯାଉ କ'ଣ ହେଉଛି। ରଜତଙ୍କ ସାଙ୍ଗରେ ଯିବା ପାଇଁ ସେ ପ୍ରସ୍ତୁତ ହୋଇ ରହିଲା।

ଏ ପୁଣି ଜରା ନିବାସ? ଗେଟ୍ ପାଖରେ ସାଇନ୍ ବୋର୍ଡ଼ ନ ଥିଲେ ଜଣା ବି ପଡ଼ିବ ନାହିଁ। ଠିକ୍ ହୋଟେଲଟିଏ ଯେମିତି। ସାମ୍ନାରେ ବିରାଟ ବଡ଼ ବଗିଚା। ବଗିଚା ମଝିରେ ଛୋଟ କଇଁ ଫୁଲର ପୋଖରୀ। ଏଠି ସେଠି ପଡ଼ିଛି ବେଞ୍ଚ। ଫରକ ଏତିକି, ବଗିଚାରେ ବୁଲୁଥିବା, କଇଁ ଫୁଲକୁ ଦେଖୁଥିବା, ଖୁସିଗପ କରୁଥିବା ମଣିଷମାନଙ୍କର ବୟସ ଅଶୀ ବା ତା'ଠାରୁ ଅଧିକ।

ସେଇଠି ଗୋଟିଏ ବେଞ୍ଚରେ ବସି ପୁଅପାଇଁ ଅପେକ୍ଷା କରିଥିଲେ ରଜତଙ୍କ ବାପା। ଡ଼କ୍ଟର ଗିରୀଶ ରାୟ। ବହୁ ବର୍ଷ ତଳେ ଓଡ଼ିଶାର ଗୋଟିଏ କଲେଜ୍‌ରେ ପ୍ରିନ୍‌ସିପାଲ୍ ଥିଲେ। ଗଣିତ ପ୍ରଫେସର୍ ରୂପେ ସୁନାମ ଥିଲା। ଛାତ୍ର, କଲେଜ, ସେମିନାର ନେଇ ବ୍ୟସ୍ତ ଜୀବନ ଥିଲା ତାଙ୍କର। ଅବସର ନେବା ପରେ ବି ଚୁପ୍ ହୋଇ ବସି ନ ଥିଲେ। ପ୍ରାଇଭେଟ୍ କଲେଜର ଅଧ୍ୟକ୍ଷତା, ଥିଓସୋଫିକାଲ୍ ସୋସାଇଟିର ମିଟିଙ୍ଗ... କାମର ଆଦି ଅନ୍ତ ନ ଥିଲା। ଆଉ ଏବେ ହାତରେ କେବଳ ପ୍ରଚୁର ଅବସର। ଖାଲି ଅପେକ୍ଷା କରି କରି ଦିନ କଟାଇଦେବା କଥା।

''ବାପା, ଦେଖ ତ ମୋ ସାଙ୍ଗରେ କିଏ ଆସିଛି।''

''ନମସ୍କାର ମଉସା।''

ବୁଢ଼ା ଉପରକୁ ମୁହଁ ଟେକି ଚାହିଁଲେ, ''କିଏ ମା' ତମେ? ଲଙ୍କାରେ ହରି ନାମ ଶୁଣାଇଲ। ଏମିତିଆ ମିଠା ସ୍ୱରରେ ଓଡ଼ିଆ କଥା, କାହିଁ କେଉଁକାଳୁ ଏ କାନ ଶୁଣି ନ ଥିଲା।''

''ଏ ଆମ ବିନୀତାର ସାଙ୍ଗ। କିଛି ମାସ ତଳେ ଏଠିକି ଆସିଛି।''

''ବସ ମା' ବସ। କ'ଣ ସବୁ ସେଠିକାର ଖବର ଅନ୍ତର କହିଲ। କେତେ ବର୍ଷ ହୋଇ ଗଲାଣି ଯାଇନି ନିଜ ଦେଶକୁ। ମନଟା ବେଳେ ବେଳେ ଗୁଡ଼େଇ ତୁଡ଼େଇ ହୁଏ। ଚିଠିଟାଏ ବି କେହି ଦିଏନି ମୋ ପାଖକୁ।'' ତାଙ୍କ ସ୍ୱରରୁ ଅଭିମାନ ଝରି ପଡୁଥିଲା।

ବେଞ୍ଚରେ ବସିଲା କବିତା। କଥାରେ କଥାରେ ରଜତ ବାପାଙ୍କୁ ଜଣେଇଲେ ତାଙ୍କର ଜାପାନ ଯିବା ବିଷୟ, କେମିତି କବିତା ଆସି ମଝିରେ ମଝିରେ ବୁଲିଯିବ, ଖବର ବୁଝିନେବ - ଏସବୁ। ଛୁଆଙ୍କ ଭଳି ଖୁସୀ ହୋଇଗଲେ ଗିରୀଶ ରାୟ।

''ହାତରେ ସମୟ ନେଇ ଆସିବ ମା'। ଏ ରଜତ ଭଳି ଆସି ସାଙ୍ଗେ ସାଙ୍ଗେ ଯିବାକୁ ବାହାରିବନି। ଆମେ ବସି ଗପିବା, ବୁଲିବା। ଆଚ୍ଛା, ତୁମ ଘର କେଉଁଠି କହିଲ ନାହିଁ ତ?''

''କଟକରେ। ବାପା ପୋଲିସରେ ଥିଲେ। ମାସେ ତଳେ ରିଟାୟାର କରିଛନ୍ତି...।'' କବିତା କହି ଚାଲିଲା। ତା'ର କହିବାକୁ ଏତେ କଥା ଥିଲା? ସତରେ, କିଏ କାହିଁକି ଶୁଣିବାକୁ ଚାହିଁବ ତା' ଘର କଥା? ଅଥଚ ମଉସାଙ୍କର କି ଧୈର୍ଯ୍ୟ! କି ଆଗ୍ରହ!

ରଜତ ଉଠିଲେ। ''ମୁଁ ଆଜି ତାହେଲେ ଆସୁଛି, ବାପା। ହଡ଼ାରେ କାମ ପକେଇ ଆସିଛି। କବିତା ତ ଆସିବ। ପରେ ଗପିବ ତା' ସାଙ୍ଗରେ।''

''ହଉ ବାବା। ଭଲରେ ଘୁରି ଆ। ଜାପାନରୁ ସୁବିଧା ହେଲେ ଫୋନ୍ କରିବୁ।'' କବିତାକୁ ବୁଲି ଚାହିଁଲେ ସେ। ''ସତରେ ଆସିବଟି ମା'? ମୁଁ କିନ୍ତୁ ତମ ପାଇଁ ଅପେକ୍ଷା କରି ରହିବି।''

''ନିଶ୍ଚୟ ଆସିବି, ମଉସା।''

କବିତା ଅଯଥା ଆଶଙ୍କା କରିଥିଲା। ସପ୍ତାହକୁ ଦୁଇଦିନ ଯାଇ ରଜତଙ୍କ ବାପାଙ୍କ ସହିତ ଦୁଇ ଘଣ୍ଟା ସମୟ କଟାଇବା ଆଦୌ କଷ୍ଟକର ବ୍ୟାପାର ନ ଥିଲା। ବରଂ ତା' ଜୀବନକୁ ଆଉ ଟିକିଏ ମହକିତ କରିଦେବା ଭଳି ଘଟଣାଟିଏ ଥିଲା। ରଜତ ଯେମିତି ସହଜ ଭାବରେ କହିଥିଲେ, ଇନ୍ଦ୍ରନୀଳ

ଯେମିତି ହାଲୁକା ଭାବରେ ନେଇଥିଲେ, ଠିକ୍ ସେଇମିତି ହିଁ ଚାଲିଥିଲା ସବୁ। ପ୍ରତ୍ୟେକ ମଙ୍ଗଳବାର ଓ ଶୁକ୍ରବାର ଟ୍ୟାକ୍ସିଟିଏ ଆସି ତାକୁ ନେଇଯାଉଥିଲା, ଛାଡ଼ି ଦେଇ ଯାଉଥିଲା। ବର୍କଲେରୁ ବେ ବ୍ରିଜ୍ ଦେଇ ସାନଫ୍ରାନ୍‌ସିସକୋ। ପୁଣି ଗୋଲଡେନ୍ ଗେଟ୍ ବ୍ରିଜ୍ ଦେଇ ଆଉ ଟିକିଏ ଉପରକୁ...। ଏପାଖକୁ କବିତା କେବେ ଯେ ଆସିନି ତା' ନୁହଁ। କିନ୍ତୁ ସେମାନଙ୍କ ଧଡ଼ଡ଼ା ଗାଡ଼ିରେ ପେଟ୍ରୋଲ ଜଗି ଜଗି ଆସିବା ଆଉ ବିନା ପଇସାରେ ଲକ୍‌ଜୁରିଅସ୍ ଟ୍ୟାକ୍ସିରେ ବୁଲିବା ଭିତରେ ତଫାତ୍ ନାହିଁ ?

ଏମିତି ମାସଟାଏ ଚାଲିଗଲା। ଆଉ କେବଳ ଗୋଟିଏ ମାସ। ତା'ପରେ ଯାଇଁ ଫେରିବେ ରଜତ। ଇନ୍ଦ୍ରନୀଳଙ୍କର ଏହା ଭିତରେ ଫେରିଆସିବା କଥା। କିନ୍ତୁ ଶ୍ୱଶୁରଙ୍କ ଅପରେସନ୍ ନେଇ କ'ଣ ସବୁ ଝାମେଲା ହେଇଛି। ଫଳରେ ମାଡ୍ରାସ ଯିବାକୁ ହେବ। ଅର୍ଥାତ୍ ଫେରୁ ଫେରୁ ଆହୁରି ଦେଖ୍ କେତେ ଦିନ ଲାଗିଯିବ। ଗିରୀଶ ମଉସାଙ୍କ ପାଖରେ ସମୟ କଟାଉ ନ ଥିଲେ ଏତେବେଳକୁ ବୋଧହୁଏ ଦୁଶ୍ଚିନ୍ତାରେ ପାଗଳ ହୋଇ ସାରନ୍ତାଣି କବିତା।

''ଆଜି କ'ଣ ଏତେ ସିରିୟସ୍ ?'' ମଉସା ଉଦ୍‌ବିଗ୍ନ ହୋଇ ପଚାରିଲେ, ''ଶ୍ୱଶୁରଙ୍କ ଦେହ ଠିକ୍ ଅଛି ତ ?''

''ସେଇମିତି। ମାଡ୍ରାସ ଯିବାକୁ ହେବ। ବୋଧହୁଏ ଆହୁରି ଗୋଟିଏ ଅପରେସନ୍ କରିବାକୁ ହେବ।''

''ଏସବୁ ଅପରେସନ୍ ତ ଆଜିକାଲି ନିହାତି ସାଧାରଣ କଥା। ଡ଼ରିବାର କିଛି ନାହିଁ।'' କବିତାକୁ ସେ ବୁଝେଇ କହିଲେ। ତା'ପରେ କଥା ବୁଲେଇବାକୁ ଚେଷ୍ଟାକରି ସେ ଅନ୍ୟ କଥା ପକାଇଲେ, ''ଆଜି ଭାରି ବଢ଼ିଆ ପାଗ ହୋଇଛି। ଚାଲ କୁଆଡ଼ୁ ବୁଲି ଆସିବା।''

ଘଡ଼ି ଉପରେ ଆଖି ବୁଲେଇ ଆଣିଲା କବିତା। ଏବେବି ଗୁଡ଼ାଏ ସମୟ ହାତରେ ଅଛି। ''କୁଆଡ଼େ ଯିବେ ? ଗୋଲଡ଼େନ୍ ଗେଟ୍ ବ୍ରିଜ୍ ?''

''ନା। ସେଠି ବହୁତ ଥଣ୍ଡା ପବନ। ମୋର ବୁଢ଼ା ହାଡ଼ ସହି ପାରିବନି। ଗୋଲ୍‌ଡ଼େନ୍ ଗେଟ୍ ପାର୍କକୁ ଗଲେ କେମିତି ହୁଅନ୍ତା ? ମୁଁ ଶୁଣିଛି ସେଠି ଜାପାନିଜ୍ ରେଷ୍ଟୋରାଁଟିଏ ଅଛି। ଚାଲ ସେଠି ଯାଇ ଚାହା ପିଇବା।''

ବହୁତ ଦିନ ପରେ ବାହାରକୁ ବାହାରିଥିଲେ ଗିରୀଶ ରାୟ। ପ୍ରତିଟି ମୁହୂର୍ତ୍ତ

ଉପଭୋଗ କରୁଥାଆନ୍ତି ସେ। ଟ୍ୟାକ୍ସିରେ ପାର୍କ ପର୍ଯ୍ୟନ୍ତ ଯିବା, ପାର୍କର ଛୋଟ ଚାହା ଦୋକାନରେ ଚାହା ପିଇବା, ବଗିଚାର ସୁନ୍ଦର ଫୁଲ ଗଛକୁ ଦେଖିବା ସବୁ ଯେମିତି ଅନନ୍ୟ ତାଙ୍କ ପାଇଁ। ତାଙ୍କର ଆନନ୍ଦ ଦେଖି କବିତା ମଧ୍ୟ ଖୁସୀ ହୋଇଥିଲା।

କିମୋନୋ ପିନ୍ଧା ଝିଅଟି ଯେତେବେଳେ ଟେବୁଲରେ ଚାହାର ବିଲ୍‌ଟି ରଖିଦେଇ ଗଲା, ସେତେବେଳେ ଗିରୀଶ ରାୟ ପଇସା ଦେବାକୁ ବସିଥିଲେ। କିନ୍ତୁ କାହିଁକି କେଜାଣି କବିତାକୁ ଭଲ ଲାଗି ନଥିଲା। ଜବରଦସ୍ତି ତାଙ୍କ ହାତରୁ ବିଲ୍ ଟାଣି ନେଇ ସେ କାଉଣ୍ଟର ନିକଟକୁ ଚାଲିଗଲା। ପର୍ସରୁ ପାଞ୍ଚ ଡ଼ଲାରର ନୋଟ୍ କାଢ଼ି ବିଲ୍ ଉପରେ ଆଖି ବୁଲେଇ ଆଣିଲା ସେ। ବାପରେ ବାପ, ଦୁଇ କପ୍ ଚାହାର ମୂଲ୍ୟ ଏଠି ଏତେ ବେଶୀ ? ସେ ସତରେ ଅବାକ୍ ହୋଇଯାଇଥିଲା। ଏତିକି ଡ଼ଲାରରେ ତ ତା'ର ମାସକର ଚାହା ପତ୍ର କିଣା ହୋଇଯିବ ! ହଉ ମ ଦିନକର କଥା ତ। ପର୍ସରୁ ଆଉ କିଛି ନୋଟ୍ କାଢ଼ିବାବେଳେ ସେ ମନକୁ ବୁଝାଇଲା। ସବୁବେଳେ କ'ଣ ଏତେ ଜଗିରଖି ଚଳି ହୁଏ ?

କବିତା ଅନ୍ୟମନସ୍କ ହୋଇପଡ଼ିଲା। ଜଗିରଖି ନ ଚଳିଥିଲେ ଏ ନୂଆ ଦେଶରେ ସେମାନେ ତିଷ୍ଠି ଥାଆନ୍ତେ କେମିତି ? ଯଦି ପ୍ରଥମରୁ ସାବଧାନ ହୋଇ ଚଳି ନଥାଆନ୍ତେ, ତେବେ ଏମିତି ହଠାତ୍ କରି ଇଣ୍ଡ୍ରନୀଳ ଭାରତ ଯାଇ ପାରିଥାନ୍ତେ ? ଶ୍ୱଶୁରଙ୍କର ଦୁଇଟା ଅପରେସନ କରିବା କଥା ଭାବି ପାରିଥାଆନ୍ତେ ?

''କ'ଣ ଏତେ ଭାବୁଛ, ମା' ?''

ଗିରୀଶ ରାୟଙ୍କ ମୁହଁକୁ ଚାହିଁ କବିତା ହସିଲା, ''କିଛି ନାହିଁ, ମଉସା' ଏଇ ସକାଳ କଥା ଭାବୁଥିଲି। ଭାରି ଭଲ ଲାଗିଲା।''

ହଠାତ୍ ଭାବପ୍ରବଣ ହୋଇ ପଡ଼ିଲେ ଗିରୀଶ ରାୟ। 'ତୁମେ'ରୁ 'ତୁ' କୁ ଓହ୍ଲେଇ ଯାଇ କହିଲେ, ''ତୁ ଆର ଜନ୍ମରେ ନିଶ୍ଚୟ ମୋର ଝିଅ ଥିଲୁ। ନହେଲେ କିଏ ଏତେ କରେ ବୁଢ଼ାଟାଏ ପାଇଁ।''

କବିତାର ଅପରାଧୀ ମନ ଆହୁରି ସଂକୁଚିତ ହୋଇ ପଡ଼ିଲା। ଏମିତି ସ୍ନେହର ବନ୍ଧନରେ ବାନ୍ଧି ଦେଉଛନ୍ତି ମଉସା। ସେ ଯଦି ଜାଣିବେ ଯେ ଏଇ ଦାୟିତ୍ୱ ନେବାକୁ ଗୋଟାଏ ସମୟରେ ତା' ମନରେ କେତେ କୁଣ୍ଠା ଥିଲା, କେତେ ଭାବନାରେ ସେ ପଡ଼ିଯାଇଥିଲା, ତାହେଲେ କି ଖରାପ ହେବ !

‘‘ମା’ରେ ଆଉ ଦିନେ ଏମିତି ଯିବା। ଚାହା ପାଇଁ ନୁହଁ, ଲଞ୍ଚ ବା ଡ଼ିନର୍ ପାଇଁ। ମୁଁ ବହୁତ ଦିନ ତଳେ ଗୋଟିଏ ରେଷ୍ଟୋରାଁରେ ଖାଇଥିଲି। କ’ଣ ଜାଣ ତା’ ନାଁ। ହଁ, ଆଲେକ୍‌ଜାଣ୍ଡ୍ରିଆ। ରଜତ ନେଇଯାଇଥିଲା। ସେଇଠିକୁ ଗଲେ ହେବ।’’

ଆଲେକ୍‌ଜାଣ୍ଡ୍ରିଆ !! କବିତା ମୁହଁରେ ଆତଙ୍କିତ ଭାବ ଫୁଟିଉଠିଲା। ଚଟ୍ କରି ମୁହଁ ଉପରୁ ସେଇ ଭାବ ଲିଭେଇ ଦେଇ ତରବର ହୋଇ ସେ କହି ପକେଇଲା, ‘‘ନିଶ୍ଚୟ ମଉସା, ନିଶ୍ଚୟ।’’ ଏକଥା ନ କହି ଆଉ କ’ଣ କହିଥାଆନ୍ତା ସେ ? ବୁଢ଼ାଙ୍କର ମୁହଁ ଉପରେ ସଫା କରି ମନା କରିଦେଇଥାଆନ୍ତା ? କହିଥାଆନ୍ତା କି ମଉସା, ରଜତ ରାୟଙ୍କ ଭଳି ମଣିଷ ଆଲେକ୍‌ଜାଣ୍ଡ୍ରିଆରେ ଖାଇ ପାରନ୍ତି, ଖୁଆଇ ପାରନ୍ତି। କିନ୍ତୁ ଆମ ଭଳି ଲୋକଙ୍କ ପାଇଁ ସେ ଦୁଆର ମନା।

ସେ ଯେ ରେଷ୍ଟୋରାଁଟିର ନାଁ ଶୁଣିନି, ତା’ ନୁହଁ। କିନ୍ତୁ ସେଠିକି ଯିବାର ପ୍ରଶ୍ନ ଇ ଉଠୁନି। କିଏ ଜଣେ ତାକୁ କହିଥିଲା ଯେ ଆଲେକ୍‌ଜାଣ୍ଡ୍ରିଆରେ ଖାଇବା ଖର୍ଚ୍ଚ ସତୁରୀ ଅଶୀ ଡ଼ଲାରରୁ କମ୍ ନୁହଁ। ଅଶୀ ଡ଼ଲାର ? ତା’ ମାନେ ଦୁଇ ଅଢ଼େଇ ହଜାର ଟଙ୍କାରୁ ଅଧିକ ! ଭାରତରେ ଅଧିକାଂଶ ଲୋକଙ୍କର ମାସକର ଦରମା ଯେ ତାହାଠାରୁ କମ୍ ! ବାପ୍‌ରେ !

‘‘ତୋର ଯେବେ ସୁବିଧା ହେବ ଯିବା।’’

କଥା ନ କହି କେବଳ ଟିକିଏ ହସିଦେଲା କବିତା। କିଛି ନିଶ୍ଚିତ ଭାବରେ କହିଲା ନାହିଁ। ଦେଖାଯାଉ ଟାଳି ହୁଏ କି ନାହିଁ।

ଘରକୁ ଫେରିବା ବାଟରେ ମନଭିତରେ କିନ୍ତୁ ଗୋଳେଇ ହେଉଥିଲା ବିଷୟଟି। ବୁଢ଼ା ଲୋକ, ଏତେ ମନ କରିଛନ୍ତି ଯେତେବେଳେ, ନେଇଯିବା ଉଚିତ ନୁହଁ କି ? କିଏ ଜାଣେ କେତେବେଳେ କ’ଣ ହୋଇଯିବ। ତଥାପି ଏତେ ଗୁଡ଼ାଏ ପଇସାର କଥା...

ନିଜ ମନକୁ ଅଯଥା ଭାସିଯିବାକୁ ଦେଲାନାହିଁ କବିତା। ମନ ଉପରେ ନିୟନ୍ତ୍ରଣର ବେଡ଼ି ଲଗାଇ ସେ ଟ୍ୟାକ୍ସିର କାଚ ଝରକା ଦେଇ ବାହାରକୁ ଚାହିଁଲା।

ଆଉ ଜରା ନିବାସକୁ କବିତାକୁ ଯିବାକୁ ହୁଏ ନାହିଁ। ରଜତ ଫେରି

ଆସି ସାରିଲେଣି। ବାପାଙ୍କର ଅପରେସନ୍ ଭଲରେ ଭଲରେ ହୋଇ ସାରିବା ପରେ ଇନ୍ଦ୍ରନୀଳ ମଧ୍ୟ ଏବେ ଆମେରିକାରେ। ପୁଣି ସେଇ ଜୀବନ ଯାତ୍ରାର ଦୌଡ଼। ମଝିରେ ମଝିରେ କୌଣସି ପାର୍ଟି ବା ଉତ୍ସବରେ ରଜତଙ୍କ ସାଙ୍ଗରେ ଦେଖା ହୋଇଗଲେ ସେ କହନ୍ତି, "ଦିନେ ମୋ ସାଙ୍ଗରେ ଚାଲ, କବିତା। ବାପା ତୁମକୁ ବହୁତ ମନେ ପକାଉଛନ୍ତି।"

କବିତା ତରବରରେ କହିପକାଏ, "ହଁ, ଯିବା ଦିନେ। କ'ଣ କରିବି କୁହନ୍ତୁ? ଏଠି ଗୋଟାଏ କୋର୍ସରେ ଜଏନ୍ କରିଛି ଯେ ଆଉ କିଛି କରିବାକୁ ବେଳ ମିଳୁନି।"

ଏମିତି କଥା ଟାଳୁ ଟାଳୁ ଗୁଡ଼ାଏ ଦିନ ଚାଲିଗଲା। ଇନ୍ଦ୍ରନୀଳଙ୍କର ପି.ଏଚ୍.ଡ଼ି. ସରିଗଲା ଆଉ ତାଙ୍କୁ ବଷ୍ଟନରେ ଚାକିରି ମିଳିଗଲା। ଦିନେ ସେମାନେ ଜିନିଷପତ୍ର ବନ୍ଧାବନ୍ଧି କରି ଚାଲିଗଲେ ବଷ୍ଟନ୍। ଯିବା ଆଗରୁ କବିତା ଭାବିଥିଲା ରଜତଙ୍କ ସାଙ୍ଗରେ ଯାଇଁ ଗିରୀଶ ମଉସାଙ୍କୁ ଅନ୍ତତଃ ଟିକିଏ ଦେଖି ଆସିବ। ହେଲେ ବେଳ ହେଲା ନାହିଁ।

ସତରେ କ'ଣ ବେଳ ହେଲା ନାହିଁ? ସେ ଚାହିଁଥିଲେ କ'ଣ ଘଣ୍ଟାଏ ସମୟ କାଢ଼ି ପାରି ନଥାଆନ୍ତା? ଠିକ୍ ପାରିଥାଆନ୍ତା ସେ। କିନ୍ତୁ ନିଜ ଦୋଷୀ ମନ ସେମିତି କରିବାକୁ ଦେଲା ନାହିଁ। ମଉସା ଏତେ ସ୍ନେହ କରୁଥିଲେ। ଝିଅ ବୋଲି କହୁଥିଲେ। ସେଇ ଅଧିକାରରେ ଯଦି ସେ କହିଦେଇଥାନ୍ତେ, "ମା' ଲୋ, ବୁଢ଼ାଟାର ଅନୁରୋଧ ରଖିଲୁନି?" କବିତାର ହୃଦୟ ଉଦ୍‌ବେଳିତ ହୋଇ ଉଠେ। ନା- ସେଇ ଅଭିମାନଭରା ସ୍ୱରର ସାମ୍ନା ସେ କରି ପାରିବନି। ବରଂ ଯାହା ଯେମିତି ଚାଲିଛି ଚାଲୁ।

ବଷ୍ଟନରେ ତିନିବର୍ଷ ରହିବା ପରେ ପୁଣି ବର୍କଲେ ଫେରିଆସିଲେ କବିତା ଓ ଇନ୍ଦ୍ରନୀଳ। ଏଥର ପଢ଼ିବାକୁ ନୁହଁ, ପଢ଼ାଇବାକୁ ଇନ୍ଦ୍ରନୀଳ ଆସିଥିଲେ। ସେଇ ଚିହ୍ନା ସହର। ପରିଚିତ ମଣିଷ। କିନ୍ତୁ ସେତେବେଳକୁ ଆଉ ସେଠି ନ ଥିଲେ ରଜତ। ପୋର୍ଟଲ୍ୟାଣ୍ଡ ଅଫିସକୁ ତାଙ୍କର ବଦଳି ହୋଇ ସାରିଥିଲା। ଅନେକ ସମୟରେ ତାଙ୍କ କଥା ଅନ୍ୟମାନଙ୍କୁ ପଚାରେ କବିତା। କେହି ବେଶୀ

କିଛି କହିପାରନ୍ତି ନାହିଁ। ଲୁସିଆନ୍‌କୁ ବାହା ହେବାପରେ ସେ ତ ଅନେକଟା ଦୂରେଇ ଯାଇଥିଲେ। ପୁଣି ପୋର୍ଟଲ୍ୟାଣ୍ଡ ଯିବା ପରେ ସେ ଯେମିତି ହଠାତ୍ ଗୋଠରୁ ବାହାର ହୋଇଗଲେ।

ଚାହିଁଥିଲେ କବିତା ଅକ୍ଲେଶରେ ତାଙ୍କର ଫୋନ୍ ନମ୍ବର ଆଣି ପାରିଥାଆନ୍ତା। ଏଠିକା ଓଡ଼ିଆ ସମାଜର ପତ୍ରିକାରେ ନିଶ୍ଚୟ ଛପା ହୋଇ ରହିଥିବ ସେଇଟା। ନହେଲେ ସୀମାନାନୀ ତ ଅଛନ୍ତି। ତାଙ୍କ ପାଖରେ ପୁଣି କାହାର ଫୋନ୍ ନମ୍ବର ନାହିଁ? କିନ୍ତୁ ପାରିଲା ନାହିଁ ସେ। ରଜତଙ୍କୁ ଫୋନ୍ କରିବାର ସାହସ ଏକାଠି କରି ପାରିଲାନାହିଁ। ଯଦି ତାଙ୍କର ସ୍ୱରରେ ତାଚ୍ଛଲ୍ୟ ଫୁଟି ଉଠେ? ଯଦି ସେ ଥଟ୍ଟା କଲାଭଳି ହସି ପଚାରନ୍ତି, ''ପୁଣି କ'ଣ ଦରକାର ପଡ଼ିଲା ନା କ'ଣ?''

ନା- ସେ ପାରିବନି।

ମନକୁ ଶକ୍ତ କରି ପୁରୁଣା ଠିକଣା ଖାତା କାଢ଼ିଲା ସେ। ଏଇଥିରେ ଏବେବି ଲେଖା ହୋଇ ରହିଛି ସନ୍ ଫ୍ଲାୱାର୍ ସିନିୟର୍ ସିଟିଜେନ୍‌ସ ହୋମ୍‌ର ଠିକଣା ଓ ଫୋନ୍ ନମ୍ବର। ସିଧା ସଳଖ ଡ଼ାୟାଲ କରିବ ଗିରୀଶ ମଉସାଙ୍କୁ। କ୍ଷମା ମାଗି ନେଇ କହିବ, ''ମଉସା, ଆମର ଲଞ୍ଚ ପ୍ରୋଗ୍ରାମ କଥା କ'ଣ ହେଲା? କେବେ ଯିବା ଆଲେକ୍‌ଜାଣ୍ଡ୍ରିଆକୁ?''

ମୁହଁରେ ହସ ଖେଳାଇ ନମ୍ବର ଡ଼ାଏଲ୍ କଲା କବିତା। ଏବେବି ସତୁରୀ ଅଶୀ ଡ଼ଲାର୍ ତା' ପାଇଁ ଛୋଟ ପରିମାଣ ନୁହଁ। କିନ୍ତୁ ସେ ଏବେ ନିଜେ ଚାକିରି କରି ଭଲ ଦରମା ରୋଜଗାର କରେ। ତେଣୁ ଗୋଟାଏ ସଂଧ୍ୟାରେ ଏତିକି ଖର୍ଚ୍ଚ କରିଦେବାର ସାହସ ତା'ର ଅଛି। ଜଣେ ଏତେ ମନକରିଥିଲା ଯେତେବେଳେ ରଖିବାକୁ ତ ହେବ। କେତେବେଳେ କ'ଣ ହୋଇଯିବ କିଏ କ'ଣ କହିପାରିବ?

ହଠାତ୍ ଛାତି ଉପରେ କୁଢ଼େଇ ହୋଇ ପଡ଼ିଲା ପାହାଡ଼ଟିଏ। ଏତେବର୍ଷ ପରେ କ'ଣ ହୋଇଛି ନ ହୋଇଛି ସେ ତ କିଛି ଜାଣିନି। କିଛି ଖବର ରଖିନି। ଯଦି ଜରା-ନିବାସର କର୍ମକର୍ତ୍ତା କହନ୍ତି ଯେ ଗିରୀଶ ରାୟ ବୋଲି କେହି ଏଠି ନାହାନ୍ତି, ବା ପୁରୁଣା ଫାଇଲ ଦେଖି କହନ୍ତି ଯେ ତାଙ୍କର ମୃତ୍ୟୁ ହୋଇ ଯାଇଛି...

ଆଃ ! ଆଖି ବନ୍ଦକରିଦେଲା କବିତା । ଏଭଳି ସମ୍ଭାବନା କଥା ଆଗରୁ କାହିଁକି କେବେ ଭାବି ନଥିଲା ସେ ? ଭାବି ଥିଲେ ହୁଏତ ସେ ଏମିତି ତାଙ୍କର ଛୋଟ ଅନୁରୋଧକୁ ଟାଳି ଟାଳି ଏତେ ଗୁଡ଼ାଏ ଦିନ କଟେଇ ଦେଇ ନଥାଆନ୍ତା । ନିଜ ଘର ଖର୍ଚ୍ଚରୁ କାଟି, ନିଜ ସୌଖୀନ ଖର୍ଚ୍ଚରୁ କାଟି ମଉସାଙ୍କୁ ନେଇ ଯାଇଥାଆନ୍ତା ତାଙ୍କର ପ୍ରିୟ ଆଲେକ୍‌ଜାଣ୍ଡ୍ରିଆକୁ । କାହିଁକି ସେମିତି କଲା ନାହିଁ ସେ ? ଯଦି ତା' ନିଜ ବାପା କହିଥାଆନ୍ତେ, ତାହେଲେ କବିତା କ'ଣ ଏମିତି ଆଡ଼େଇ ଦେଇଥାଆନ୍ତା ?

ତା'ର ହାତ ଥରି ଉଠୁଥିଲା । କିଛି ନିଷ୍ପତ୍ତି ନେଇ ପାରୁ ନଥିଲା ସେ । ଏତେବଡ଼ ଗୋଟାଏ ଅନ୍ତିମ ସତ୍ୟ ଶୁଣିବାକୁ ତା'ର ମାନସିକ ପ୍ରସ୍ତୁତି ଆଦୌ ନ ଥିଲା ।

ନା ନା ନା । ସେ କିଛି ଜାଣିବାକୁ ଚାହେଁ ନାହିଁ । ତା'ର ମନ ଭିତରେ ଗିରୀଶ ମଉସାଙ୍କର ଯେଉଁ ରୂପ, ଯେଉଁ ସ୍ମୃତି ଅଛି, ସେଇତକ ସେମିତି ଥାଉ । ଅତି ମୂଲ୍ୟବାନ ପଦାର୍ଥଟିଏ ଭଳି ସେ ତା' ହୃଦୟ ଭିତରେ ସେତକ ସାଇତି ରଖିଦେବ । ଯେତେଦିନ ପର୍ଯ୍ୟନ୍ତ ସମ୍ଭବ, ସେତେଦିନ ପର୍ଯ୍ୟନ୍ତ ।

ସେପଟୁ ସୁମଧୁର ଗଳାରେ କିଏ ଜଣେ କହୁଥିଲା, ''ସନ୍ ଫ୍ଲାୱାର୍ ସିନିୟର୍ ସିଟିଜେନ୍‌ସ ହୋମ୍ । ହାଓ ମେ ଆଇ ହେଲ୍‌ପ ୟୁ ?''

''ଆଇ ଆମ୍ ସରି, ରଂ ନମ୍ବର ।'' କବିତା ଫୋନ୍‌ର ରିସିଭରକୁ କ୍ରେଡ଼ଲ୍ ଉପରେ ରଖିଦେଲା । □□

# ମାଟି କଣ୍ଢେଇ

ସମୁଦ୍ରର ବିରାଟ ଲହରୀ ଭଳି କଥାର ଢେଉମାନ ଉଠୁଥିଲା। ସତେ ଯେମିତି ଆକାଶ ଛୁଇଁ ଭାଙ୍ଗି ପଡ଼ିବ ପୃଥିବୀ ଉପରେ। ତା' ଉପରେ। ପ୍ରବଳ ବେଗରେ ମାଡ଼ି ଆସୁଥିଲା ସେସବୁ। କିନ୍ତୁ ପର୍ବତ ପ୍ରମାଣ ଲହରୀ ବେଳାଭୂମିକୁ ଛୁଇଁବା ବେଳକୁ ଯେମିତି ଧୀର ଶାନ୍ତ ହୋଇଯାଆନ୍ତି, ସେମିତି କଥାର ଢେଉମାନ ତାକୁ ସ୍ପର୍ଶ କରିବା ବେଳକୁ ସେଗୁଡ଼ିକର ପ୍ରକୋପ କମି ଯାଉଥିଲା। ଆଉଁଶି ଦେଇ ଚାଲି ଯାଉଥିଲେ କେବଳ। ତଥାପି ସମୁଦ୍ର କୂଳରେ ବସିଥିବା ଲୋକଟି ଭଳି ମୈତ୍ରେୟୀର ପାଦ ଧୋଇ ହୋଇଯାଉଥିଲା। ହାବୁକା ହାବୁକା ଆଲୋଚନା ସମାଲୋଚନାରେ ବତୁରି ଯାଉଥିଲା ତା' ମନ। ଆଃ- କି ଭୀଷଣ ଅସ୍ୱସ୍ତି! ଅଥଚ କିଛି କରିବାର ଶକ୍ତି ତା'ର ନାହିଁ। କିଛି କହିବାର ଅଧିକାର ବି ନାହିଁ। ଖାଲି ଚୁପ୍‌ଚାପ୍ ଶୁଣିବା ଛଡ଼ା।

ସାମାନ୍ୟ ଆଖି ବୁଲେଇ ଚାରିଆଡ଼କୁ ଚାହିଁଲା ମୈତ୍ରେୟୀ। ଛୋଟ କୋଠରୀ ଭିତରେ ତାକୁ ପ୍ରାୟ ଘେରି ଯେଉଁମାନେ ବସିଛନ୍ତି ସେମାନେ ତା'ର ଅତି ନିଜର। ମାଉସୀ, ମାଇଁ, ଖୁଡ଼ୀ, ପିଉସୀ, ଅପା ଆଉ ଭାଉଜମାନେ। କ'ଣ ଦରକାର ଏଠି ଭିଡ଼ ଜମେଇବା? କ'ଣ ଦରକାର ଏମିତି ନିଜ ନିଜର ଘରଦ୍ୱାର ଛାଡ଼ି ଏଠିକୁ ଆସି ମୁହଁ ଶୁଖେଇ ଶୋକ ପାଳିବା? ଏଠି କିଏ ମରି ଯାଇଛି ନା କ'ଣ?

ମୈତ୍ରେୟୀକୁ ବଡ଼ ବିରକ୍ତ ଲାଗୁଥିଲା। ହେଲେ କହିବ କେମିତି ସେକଥା? ସେମାନେ ଯେ ତା' ଦୁଃଖରେ ସମଦୁଃଖୀ ହେବାପାଇଁ ଆସିଛନ୍ତି।

ଏମାନଙ୍କ ଭିତରେ ପୁରୋଧା ହୋଇଛନ୍ତି ରେବା ଭାଉଜ। ତା' ମାଉସୀ ପୁଅ ଭାଇ ଛିଟୁ ଭାଇଙ୍କର ସ୍ତ୍ରୀ। ଏମିତିରେ ସବୁବେଳେ କଥା କହିବାରେ ସେ ଧୁରଂଧର। ପୁଣି ଆଜି ଯେ ନିଜ ମୁହଁ ଖୋଲିବାର ପ୍ରକୃତ ସୁଯୋଗଟିଏ ଜୁଟିଛି! ବଡ଼ ଅପା ପାଖରୁ ଉଠିଯାଇ ସେ ଦୂର ଗାଁରୁ ଆସି ପହଞ୍ଚିଥିବା ମାଈଁଶାଶୂଙ୍କ ପାଖରେ ବସିଗଲେ। ମୈତ୍ରେୟୀର ସବୁଠାରୁ ସାନ ମାଈଁ। ସାନ ମାମୁଁଙ୍କ ବିରାଟ ବ୍ୟକ୍ତିତ୍ୱ ତଳେ ସବୁବେଳେ ପେଷି ହୋଇ ରହିଥିବା ମଣିଷଟି। ଅକସ୍ମାତ୍ ଏମିତି ଗୋଟିଏ ଖବର ପାଇ ଧାଇଁ ଆସିଛନ୍ତି। ସତେ ଯେମିତି ଘଟଣାଟି ମୈତ୍ରେୟୀ ଜୀବନରେ ନୁହଁ, ତାଙ୍କ ଜୀବନରେ ଘଟିଯାଇଛି। ସେ ସାନ ମାଈଁଙ୍କ ମୁହଁକୁ ଚାହିଁଲା। ମୁହଁଟା କେମିତି ବିବର୍ଣ୍ଣ ଲାଗୁଛି। ସରୁ ମୁହଁର ହନୁହାଡ଼ ଦିଇଟା ଆଉ ଟିକିଏ ଉଚ୍ଚ ହୋଇଯାଇଛି ଯେମିତି। ସେ ଏତେ ଡ଼ରନ୍ତି କାହିଁକି?

''ଏବେ କ'ଣ ହେବ, ରେବା?''

ରେବା ଭାଉଜ ମୁଣ୍ଡ ଉପରର ଓଢ଼ଣା ସଜାଡ଼ି ନେଇ ବିଷୋଦ୍‌ଗାର କରିବା ପାଇଁ ପ୍ରସ୍ତୁତ ହୋଇ ବସିଲେ। ତା'ପରେ ଶାଶୁଘର ମଣିଷମାନଙ୍କ ସାମ୍ନାରେ ଯେତେଟା ତିକ୍ତତା ପ୍ରକାଶ କରି ହୁଏ, ସେତେକ ନିଜର ମୋଟା ସ୍ୱରରେ ଗୋଳେଇ ନେଇ କହିଲେ, ''କ'ଣ ଆଉ ହେବ? ଆପଣା ହସ୍ତେ ଜିହ୍ୱା ଛେଦନ କଲେ ଯାହା ହୁଏ। ...ଆମେ ତ ହେଲୁ ପର। ଏବେ ନିଜ ଲୋକମାନେ ବୁଝେଇବା କଥା।''

''ଏଠି କେହି କିଛି କହୁ ନାହାନ୍ତି?''

''ଯିଏ କହିଲେ କଥା ରହିବ, ସେଇ ମଉସା ତ ଚୁପ ହୋଇ ରହିଛନ୍ତି, ଆଉ ଅନ୍ୟମାନଙ୍କ କଥା କାହିଁକି ପଡ଼ିଛି? ତେବେ କିଛି ଗୋଟାଏ କରିବାକୁ ହେବ। ଏଇଟା ପିଲାଖେଳ ନା କ'ଣ? ଅଂଧ ଭଳି ପାଶ୍ଚାତ୍ୟ ସଭ୍ୟତାକୁ ଅନୁକରଣ କରିବା ଆଜିକାଲିକାର ଶିକ୍ଷିତ ଯୁବକ ଯୁବତୀଙ୍କର ଗୋଟିଏ ନିଶା ହୋଇ ଗଲାଣି। ମୁଁ ବାବା ବୁଝେନି। କ'ଣ ମିଳେ ସେଥିରୁ? ଆମ ଭାରତୀୟ ସଂସ୍କୃତି ସାଙ୍ଗରେ କ'ଣ ସେସବୁର ତୁଳନା ହୁଏ? ନିଜ ଦେଶର ଐତିହ୍ୟକୁ ଭୁଲି ଏମାନେ କାହିଁକି ଗୋଡ଼ାନ୍ତି ସେଇ ଫମ୍ପା ସଭ୍ୟତା ପଛରେ! ଆମ ସମାଜ ତିଆରି କରିଥିବା ମୂଲ୍ୟବୋଧକୁ ଏମାନେ ଏତେ ସହଜରେ ପରିତ୍ୟାଗ କରନ୍ତି

କାହିଁକି ?''

ନିହାତି ଅସମୟ ନ ହୋଇଥିଲେ ଜୋରରେ ହା ହା କରି ହସିଥାଆନ୍ତା ମୈତ୍ରେୟୀ। ସୁବିଧା ପାଇଲେ ରେବା ଭାଉଜ ଭାରତୀୟ ସଂସ୍କୃତି, ଭାରତୀୟ ଐତିହ୍ୟର ଚର୍ଚ୍ଚା କରନ୍ତି। ନା - ସେ ଇତିହାସର ଛାତ୍ରୀ ନୁହନ୍ତି ବା କେଉଁଠି ସମାଜ ବିଜ୍ଞାନ ପଢ଼ାନ୍ତି ନାହିଁ ସେ। ଏସବୁ କେବଳ ନିଜ ଆସ୍ଥାନ ସୁଦୃଢ଼ କରିବା ପାଇଁ। ଶାଶୁଘରେ ତାଙ୍କର ଯେଉଁ ଟଳମଳ ଅବସ୍ଥା, ସେ କଥା ଗାଁରେ କିଏ ନ ଜାଣେ ? ମୈତ୍ରେୟୀ ଅବଶ୍ୟ କାରଣ ଖୋଜି କେବେ ଯାଇନାହିଁ। ଏ ମାମଲାରେ ତା' ମାଉସୀ ଘର ଯେମିତି ମୁହଁରେ କଞ୍ଚିତାଲା ଦେଇ ବସିଛନ୍ତି, ତାଙ୍କଠୁଁ କିଛି ଭିତିରି ଖବର ଆଦାୟ କରିବା ଅସମ୍ଭବ। ଆଉ ରେବା ଭାଉଜ ବା ଏ ବିଷୟରେ କିଛି କହନ୍ତେ କେମିତି ? ତେବେ ଗାଁ ଲୋକେ ବହୁ ରକମ କଥା କହନ୍ତି। କିଏ କହେ ଯେ ସାନ ଝିଅକୁ ଦେଖାଇ ବଡ଼ ଝିଅ ସାଙ୍ଗରେ ବାହାଘର କରି ଦେଇଥିଲେ ରେବା ଭାଉଜଙ୍କ ବାପା। ନହେଲେ ପାଞ୍ଚଜଣ ଭଲରେ ଦେଖି ଆସିଥିବା ଗୋରୀ ପାତେଳୀ ଝିଅଟି ଛଅ ମାସରେ କେମିତି ଏତେ କଳା ଆଉ ମୋଟା ହୋଇଯିବ ? ଭାଉଜଙ୍କ ବାପା କହିଥିଲେ ଅସୁସ୍ଥତା। ଅନାଡ଼ି ଡ଼ାକ୍ତରର ଔଷଧ ଖାଇ ଏଇ ଅବସ୍ଥା। ସତ କଥା ଜାଣେ କିଏ ? କିନ୍ତୁ ଶୁଣାଯାଉଥିଲା ଯେ ବୋହୂକୁ ବାପଘର ପଠେଇଦେବା ଉପରେ ଥିଲେ ଜିତୁ ଭାଇ ଆଉ ତାଙ୍କ ମା' ବାପା। ରେବା ଭାଉଜଙ୍କ ଓକିଲ ଭାଇ କୋର୍ଟ କଚେରି ପର୍ଯ୍ୟନ୍ତ କଥା ଟାଣିବ ବୋଲି ଧମକ ଚମକ ଦେବାରୁ ଲୋକଲଜ୍ଜା ଭୟରେ କଥା ସେଇଠି ଅଟକି ଗଲା। ଏବେ ଦୁଇଟା ପିଲାର ମା' ହେବା ପରେ ମଧ ନିଶ୍ଚିନ୍ତ ହୋଇ ନାହାନ୍ତି ଭାଉଜ ! ସେଥିପାଇଁ ସୁବିଧା ପାଇଲେ ଅନ୍ୟର ଭୁଲକୁ ବଡ଼ କରି ଦେଖାଇ ଦିଅନ୍ତି ସେ। ଅନ୍ୟ କିଏ ଛୋଟ ହେଲେ ସିନା ତାଙ୍କର ମହାନତାଟା ଉଦ୍‌ଭାସିତ ହୋଇପାରିବ !

ଆଜି କଥା ତ ଭିନ୍ନ। ଆଜି ରେବା ଭାଉଜ ଅତି ନିକଟ ଆତ୍ମୀୟ ଭିତରେ ଆଙ୍ଗୁଠି ଦେଖାଇବାର ଗୋଟାଏ ବଡ଼ ସୁଯୋଗ ପାଇଛନ୍ତି, ସେଇଟାକୁ ହାତଛଡ଼ା କରିଦେବାଟା କ'ଣ ବୁଦ୍ଧିମାନର କାମ ହୋଇଥାଆନ୍ତା ?

ଗୁଡ଼ାଏ ଭାଷଣ ଦେଇ ରେବା ଭାଉଜ କ୍ଳାନ୍ତ ହୋଇ ପଡ଼ିଥିଲେ। କାନ୍ଥକୁ ଆଉଜି ଯାଇ ଜୋରରେ ନିଶ୍ୱାସ ନେଲେ ସେ। ତାଙ୍କ ପାଖକୁ ଆଉ ଟିକିଏ

ଘୁଞ୍ଚି ବସି ସାନ ମାଈଁ ଫିସ୍ ଫିସ୍ କରି କହିଲେ, ''କ'ଣ କେମିତି ହେଲା ମତେ କହିଲୁଟି, ରେବା। ଏମିତି ହଠାତ୍ କରି...''

''କହିବାର କ'ଣ ଅଛି, ମାଈଁ? ତୁମେ ତ ସବୁ ଜାଣ। କେତେ ଦେଖା ଚାହାଁ କରି, ଭଲ ମନ୍ଦ ବୁଝି ବାହାଘର ହେଲା। ଯେମିତି ସୁନ୍ଦର ଚେହେରା ସେମିତି ଭଲ ଚାକିରି। ବୁନିଆଦି ପରିବାର। ଆଉ କ'ଣ ଦରକାର? କିନ୍ତୁ ଏତିକିରେ ମିତୁଙ୍କର ଯଥେଷ୍ଟ ହେଲା ନାହିଁ। ସବୁ ଛାଡ଼ିଛୁଡ଼ି ଚାଲି ଆସିଛନ୍ତି। କ'ଣ ନା, ଆଉ ସେଠିକି ଯିବେ ନାହିଁ; ଆଉ ସ୍ୱାମୀ ସାଙ୍ଗରେ ଘର କରିବେ ନାହିଁ!''

ମାଈଁ ଚଟ୍ କରି ମୈତ୍ରେୟୀ ଉପରେ ଆଖି ବୁଲାଇ ଆଣି ମୁହଁ ଘୂରାଇ ଚାହିଁଲେ ରେବା ଭାଉଜ ଆଡ଼େ। ''କ'ଣ କହୁଛୁ ତୁ? ଆମ ମିତୁ ତ ସେମିତି ନୁହଁ। ନିଶ୍ଚୟ କିଛି କାରଣ ଥିବ।''

ମାଈଁ ତା' ପଟିଆ ହୋଇ କହୁଛନ୍ତି! ଯାହେଉ, ଏ ଅସ୍ୱସ୍ତିକର ପରିବେଶ ମଧ୍ୟରେ କିଏ ତ ଜଣେ ତା' ପାଇଁ ଓକିଲାତି କଲା! ମୈତ୍ରେୟୀର ସରୁ ଓଠରେ ସାମାନ୍ୟ ହସ ଖେଳିଗଲା।

ଗଳା ଝାଡ଼ି ନେଲେ ରେବା ଭାଉଜ। ''ପିଲାଟିର କୁଆଡ଼େ ଆଉ କାହା ସାଙ୍ଗରେ ସମ୍ପର୍କ ଅଛି। ସେଇ କଥା ଜାଣିବା ପରେ ମିତୁ ରାଗି କରି ବାଇ। ଆରେ ବାବା, ସେ ତ ଘରୁ ତମକୁ ତଡ଼ି ଦେଉ ନାହାନ୍ତି କି ହାତ ଉଠାଉ ନାହାନ୍ତି। ତେଣିକି ବାହାରେ କ'ଣ କଲେ ନ କଲେ ସେଥିନେଇ ତୁମର ଏତେ ଚିନ୍ତା କାହିଁକି?''

''ଏଇଟା କିନ୍ତୁ କିଛି ଭଲ କଥା ନୁହଁ, ରେବା। କେମିତି ସହିବ ଆମ ମିତୁ? ପାଠଶାଠ ପଢ଼ା ସୁନ୍ଦରୀ ଶିକ୍ଷିତା ଝିଅ। ସଉତୁଣୀ ନେଇ ଘର କରିବ?... ହେଲେ ସେ କ'ଣ ଏତେଦିନ କିଛି ଜାଣି ନ ଥିଲା? ବାହାଘର ପ୍ରଥମ ଦିନଠୁଁ ତ ଜାଣିବା କଥା।''

ବେଖାତିରିଆ କରି ରେବା ଭାଉଜ କହିଲେ, ''ବୋଧହୁଏ ପ୍ରଥମରୁ କିଛି କହି ନଥିବେ ବିବେକ। ଏବେ କଥାଟା କହିବାରୁ ଆମ ମହାରାଣୀ ଏମିତି ଗୋଟାଏ କାଣ୍ଡ କରିଛନ୍ତି। ମୋ ମତରେ ତ ବୁଝେଇ ସୁଝେଇ ମିତୁଙ୍କୁ ବିବେକଙ୍କ ପାଖକୁ ପଠେଇ ଦେବା କଥା। ଏ ଆଣ୍ଠ କେତେ ଦିନ ଧରି ରଖି ପାରିବେ

ସେ? ଝିଅ ପିଲା। ଭାଙ୍ଗି ଚୁରି ଯିବାକୁ କ'ଣ ସମୟ ଲାଗିବ? ସେତେବେଳେ କରିବେ କ'ଣ?''

'ବାଃ ଭାଉଜ ବାଃ!' ମୈତ୍ରେୟୀ ମନେ ମନେ କହିଲା। 'କେଡ଼େ ସୁନ୍ଦର ମୋ ଜୀବନ ନେଇ ମତାମତ ଦେଇଦେଲ!'

ଭାଉଜଙ୍କ କଥା ମାଇଁ ଶୁଣି ମଧ ଶୁଣି ପାରୁ ନ ଥିଲେ। କ'ଣ ଭାବି ହେଉଥିଲେ। ''ଆଲୋ ରେବା, ଛଅଟା ମାସ ତା' ପାଖରେ ମିତୁ ରହିଲା। ସେ ତ ଛୁଇଁ ଥିବ ଆମ ମିତୁକୁ।''

''କ'ଣ ଯେ କହୁଛନ୍ତି ମାଇଁ! ବାହା ହେବା ସ୍ତ୍ରୀକୁ ଛୁଅନ୍ତା ନାହିଁ ଆଉ। ଯେତେ ଯୁଆଡ଼େ ମନ ପଡ଼ିଥାଉ ପଛକେ, ହାତ ପାଖରେ ନୂଆ ଜଣଙ୍କୁ ପାଇଲେ ସମ୍ଭାଳି ପାରିବ! ପୁରୁଷ ପିଲା ପରା।'' ରେବା ଭାଉଜ ଆଖି ଟିପି ଟିପି ହସିଲେ।

ଗାଲରେ ହାତ ଦେଇ ବସିଗଲେ ମାଇଁ, ''କ'ଣ କେମିତି ହେବ ଏବେ? ଝିଅଟା ତ ଛୁଆଁ ହୋଇଗଲା।'' କିଛି କ୍ଷଣ ଧରି ଭାବିହେଲେ ସେ, ''ନା - ତୁ ଠିକ୍ କହୁଛୁ। ତା'ର ଜୋଇଁ ପାଖକୁ ଫେରିଯିବା ଉଚିତ। ଥରେ ଛୁଆଁ ହେବା ପରେ ଆଉ କ'ଣ ରହିଲା ତା' ଜୀବନରେ?''

ଛୁଆଁ! ଜବରଦସ୍ତି ବାହା ଦେଇ ଦେବା ପରେ ଏବେ ଛୁଆଁ ଅଛୁଆଁ ହୋଇ ଯିବା କଥା ପଡ଼ିଛି! ଯେତେବେଳେ ବାହାଘର ହୋଇ ନ ଥିଲା, ସେତେବେଳେ ତ କାହାଁ କେହି ଏ କଥା ଭାବୁ ନ ଥିଲେ! ଏଭଳି କିଛି ଯେ ଘଟିପାରେ ସେ କଥା ମନକୁ ଆଣୁ ନ ଥିଲେ! ଏବେବି ମନେ ଅଛି ତା'ର, ବି.ଏ ପାସ୍ କରିବା ପରେ ସେ ଯେତେବେଳେ ବି.ଏଡ୍. କରିବ ବୋଲି କହିଥିଲା, ସେତେବେଳେ ଗାଁଟା ଯାକ ଲୋକ ନାକ ଟେକି ଥିଲେ। ''ହଇଲୋ, ତୁ କାହା ନାତୁଣୀ, କାହା ଅଣନାତୁଣୀ ଭୁଲି ଯାଉଛୁ କି? ଏଇ ଘରର ଝିଅ ପୁଣି ଚାକିରି କରିବ?''

ତା' ବାପା ମା'ଙ୍କ ପଛରେ ଲାଗିଯାଇଥିଲେ ସମସ୍ତେ। ''ତମେ କ'ଣ ଝିଅଟାକୁ ଘରେ ରଖି ବୁଢ଼ୀ କରିବ କି? ଭଲ ଘର ଦେଖି ଉଠେଇ ଦେଉନ କାହିଁକି?'' ମୈତ୍ରେୟୀ ଅବାକ ହୋଇ ଯାଇଥିଲା। ଏଠି ତା' ଜୀବନ କଥା ପଡ଼ିଛି ନା ଆଉ କାହା କଥା? ଅନ୍ୟ ସମସ୍ତେ ତା' ଜୀବନର ସବୁ ଗୁରୁତ୍ୱପୂର୍ଣ୍ଣ

ନିଷ୍ପତ୍ତିମାନ ବିନା ଦ୍ୱିଧାରେ ଦରି ଦେଉଛନ୍ତି କେମିତି ?

ଦିନେ ଭାବିବା ଭଳି ହୋଇ ସେ ବଡ଼ ଭାଉଜଙ୍କୁ କହିଥିଲା, "ଆଚ୍ଛା ଭାଉଜ, ନିଜ ଗୋଡ଼ରେ ନିଜେ ଠିଆ ହେବାଟା କ'ଣ ପାପ ? କିଛି ନ ହେଲେ ଭବିଷ୍ୟତ ପାଇଁ ଆଧାରଟିଏ ତ ରହିବ। ଏଇ କଥାଟା କେହି ବୁଝୁ ନାହାନ୍ତି କାହିଁକି ?"

ତା' ମୁହଁକୁ କିଛି ସମୟ ଆବାକାବା ହୋଇ ଚାହିଁବା ପରେ ବଡ଼ ଭାଉଜ ଯାଇ ଏ କଥା କହିଦେଲେ ଭାଇ ଆଉ ମା'କୁ। ମା' ନିଶ୍ଚୟ କହିଥିବ ବାପାଙ୍କୁ। କିନ୍ତୁ ବାପାଙ୍କର କି ପ୍ରତିକ୍ରିୟା ହେଲା ସେଇଟା ଘର ଭିତରେ କେହି ଜାଣିଲେ ନାହିଁ। ହୁଏତ ଅନ୍ୟମନସ୍କ ଭାବରେ 'ହୁଁ' କହିଦେଇ ସେ ପୁଣି ହଜି ଯାଇଥିବେ ତାଙ୍କ ବହି ଭିତରେ। ତାଙ୍କଠୁଁ ଗୋଟିଏ ନିଶ୍ଚିତ ନିଷ୍ପତ୍ତି ଆଶା କରିବା ବୃଥା। ଯେତେ ଦିନ ଜେଜେ ବଂଚି ଥିଲେ ତାଙ୍କ କଥା ଅନୁସାରେ ଘର ଚାଲୁଥିଲା, ସମସ୍ତଙ୍କର ଜୀବନ ପରିଚାଳିତ ହେଉଥିଲା। ସେଇ ସମସ୍ତଙ୍କ ଭିତରେ ବାପା ବି ଅନ୍ତର୍ଭୁକ୍ତ ଥିଲେ। ଜେଜେଙ୍କ ମୃତ୍ୟୁ ପରେ ହୁଏତ ସେ ସେଇ ବଂଦ କୋଠରୀ ଭିତରୁ ମୁକୁଳି ପାରିଥାଆନ୍ତେ, ଅନ୍ୟମାନଙ୍କର ଜୀବନ ପରିଚାଳନା କରିବାର ଦାୟିତ୍ୱ ନେଇ ପାରିଥାଆନ୍ତେ। କିନ୍ତୁ ତାହାର ଆଉ ଆବଶ୍ୟକତା ପଡ଼ିଲା ନାହିଁ। ସେତେବେଳେ ଭାଇ ଯେ ପାରିବାର ହୋଇ ଯାଇଥିଲା। ସେ ହିଁ ନିଜ ଆଡ଼କୁ ଆଡ଼େଇ ନେଲା ଦାୟିତ୍ୱଟି। ତେଣୁ ବାପା ରହିଗଲେ ସେଇ ଆଗ ଭଳି। ସବୁ ଭିତରେ ରହି ମଧ୍ୟ କୌଣସି ଭିତରେ ସେ ନଥିଲେ। ଝିଅର ଚିନ୍ତାଧାରାରେ ଆଧୁନିକତା ଝଲମଲ କରିବା ବିଷୟ ଜାଣି ବି ସେ କିଛି କହି ନଥିଲେ। ତାଙ୍କଠାରୁ କିଛି ଶୁଣିବାକୁ ମଧ୍ୟ କେହି ଆଶା କରି ନ ଥିଲା।

ତା'ପରେ ଯାହା ଯେମିତି ଘଟିଲା, ସେସବୁ ମନେ ପଡ଼ିଲେ ମୈତ୍ରେୟୀର ସିନେମା ଦେଖିବା ଭଳି ମନେ ହୁଏ। ମା', ଭାଇ ଭାବିନେଲେ ଯେ କଲେଜ ଯାଇ, ହଷ୍ଟେଲରେ ରହି ସେ ବେଶୀ ଆଗଚଲା ହୋଇ ପଡ଼ିଛି। ଏବେଠୁ କୌଣସି ବ୍ୟବସ୍ଥା ନ କଲେ ଦିନେ ନାକ କାନ କାଟି ରଖି ଦେବ ସେ। ତା' ବାହାଘର ପାଇଁ ଜୋରସୋର୍ ବରଖୋଜା ଚାଲିଲା। ଶେଷରେ ବସନ୍ତ ପିଉସା ଆଣିଥିବା ପ୍ରସ୍ତାବରେ ସମସ୍ତେ ରାଜି ହେଲେ। ବିବେକଙ୍କ ସାଙ୍ଗରେ ତା' ବାହାଘର ସ୍ଥିର ହୋଇଗଲା।

ଅଯଥାରେ ଆଉ ଯୁକ୍ତିତର୍କ କରି ନ ଥିଲା ମୈତ୍ରେୟୀ। ଯୁକ୍ତି କରିବା ଭଳି ସାହସ ବା ଥିଲା କୋଉଠି ତା' ଭିତରେ? ପିଚୁଲାଟିଏ ଭଳି ଏତେଦିନ ବଢ଼ି ଆସିବା ପରେ ହଠାତ୍ କେମିତି ମୁଣ୍ଡ ଟେକି ବିଦ୍ରୋହ କରି ଥାଆନ୍ତା ସେ? ପ୍ରତି ପଦକ୍ଷେପରେ ଯେ ଝୁଣ୍ଟି ପଡ଼ିବାର ଭୟ!

ସେ ଚୁପଚାପ କନ୍ୟାବେଶ ହୋଇ ବେଦୀରେ ବସି ଯାଇଥିଲା। ତଥାପି ମନ ତଳେ ଆଶାଟିଏ ଥିଲା ତା'ର। ବାପଘର ଭଳି ଶାଶୁଘର ସିନା ଗାଁଟିଏ। କିନ୍ତୁ ସେ ତ ଯାଇ ରହିବ ବମ୍ବେରେ। ବିବେକଙ୍କ ଚାକିରି ଜାଗାରେ। ନିଶ୍ଚୟ ତାଙ୍କୁ ବୁଝେଇ ସୁଝେଇ ସେ ଅଧିକ କିଛି ପଢ଼ିବ ବା କୌଣସି କୋର୍ସ କରିବ।

ହେଲେ ତା' ମଧ୍ୟ ହେଲା ନାହିଁ। ପରିବାର ବା ଗାଁ ଲୋକଙ୍କର ହାତରେ ସିନା ଆଉ ତା' ଜୀବନ ନେଇ ନିଷ୍ପତ୍ତି ନେବାର ଅଧିକାର ରହିଲା ନାହିଁ, କିନ୍ତୁ ସେଇ ଅଧିକାରଟା ଯେ ହାତଗଣ୍ଠି ପରଠାରୁ ହସ୍ତାନ୍ତର ହୋଇ ସାରିଥିଲା ବିବେକଙ୍କ ପାଖକୁ। ସେ ପରିଷ୍କାର ଶୁଣେଇ ଦେଲେ ସେଇ ପ୍ରଥମ ଦିନ, "ମୁଁ ବେଶୀ ଫରୱାର୍ଡ଼ ଝିଅ ପସନ୍ଦ କରେ ନାହିଁ। ବାହାସାହା ହେଲା। ଏଥର ଘର ସଂସାର କର।"

ମୈତ୍ରେୟୀ ନିଜକୁ ବୁଝାଇ ଥିଲା। ତା'ର ତ ଖୁସୀ ହେବା କଥା। ବିବେକ ତାକୁ ଅତି ନିଜର କରି ଭାବୁଛନ୍ତି ବୋଲି ସିନା ଏମିତି କଥାଟିଏ କହିଲେ। ସେ ଘରକରଣାରେ ମନ ଦେଇଥିଲା।

ତା'ର କୌଣସି ଅସୁବିଧା ନ ଥିଲା, କେବଳ ଗୋଟିଏ ବିଷୟ ଛଡ଼ା। କାହାକୁ ନ କହି ପାରିବା ଭଳି ଘଟଣାଟି। ନୂଆ ନୂଆ ବାହାଘରର ଦିନ ବିଷୟରେ। ବାହାଘରର ସେଇ ପ୍ରଥମ କେଇ ମାସ କମ୍ ଅତ୍ୟାଚାର କରିଛନ୍ତି ବିବେକ? ସୁବିଧା ପାଇଲେ ଭୋକିଲା ବାଘ ଭଳି ଡେଇଁ ପଡୁଥିଲେ ତା' ଉପରକୁ। ସେ କାହାକୁ କହିଥାଆନ୍ତା ଏ କଥା? ମନେ ମନେ ଭାବି ନେଇଥିଲା ବୋଧହୁଏ ଏଇଟା ହିଁ ସ୍ୱାଭାବିକ। ଏମିତି ହିଁ ସବୁଠି ହୁଏ। ନୂଆ ବୋହୂଟିକୁ କେବଳ ନୀରବ ଭାବେ ସବୁ ସହିଯିବାକୁ ହୁଏ। ଧୀରେ ଧୀରେ ନିଶ୍ଚୟ ସବୁ ଠିକ୍ ହୋଇଯିବ।

ସତରେ ସେୟା ହେଲା। ମାସ କେଇଟା ପରେ ବିବେକଙ୍କ ଆକ୍ରମଣ କମ୍ ହେବାକୁ ଲାଗିଲା। ସେତେବେଳେ ସ୍ୱସ୍ତିର ନିଶ୍ୱାସ ନେଇଥିଲା ମୈତ୍ରେୟୀ।

ଆଉ ଠିକ୍ ସେଇ ସମୟରେ ତାକୁ ବ୍ରତତୀ କଥା କହିଥିଲେ ବିବେକ। ତାଙ୍କର ଅଫିସ୍‌ରେ କାମ କରୁଥିବା ଝିଅଟି କଥା। ବିବାହିତା, କିନ୍ତୁ ସ୍ୱାମୀ ସାଙ୍ଗରେ ସଂପର୍କ ନାହିଁ। ମୈତ୍ରେୟୀ ଅବାକ୍ ହୋଇଯାଇଥିଲା। ବିକଳ ହୋଇ କହି ପକାଇଥିଲା, ‘‘ତା’ହେଲେ ମତେ ବାହା ହେଲ କାହିଁକି? ତମର ସେଇ ବ୍ରତତୀକୁ ତ ବାହା ହୋଇ ପାରିଥାଆନ୍ତ!’’

‘‘ସେ କଥା ବାପା, ମା’ଙ୍କୁ ପଚାର। ସେମାନେ ପରିଷ୍କାର ମନା କରିଦେଲେ - ଖ୍ରୀଷ୍ଟିଆନ୍ ଝିଅ ଏ ଘରକୁ ବୋହୂ ହୋଇ ଆସି ପାରିବନି। ସେମାନେ ଯେଉଁଠି ସ୍ଥିର କରିବେ ମୁଁ ସେଇଠି ବାହା ହେବାକୁ ବାଧ୍ୟ। ମୁଁ ବେଶୀ ଜିଦି କଲି ନାହିଁ, କାରଣ ବ୍ରତତୀ ମଧ୍ୟ ମୋ ସଂସାର ବସେଇବାକୁ ପ୍ରସ୍ତୁତ ନ ଥିଲା। ତା’ର ଦିଇଟା ପିଲା। ସେମାନଙ୍କ ମୁହଁକୁ ଚାହିଁ ସେ ସ୍ୱାମୀଠୁଁ ଛାଡ଼ପତ୍ର ନେଇ ପାରିବ ନାହିଁ।’’

ମୈତ୍ରେୟୀ ଖାଲି ଛଅମାସର ପୁରୁଣା ସ୍ୱାମୀକୁ ଦେଖୁଥିଲା। ତାକୁ ବାହା ହେବାକୁ ସମ୍ମତି ଦେବାବେଳେ ସେ ମା’ ବାପାଙ୍କ କଥା ଭାବିପାରିଲେ, କୋଉ ବ୍ରତତୀ କଥା ଭାବି ପାରିଲେ, ଅଥଚ ଗୋଟାଏ ନିର୍ଦ୍ଦୋଷ ଝିଅର ଜୀବନକୁ ଯେ ସେ ନିର୍ବିବାଦରେ ନଷ୍ଟ କରିଦେବାକୁ ଯାଉଛନ୍ତି, ସେକଥା ଭାବି ପାରିଲେ ନାହିଁ।

‘‘ତମେ କୌଣସି ଚିନ୍ତା କର ନାହିଁ, ମୈତ୍ରେୟୀ। ତୁମ ସଂସାର କେହି ତୁମଠୁ ଟାଣି ନେବ ନାହିଁ।’’ ତାକୁ ଆଦର କରିବା ପାଇଁ ହାତ ବଢ଼େଇ ଦେଇଥିଲେ ବିବେକ। ସାପ ଦେଖିବା ଭଳି ମୈତ୍ରେୟୀ ଦି’ ପାଦ ପଛେଇ ଯାଇଥିଲା। ‘‘ନା - ମୁଁ ଏଠି ରହିପାରିବି ନାହିଁ। ମୁଁ ଗାଁକୁ ଯିବି।’’

‘‘ଯିବ ତ ଯାଅ। କିନ୍ତୁ ଏମିତି ଦୁମ୍‌ଦାମ୍ ଯାଇ ପହଞ୍ଚି ଗଲେ, ସମସ୍ତେ କ’ଣ କହିବେ? କେତେ ବଦନାମ୍ ହେବ ଭାବି ପାରୁଛ?’’ ବିବେକ ଶାନ୍ତ ଭାବରେ କହିଥିଲେ। ଯେମିତି ବଦନାମ୍‌ଟା କେବଳ ତା’ର। ବିବେକଙ୍କର ସେଥିରେ କୌଣସି ଭୂମିକା ନାହିଁ।

କିଛି ନ କହି ଟ୍ରେନ୍‌ରେ ଟିକେଟ କାଟି ଗାଁକୁ ଫେରି ଆସିବାକୁ ବସିଥିଲା ମୈତ୍ରେୟୀ। ସେ ଭାବିଥିଲା ଘରେ ପହଞ୍ଚିବା ମାତ୍ରକେ ଗାଁଟା ଯାକ ହୁରି ପଡ଼ିଯିବ। ଖୋଲି ତାଡ଼ି କଥା ବାହାର କରିବା ପାଇଁ ଘରେ ପହଞ୍ଚିଯିବେ

କେତେ କିଏ। କିନ୍ତୁ ଆଶ୍ଚର୍ଯ୍ୟ, ଭୁବନେଶ୍ୱର ଷ୍ଟେସନରେ ଓହ୍ଲେଇବାବେଳେ ଆଗ ତା'ର ଆଖି ପଡ଼ିଲା ଭାଇ ଉପରେ। ତା'ର କିଛି ପଚାରିବାର ଆବଶ୍ୟକତା ନ ଥିଲା। ବିବେକ ଯେ ଫୋନ୍ କରି ଭାଇକୁ ଖବର ଦେଇଛନ୍ତି, ସେଇଟା ତ ଜଣାଶୁଣା କଥା।

କିଛି ନ କହି ଭାଇ ପଛେ ପଛେ ନିଜର ଛୋଟ ବ୍ୟାଗ୍‌ଟା ଧରି ଚାଲିଥିଲା ସେ। କ'ଣ ବୁଝେଇବ ଏଇ ଷ୍ଟେସନର ଲୋକ ଭିଡ଼ ଭିତରେ? ନିଶ୍ଚୟ ବିବେକ ଓଲଟପାଲଟ କଥା କିଛି କହିଛନ୍ତି। ଏଥିପାଇଁ ଭାଇ ଏତେ ବିରକ୍ତ। ଘରେ ପହଞ୍ଚିଲେ ସବୁ ଖୋଲି କହିବ ସେ।

ମୈତ୍ରେୟୀ କ'ଣ ତା' ଘର ମଣିଷମାନଙ୍କୁ ଜାଣେନି? ତାହେଲେ କାହିଁକି ଭାବିନେଇଥିଲା ଯେ ସବୁ କଥା ଶୁଣି ସମସ୍ତେ ସ୍ତବ୍ଧ ହୋଇଯିବେ? ଏମିତିଆ ଲୋକଟିଏର ସଂସାର କରିବାକୁ ତାକୁ ଆଉ ପଠେଇବେ ନାହିଁ? ହେଲା କି ସେମିତି କିଛି? ଭାଇ ଭଳି କ୍ଷଣକୋପୀ ଲୋକ ହଠାତ୍ ବୁଝିବା ସୁଝିବାର ହୋଇଗଲା। ସେ ରହି ରହି କହିଲା, "ବାହାଘର ଆଗରୁ କେତେ କାହାର ଏମିତି ଥାଏ। ସେଇ କଥା ନେଇ କିଏ ଘର ଭାଙ୍ଗି ଦିଏ ନା କ'ଣ?" ନୀରବ ଭାବରେ ତାକୁ ସମର୍ଥନ କରିଥିଲେ ମା'।

ବାହାଘର ଆଗରୁ?? ତା'ହେଲେ ବ୍ରତତୀ କ'ଣ ତାଙ୍କର ଅତୀତ?

ମୈତ୍ରେୟୀ ପୁଣି ଫେରି ଆସିଥିଲା ବମ୍ବେ। ନା- ଆଉ ଥରେ ବିବେକଙ୍କୁ ଭଲକରି ପଚାରିବ ସେ। ଯଦି ବ୍ରତତୀ ତାଙ୍କର ଅତୀତ ହୋଇଥାଏ, ତେବେ ସେ ନିଜ ମନକୁ ବୁଝେଇବାକୁ ଚେଷ୍ଟା କରିବ। ବିବେକଙ୍କୁ କ୍ଷମା କରିଦେଇ ବର୍ତ୍ତମାନକୁ ସୁନ୍ଦର କରି ତୋଳିବ।

ବିବେକ କିନ୍ତୁ ପରିଷ୍କାର କହିଦେଲେ - ସେ ବ୍ରତତୀକୁ ଭୁଲିବେ ନାହିଁ। ବ୍ରତତୀ ତାଙ୍କର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ। ସେ ତାକୁ ଛାଡ଼ି ପାରିବେ ନାହିଁ। ତା'ମାନେ ନୁହଁ ଯେ ବିବାହିତା ପତ୍ନୀ ପ୍ରତି ଅବିଚାର କରିବେ। ସେ ପ୍ରଥମରୁ ଭାବି ସ୍ଥିର କରି ରଖିଛନ୍ତି। ଉଭୟଙ୍କୁ ନିଜ ନିଜ ସ୍ଥାନରେ ରଖିବେ ସେ। ତା'ହେଲେ ମୈତ୍ରେୟୀ ମନଖରାପ କରିବାର କାରଣ କୋଉଠି ଉଠୁଛି? ଶାଢ଼ି ଗହଣାରେ ମଣ୍ଡି ହୋଇ ସେ ତ ଖୁସିରେ ଘର ସଂସାର କରିବା କଥା।

ବାଃ ରେ! ସେ କ'ଣ କରିବ ନ କରିବ, ଖୁସୀ ହେବ କି ମନଖରାପ

କରିବ, ଏ ନିଷ୍ପତ୍ତି ବି ନେବେ ବିବେକ? ଏତେ ସବୁ ଘଟିବା, ଘଟାଇବା ପରେ ମଧ୍ୟ? ନା - ଏ ଅଧିକାର ଆଉ ତାଙ୍କୁ ଦେଇ ପାରିବ ନାହିଁ ମୈତ୍ରେୟୀ। ଯାହା କରିବା କଥା ସେ ଏମିତି ଭାବରେ କରିବ ଯେମିତିକି ତାକୁ ଘୋଡ଼େଇ ଦେବାକୁ, ଲୁଚେଇ ପକେଇବାକୁ କେହି ସୁବିଧା ପାଇବେ ନାହିଁ।

ମୈତ୍ରେୟୀ ଅପେକ୍ଷା କଲା। ପୂର୍ବ ଥର ଭଳି ସ୍ୱାମୀ ସାମ୍ନାରେ ସୁଟକେଶ ଧରି ଡ଼ଗଡ଼ଗ ହୋଇ ବାହାରି ଆସିଲା ନାହିଁ।

କିଛି ଦିନ ପରେ ବିବେକଙ୍କର ଟୁର ପଡ଼ିଲା। ବମ୍ବେ ବାହାରକୁ ସାତ ଦିନ ପାଇଁ ଯିବାକୁ ହେବ। ସେ ଘରୁ ବାହାରି ଯିବା ପରେ ପରେ ହିଁ ନିଜ ବ୍ୟାଗ ସଜାଡ଼ି, ଟିକେଟ କାଟି ମୈତ୍ରେୟୀ ଫେରି ଆସିଥିଲା ଗାଁକୁ। ଏଥର ଭୁବନେଶ୍ୱର ଷ୍ଟେସନରେ ଭାଇ ନ ଥିଲେ। ସେ ଏକା ଏକା ହିଁ ଟ୍ରେନ୍, ବସ୍ କରିଥିଲା। ରିକ୍ସାରେ ଆସି ସେ ଯେତେବେଳେ ଘର ଦାଣ୍ଡରେ ଓହ୍ଲାଇଲା, ସେତେବେଳେ ରାସ୍ତାରେ ଯାଉଥିବା ଦି' ଚାରିଟା ମଣିଷ ତା' ଆଡ଼କୁ ହାଁ ହୋଇ ଚାହିଁ ରହିଥିଲେ। ତା'ପରେ ଏ କାନରୁ ସେ କାନ ହୋଇ କ୍ଷଣକ ମଧ୍ୟରେ କଥାଟା ଗାଁ ଭିତରେ ଖେଳି ଯାଇଥିଲା। ମୈତ୍ରେୟୀ ପରବାୟ କରି ନଥିଲା। ଆଜି ନ ଜାଣିଲେ କାଲି ତ ଜାଣିବେ ସମସ୍ତେ। ବରଂ ପ୍ରଥମରୁ ସତ୍ୟ ସହିତ ସାମ୍ନା ସାମ୍ନି ହୋଇଯାଉ।

ସେ ନୀରବ ଭାବରେ ଘର ଭିତରେ ପାଦ ଦେଇଥିଲା। ତାକୁ ଦେଖିବା ମାତ୍ରକେ ଘର ଭିତରେ ନିଶ୍ଚୟ ଗୋଟିଏ ବଡ଼ ଧରଣର ବିସ୍ଫୋରଣ ହୋଇ ଯାଇଥାନ୍ତା। କିନ୍ତୁ ଘରେ ଭାଇ ନ ଥିଲେ। ଘରର ଅନ୍ୟ ସଦସ୍ୟମାନଙ୍କୁ ସେ ପରିଷ୍କାର କରି କହି ଦେଇଥିଲା ଯେ ସେ ସବୁଦିନ ପାଇଁ ସ୍ୱାମୀକୁ ଛାଡ଼ି ଚାଲି ଆସିଛି। ସେ ଆଉ ବମ୍ବେ ଯିବ ନାହିଁ। ବିବେକଙ୍କ ପାଖରେ ରହିବ ନାହିଁ।

ଆଉ ତା' ପରେ ଏଇ। ଶୋକ ପାଳିଲା ଭଳି ଆସି ଘରେ ଭିଡ଼ ଜମେଇଛନ୍ତି ସମସ୍ତେ।

ଭିଡ଼ କଟେଇ ପାଖକୁ ଆସିଲା ବଡ଼ ଅପା। ''ଏବେ କ'ଣ କରିବୁ ବୋଲି ଭାବୁଛୁ, ମିତୁ?''

''ନା- ଏପର୍ଯ୍ୟନ୍ତ କିଛି ଭାବିନି।'' ସଜାଡ଼ି ହୋଇ ବସି ମୈତ୍ରେୟୀ କହିଥିଲା,

"ଥରେ ଡ଼ିଭୋର୍ସ ହୋଇଯାଉ, ତା'ପରେ ଯାଇ ନିଜ ଜୀବନ ସଜାଡ଼ିବି।"

"ଡ଼ିଭୋର୍ସ। ତୋର କ'ଣ ମୁଣ୍ଡ ଖରାପ ହେଲାଣି? ଏ ଘରେ ଆଗରୁ କେବେ ହୋଇଛି ଡ଼ିଭୋର୍ସ?"

ଆଗରୁ ନ ହୋଇଥିଲେ ଏବେ ହେବ। ଲମ୍ବା ଅଡୁଆ ସୂତା ରଖି କାହିଁକି ସେ ଚଳପ୍ରଚଳ ହେବ? ଏତେ ବାଟ ଆଗେଇ ଆସିବା ପରେ ସେ କ'ଣ ଏମିତି ଛକରେ ହିଁ ରହିଯିବ? ଅପା ମୁହଁକୁ ଚାହିଁ କେବଳ ଭାବୁଥିଲା ମୈତ୍ରେୟୀ।

କିନ୍ତୁ.. କିନ୍ତୁ ସେ କ'ଣ ସତରେ ପାରିବ? ତା' ଛାତି ଉପରେ ଆସି ଜମାଟ ବାଂଧି ବସିଗଲା ଭୟ। ଏତେଦିନ ତା' ଜୀବନରେ ଯାହା ଯାହା ହୋଇଯାଇଛି, ସେ ସବୁର ନିର୍ଦ୍ଦେଶ ଆସିଛି ଅନ୍ୟ କାହାଠାରୁ - ମା', ଭାଇ ବା ବିବେକଙ୍କଠାରୁ। ସେମାନେ ଯେଉଁ ରାସ୍ତା ସ୍ଥିର କରି ତାକୁ ଦେଖାଇ ଦେଇଛନ୍ତି, ମୈତ୍ରେୟୀ ସେଇ ରାସ୍ତାରେ କେବଳ ଚାଲି ଯାଇଛି। ଚାବିଦିଆ କଣ୍ଢେଇ ଭଳି। ଏଇମିତି କିଛି କରିବା ତା' ଜୀବନରେ ପ୍ରଥମ। ଏଇ ପ୍ରଥମ ଥର ପାଇଁ ସେ ନିଜେ ନିଜେ ଗୋଟାଏ ଏତେବଡ଼ ପଦକ୍ଷେପ ନେଇଛି।

ନିଜର ଏଇ ନିଷ୍ପତ୍ତିକୁ ସେ କ'ଣ ଶେଷ ପର୍ଯ୍ୟନ୍ତ ଧରି ରଖି ପାରିବ? ଯଦି କାହା କାଂଧର ଆଶ୍ରା ନ ମିଳେ, କାହା ହାତର ସାହାରା ନ ମିଳେ, ତେବେ କ'ଣ କରିବ ମୈତ୍ରେୟୀ? ବିନା ଆଶ୍ରାରେ ସେ କ'ଣ ସତେ ଏତେ ଲମ୍ବା ରାସ୍ତା ଚାଲି ପାରିବ?

ଅପା ତା' ମୁଣ୍ଡ ଆଉଁଶି ଦେଲା, "ମୋ କଥା ମାନ। ଏବେ ଆସିଛୁ ତ ଦିନା କେତେ ଏଇଠି ରହିଯାଆ। ଆମେ ବିବେକଙ୍କ ପାଖକୁ ଖବର ପଠାଇ ଦେବୁ। ଦେଖିବୁ ଅଳ୍ପ ଦିନ ଭିତରେ ତୋତେ ନେବାକୁ ସେ ନିଜେ ଆସିବେ। ସେତେବେଳେ ଆଉ ଏମିତି 'ଯିବିନି, ଯିବିନି'ର ମାଳା ଧରି ବସିବୁନି। ଆରେ, ଯେତେ ଯାହା ହେଲେ ତୁ ତାଙ୍କର ବିବାହିତା ପତ୍ନୀ। ଆଉ କିଏ କ'ଣ ବେଶୀ ଦିନ ପାଇଁ ତାଙ୍କ ମନ ଉପରେ ଅକ୍ତିଆର ରଖିପାରିବ?"

"ଆଉ କୋଳକୁ ପିଲା ଆସି ଗଲେ ତ ସରିଲା। ଦେଖିବ, ଶାନ୍ତ ସୁଧାର ମେଣ୍ଢା ଛୁଆ ହୋଇଯିବେ ବିବେକ।" ରେବା ଭାଉଜ ତାଙ୍କର ଚିରାଚରିତ ଶାଣଦିଆ ସ୍ୱରରେ କହିଲେ। ନିଜ ଅଭିଜ୍ଞତାରୁ କହୁଛନ୍ତି କି? ମୈତ୍ରେୟୀର ଇଚ୍ଛା ହେଲା ପଚାରି ଦେବ। ଥାଉ। ସହଜେ ତ ସମସ୍ତେ ନାନା କଥା

କହୁଛନ୍ତି, ନାନା ଭାବେ ସମାଲୋଚନା କରୁଛନ୍ତି, ଆହୁରି ଅଧିକ କଥା କହିବାକୁ ସେମାନଙ୍କୁ ସେ ସୁଯୋଗ କାହିଁକି ଦେବ? ବରଂ ଯିଏ ଯାହା ଉପଦେଶ ଦେବ ଦେଉ। ସମସ୍ତେ ତ ସେଇଥିପାଇଁ ଆସି ଏଠି ଭିଡ଼ ଜମେଇଛନ୍ତି। ଏମିତିଆ ସୁଯୋଗ କେତେ ଥର ମିଳେ?

ହଠାତ୍ କୋଠରୀର ଚାପା କଥାବାର୍ତ୍ତାକୁ ସ୍ତବ୍ଧ କରିଦେଇ ଗୋଟିଏ ଗୁରୁ ଗମ୍ଭୀର ସ୍ୱର ଭାସି ଆସିଲା। "ମିତୁ, ଆସିଲୁ ଟିକିଏ ଏଠିକି।"

ମୈତ୍ରେୟୀର ହୃଦୟ ଭିତର କଂପି ଉଠିଲା। ଫେରି ଆସିଲେ ଭାଇ? କାଲି ଘର ଭିତରେ ପାଦ ଦେବା ପରଠାରୁ ସେ ଜାଣିଥିଲା ଯେ ଖୁବ୍ ଶୀଘ୍ର ଏଇ ସ୍ୱରର ସାମ୍ନା ତାକୁ କରିବାକୁ ହେବ। ସେଥିପାଇଁ ମନରେ ସାହସ ମଧ୍ୟ ସଞ୍ଚୟ କରି ରଖିଥିଲା ସେ। ତଥାପି ଯେ ଛାତିଟା କାହିଁକି ଧଡ଼ପଡ଼ ହେଉଛି! କ'ଣ କହିବେ ଭାଇ? ପୁଣି ବାଧ କରିବେ ତାକୁ ବମ୍ବେ ଫେରିଯିବାକୁ?

କୋଠରୀ ଭିତରୁ ବାହାରି ଆସି ଅଗଣାରେ ପାଦ ଦେଲା ମୈତ୍ରେୟୀ। କାହାନ୍ତି ଭାଇ? ସେଇଟା ତାହେଲେ କ'ଣ ଭାଇଙ୍କ ସ୍ୱର ନୁହଁ? ଅଗଣାରେ ପଡ଼ିଥିବା ଖଟରେ ତକିଆକୁ ଆଉଜି ବସିଥିଲେ ବାପା। ପେଟ ଉପରେ ଓଲଟା ହୋଇ ରହିଥିଲା ଗୋଟିଏ ବହି। "ଆ ରେ ମା'। ଏଠିକି ଆ।"

ବାପା! ସେ କାହିଁକି ଡ଼ାକୁଛନ୍ତି ତାକୁ? ଗତ ଥର ତ ସବୁ ଶୁଣି ସେ ପାଟି ଖୋଲି ନ ଥିଲେ। ଏଥର ଘର କଥା ବାହାରେ ପଡ଼ି ଯାଇଛି ବୋଲି ସେ ବି କ'ଣ ଅସନ୍ତୁଷ୍ଟ? ତାଙ୍କୁ ମଧ କୈଫିୟତ ଦେବାକୁ ହେବ?

ବାପାଙ୍କ ପାଖରେ ଯାଇ ଠିଆ ହେଲା ମୈତ୍ରେୟୀ।

"ବସ ରେ ମା' ଏଇଠି ବସ।"

"ମୋ ଉପରେ ରାଗିଛ, ବାପା?"

"ନାଇଁ ରେ ମା' ରାଗିବି କାହିଁକି?"

କିଛି ନ କହି ଆଖି ତଳକୁ କଲା ମୈତ୍ରେୟୀ। ଲୋକଙ୍କର ବାର ରକମର କଥା କ'ଣ ତାଙ୍କ କାନରେ ପଡୁ ନ ଥିବ? ପ୍ରଥମ ଥର ପାଇଁ ମନରେ ଗ୍ଲାନି ଭରିଗଲା ତା'ର। ଏମିତି କିଛି କରିବାଟା କ'ଣ ତା'ର ଭୁଲ ହେଲା? ହୁଏତ ଓଠ ଚିପି ସହି ଯିବାଟା ହିଁ ଉଚିତ ଥିଲା। ଅନ୍ତତଃ ତା' ପାଇଁ ତା' ଘରଲୋକଙ୍କର ତ ମୁଣ୍ଡ ତଳକୁ ହୋଇ ନ ଥାଆନ୍ତା।

"ବାପା, ମୋର ଏମିତି ଭାବରେ ଚାଲି ଆସିବାଟା ବୋଧହୁଏ ଠିକ୍ ହୋଇନି।"

ପେଟ ଉପରୁ ବହିଟି କାଢ଼ି ବାପା ଖଟ ଉପରେ ବସିଲେ। ମୈତ୍ରେୟୀର ପିଠିରେ ହାତ ରଖି ପରମ ସ୍ନେହରେ କହିଲେ, "ମା' ରେ, ତୁ ବଡ଼ ହୋଇଛୁ। ତୋର ବୁଦ୍ଧି ହୋଇଛି। ତୁ ଯାହା କରିଛୁ ନିଶ୍ଚୟ ଭାବି ଚିନ୍ତି କରିଥିବୁ।"

ମୈତ୍ରେୟୀର ଆଖିରେ ଲୁହ ଭରିଗଲା। ସାମାନ୍ୟ ବସା ବସା ସ୍ୱରରେ ସେ କହିଲା, "ମୁଁ ଏବେ କରିବି କ'ଣ, ବାପା ?"

ଝିଅର ଗାଲରୁ ଲୁହ ପୋଛି ଦେଲେ ବାପା। କହିଲେ, "ଏତେ ଦିନ ତୋ ପାଇଁ ଅନ୍ୟମାନେ ନିଷ୍ପତ୍ତି ନେଉଥିଲେ। ତୁ କେଉଁ ରାସ୍ତାରେ ଚାଲିବୁ ସେ ରାସ୍ତା ଦେଖାଉଥିଲେ। ଏବେ ବି କ'ଣ ତୋତେ ବାଟ ଦେଖାଇବାକୁ ହେବ ?"

ବାପା ଆଖିରୁ ଚଷମା ଖୋଲି ଧୋତିରେ ପୋଛିନେଲେ। ଭାବିବା ଭଳି ହୋଇ ପୁଣି କହିଲେ, "ଆମ ସମାଜଟା ତ ଏମିତିଆରେ। ନିଜ ଜୀବନ ପଛେ ଭାସିଯାଉ। କିନ୍ତୁ ଅନ୍ୟ ଜୀବନର ବିଭିନ୍ନ ନିଷ୍ପତ୍ତି ନେବାକୁ ସମସ୍ତେ ଆଗଭର ହୋଇ ପଡ଼ିବେ। ଏଥର ତୋ ନିଜ ଜୀବନର ପଥ ତୁ ସ୍ଥିର କର। ଭୁଲ ହେଉ ବା ଠିକ୍ ହେଉ। ତୁ ଅନ୍ୟ କାହାର ସାହାଯ୍ୟ ନ ନେଇ ପ୍ରଥମ ପଦକ୍ଷେପ ନେଇଛୁ। ଏଥର ପଛକୁ ନ ଚାହିଁ ଆଗେଇ ଯାଆ। ପ୍ରମାଣ କରି ଦେ ଯେ ତୁ ମାଟି କଣ୍ଢେଇ ନୁହଁ। ଯାଆ ମା' - ନିଜ ଇଚ୍ଛାରେ ତିଆରି କର ତୋ ଜୀବନକୁ। ସେମିତି କିଛି ତ ଡ଼େରି ହୋଇ ଯାଇନାହିଁ।"

ମୈତ୍ରେୟୀ ଆଖିରୁ ଲୁହ ଶୁଖିଯାଇଥିଲା। ବାପାଙ୍କ ହାତ ଉପରେ ହାତ ରଖି ସେ ସ୍ଥିର ଦୃଷ୍ଟିରେ ତାଙ୍କ ମୁହଁକୁ ଚାହିଁଲା। ସବୁବେଳେ ଚୁପ୍ ହୋଇ ଅନ୍ୟମାନଙ୍କର ସିଦ୍ଧାନ୍ତ ମାନି ନେଉଥିବା ବାପାଙ୍କ ଭିତରେ ଏତେ ଶକ୍ତି। ପଁଷଠି ବର୍ଷର ଶିରାଳ ହାତ ଦେଇ ସେଇ ଶକ୍ତିରୁ କାଣିଚାଏ ନିଜ ଭିତରକୁ ଟାଣି ଆଣିବାକୁ ମୈତ୍ରେୟୀ ଚେଷ୍ଟା କରୁଥିଲା। ▢▢

# ଗେମ୍, ସେଟ୍, ଆଣ୍ଡ ମ୍ୟାଚ୍ ଟୁ ଗଡ୍

ସଦର୍ନ ଷ୍ଟାର ହୋଟେଲ୍‌ର ଲବିରେ ପାଦ ଦେଇ ଜୋରରେ ହାଇ ମାରିଲା ଶୁଭ୍ରାଂଶୁ। ଦେହ ହାତ ଭାଙ୍ଗି ପଡ଼ୁଛି ଯେମିତି। ଆଃ- ଆଖି ପିଛୁଳାକେ ସେ ରୁମ୍ ଭିତରେ ପହଞ୍ଚି ଯାଇ ପାରନ୍ତା କି! ଏୟାର୍‌କଣ୍ଡିସନ୍‌ଡ଼ ରୁମ୍‌ର ଇସ୍ତ୍ରୀ କରା ଧଳା ଚଦରରେ ନିଜ କ୍ଲାନ୍ତ ଶରୀରକୁ ଲମ୍ୱେଇ ଦେବା ଭଳି ସୁଖ ବୋଧହୁଏ ଆଉ କିଛି ନାହିଁ ଏ ଜଗତରେ। ସେଇ ଭୋର୍ ଚାରିଟାରେ ସେ ତା' ଦିନ ଆରମ୍ଭ କରିଥିଲା, ଆଉ ଏବେ ଆସି ପ୍ରାୟ ରାତି ଏଗାରଟା। ସକାଳୁ ପ୍ରସ୍ତୁତ ହୋଇ ବାଙ୍ଗାଲୋର ବସ୍‌ଷ୍ଟାଣ୍ଡରୁ ବସ୍ ଧରି ଉଟି ଆସିବା ବେଳେ ସେ ଭାବିଥିଲା ବାଟରେ ଶୋଇ ପଡ଼ିବ। କିନ୍ତୁ ଲୋକମାନଙ୍କର ପାଟିତୁଣ୍ଡ, ପିଲାଛୁଆଙ୍କ ଚେଁ ଚାଁ, ବୁଲାବିକାଳୀଙ୍କ ଚିତ୍କାର - ତା' ଭିତରେ ଆଖି ବନ୍ଦ କରି ହୁଏ? ଉଟିରେ ଆସି ପହଞ୍ଚିବା ବେଳକୁ ଦିନ ତିନିଟା। କିନ୍ତୁ ସେତେବେଳେ ଆଉ ଗଡ଼ିବାକୁ ସମୟ କାହିଁ? କୌଣସି ମତେ ଗାଧୋଇ ପାଧୋଇ ସୁଟ୍, ଟାଇ ପିନ୍ଧି ସେ ବାହାରି ଯାଇଥିଲା।

ସଂଧ୍ୟା ପାଞ୍ଚଟାରେ କନଫରେନ୍‌ସ ଆରମ୍ଭ। ସେଇଠି ଚାରି .ଘଣ୍ଟା କଟେଇ, ତା'ପରେ ଆୟୋଜିତ ହୋଇଥିବା ଡ଼ିନାର୍‌ରେ କିଛି ଖାଦ୍ୟ ପେଟରେ ପକାଇ ସେ ଏଇ ମାତ୍ର ଫେରୁଛି। ଏବେ ଯଦି ମନଟା ବିଛଣା ପାଇଁ ଗୁଡ଼େଇ ତୁଡ଼େଇ ହୁଏ, ତାହେଲେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି?

ଶୁଭ୍ରାଂଶୁ ଆଉ ଥରେ ଜୋରରେ ହାଇ ମାରିଲା।

''ଗୁଡ୍ ଇଭିନିଙ୍ଗ୍, ସାର୍।'' ରାତି ଡ଼ିଉଟିରେ ଥିବା ରିସେପ୍ସନିଷ୍ଟ ଜଣକ ଚିରାଚରିତ ଭଦ୍ରସ୍ୱରରେ କହିଲେ।

''ଗୁଡ୍ ଇଭିନିଙ୍ଗ୍। ରୁମ୍ ନମ୍ବର ୱାନ୍ ୱାନ୍ ଫୋର୍, ପ୍ଲିଜ୍।'' ଶୁଭ୍ରାଂଶୁ ରୁମ୍ ଚାବି ପାଇଁ ହାତ ବଢ଼େଇ ଦେଲା।

ପଛ ପଟ ଥାକରୁ ଚାବି ଆଣିବା ବେଳେ ରିସେପସନିଷ୍ଟଙ୍କ ହାତରେ ଥିଲା କେତେ ଗୁଡ଼ିଏ ହଳଦିଆ କାଗଜ। ''ଆପଣଙ୍କ ପାଇଁ ଚାରିଟା ଫୋନ୍ କଲ୍ ଆସିଥିଲା। ଏଇଥିରେ ମେସେଜେସ୍ ଲେଖା ଅଛି।''

ଚାରିଟା ଫୋନ୍ କଲ୍? କିଏ କରିଥିଲା? ତା' ଘର ଲୋକ ଛଡ଼ା ଆଉ ତ କେହି ଜାଣନ୍ତି ନାହିଁ ଯେ ସେ ଏଇ ହୋଟେଲରେ ରହୁଛି। ଏମିତିରେ ଟୁର୍‌ରେ ଗଲେ ସଦର୍ନ ଷ୍ଟାର ଭଳି ହୋଟେଲରେ ସେ ରହେ ନାହିଁ। କିନ୍ତୁ ଏଥର ରିଜର୍ଭେସନ ଆଉ କୋଉଠି ମିଳିଲା ନାହିଁ। ତେଣୁ ବାଧ୍ୟ ହୋଇ ଏଇ ଫୋର୍ ଷ୍ଟାର୍ ହୋଟେଲରେ ରହିବାର ବ୍ୟବସ୍ଥା। କିଏ କଲା ଏଠିକୁ ଫୋନ୍? ତେବେ କ'ଣ...

ରିସେପ୍ସନିଷ୍ଟ ହାତରୁ କାଗଜତକ ନେଲା ସେ। ନା- ତା' ଅନୁମାନ ଭୁଲ ନୁହଁ। ଚାରିଟାଯାକ ଫୋନ୍ ଆସିଛି ବାଙ୍ଗାଲୋରରୁ। ଦୁଇଟା କରିଛନ୍ତି ତା' ଶାଶୁ। ଆଉ ଦୁଇଟା କରିଛି ରଘୁପତି, ତା' ପଡ଼ୋଶୀ। ଚାରିଟା ଯାକର ମେସେଜ୍ ସେଇ ଏକା - ଶୀଘ୍ର ବାଙ୍ଗାଲୋର ଆସ।

ବାସ୍ - ଆଉ କିଛି ନାହିଁ।

ଏମିତି କିଏ ମଣିଷକୁ ଉଦ୍‌ବିଗ୍ନ କରି ରଖେ? ଘଟଣା କ'ଣ ସିନା ଜଣେଇ ଦେଇଥାଆନ୍ତେ। କାହିଁକି ବାଙ୍ଗାଲୋର ଫେରିଯିବାକୁ ହେବ ଏମିତି ତରବରିଆରେ? ସୁମିତାର ହଠାତ୍ କିଛି ଅସୁବିଧା ହେଲା ନା କ'ଣ? ତା'ର ତ ଡ଼େଟ୍ ଅଛି ଆହୁରି ସତେଇଶ ଦିନ ପରେ। ନିଜେ ଚେକ୍ ଅପ୍ କରି ଗାଇନିକ୍ ସ୍ପେସିଆଲିଷ୍ଟ କହିଲେ ସେଦିନ। ତା'ଛଡ଼ା ଶୁଭ୍ରାଂଶୁ ତ ତାକୁ ଆଜି ସକାଳେ ଘର ଛାଡ଼ିବା ବେଳେ ଦେଖି ଆସିଛି। ସବୁଦିନ ଭଳି ଉଜ୍ଜ୍ୱଳ, ହସହସ। କୌଣସି ଆଶଙ୍କାର କାରଣ ହିଁ ନ ଥିଲା। ନହେଲେ କ'ଣ ସେ କେଇ ଘଣ୍ଟାର କନଫରେନ୍ସ ପାଇଁ ବାଙ୍ଗାଲୋର ଛାଡ଼ି ଉଡି ଆସିଥାଆନ୍ତା?

''ଗୋଟିଏ କଲ୍ କରିବି। ବାଙ୍ଗାଲୋର୍।'' ରୁମ୍ ପର୍ଯ୍ୟନ୍ତ ଯିବାକୁ ଶୁଭ୍ରାଂଶୁର

ଧୈର୍ଯ୍ୟ ନାହିଁ।

"ସିଓର୍ ସାର୍।"

ତା' ଘରେ ଫୋନ୍ ବାଜି ଯାଉଛି, ଅଥଚ କେହି ଉଠାଉ ନାହାନ୍ତି। ଆଶଙ୍କାରେ କେମିତି ଦେହ ହାତ ଥଣ୍ଡା ହୋଇଯାଉଛି ତା'ର। ଏଥର ରଘୁପତିକୁ ଫୋନ୍ କଲା ସେ। ସେ ବି କ'ଣ ଘରେ ନାହିଁ? ନା- ତିନି ଥର ଫୋନ୍ ବାଜିବା ପରେ ଫୋନ୍ ଉଠାଇଲା ରଘୁପତି ନିଜେ।

"କେଉଁଠୁ କହୁଛ, ଭାଇ? ଶୀଘ୍ର ଆସ ବାଙ୍ଗାଲୋର?"

"କ'ଣ ହୋଇଛି?" ଶୁଭ୍ରାଂଶୁ ସ୍ୱରରେ ଆତଙ୍କ।

"ଆରେ ନଥିଙ୍ଗ ଟୁ ୱରି। ଆଜି ବାରଟା ବେଳେ ସୁମିତା ହଠାତ୍ ଅସ୍ୱସ୍ତି ଅନୁଭବ କଲା। ମୁଁ ତାକୁ ସାଙ୍ଗେ ସାଙ୍ଗେ ତା' ଗାଇନିକ ଡାକ୍ତର ପାଖକୁ ନେଇଗଲି। ସେ ପରୀକ୍ଷା କରି କହିଲେ ଯେ ପିଲା ହଠାତ୍ ତଳକୁ ଖସି ଆସିଛି। ସେ କାଲି ସକାଳ ପର୍ଯ୍ୟନ୍ତ ଅପେକ୍ଷା କରି ଦେଖିବେ। ଯଦି ପେନ୍ ଆରମ୍ଭ ହୁଏ ତ ଭଲ କଥା, ନହେଲେ କାଲି ନଅଟା ବେଳେ ଅପରେସନ କରିବେ।"

"ସୁମିତା..."

"ସୁମିତା ଏବେ ନର୍ସିଂ ହୋମ୍‌ରେ। ଆଣ୍ଟି ତା' ପାଖରେ ଅଛନ୍ତି। ଅରୁଣ ଆମ ଘରେ। ଖାଇ ପିଇ ଶୋଇ ସାରିଲାଣି। ତୁମେ ବ୍ୟସ୍ତ ନ ହୋଇ ଶୀଘ୍ର ଆସି ପହଞ୍ଚ। ନହେଲେ ତ ଆମେ ସବୁ ଅଛୁ।"

"ମୁଁ ଯେତେ ଶୀଘ୍ର ସମ୍ଭବ ଆସି ପହଞ୍ଚୁଛି।" ଫୋନ୍ ରଖି ଆଖି ଉପରେ ହାତ ବୁଲାଇ ଆଣିଲା ଶୁଭ୍ରାଂଶୁ। ମନେ ମନେ କିଛି ନିଷ୍ପତ୍ତି ନେବାର ଚେଷ୍ଟା କରୁଥିଲା ସେ। କାଲି ସକାଳ କେ.ଏସ୍.ଆର୍.ଟି.ସି ବସ୍‌ରେ ତା'ର ରିଜର୍ଭେସନ ଅଛି। ତା' ମାନେ ବାଙ୍ଗାଲୋର ପହଞ୍ଚୁ ପହଞ୍ଚୁ ଦିନ ଚାରିଟା। ନା- ନା- ଏତେ ଡେରି ସେ କରି ପାରିବ ନାହିଁ। ଏମିତି ସୁମିତାକୁ ଏକା ଛାଡ଼ି ଦେଇ ପାରିବ ନାହିଁ। ସୁମିତାର ମା' ଅବଶ୍ୟ ପାଖରେ ଅଛନ୍ତି, ରଘୁପତି ଆଉ ରାଧିକା ସବୁ ରକମର ସାହାଯ୍ୟ କରିବେ। ତଥାପି...

ରିସେପ୍‌ସନିଷ୍ଟକୁ ମୁଣ୍ଡ ଟେକି ଚାହିଁଲା ସେ। "ଆଇ ନିଡ୍ ଏ ଫେଭର୍। ମୋତେ ଏଇ ମାତ୍ର ବାଙ୍ଗାଲୋର ଯିବାକୁ ହେବ।"

"ସାର୍, ବାଙ୍ଗାଲୋର ? କିନ୍ତୁ ଶେଷ ବସ୍ ତ ଏତେବେଳକୁ ଯାଇ ସାରିବଣି।"

"ମୁଁ ଜାଣେ। ଗୋଟିଏ ଟ୍ୟାକ୍ସି ଯୋଗାଡ଼ କରି ଦେଇ ପାରିବେ ?"

"ମୁଁ ଚେଷ୍ଟା କରୁଛି।" ଫୋନ୍‌ର ରିସିଭର୍ ଉଠାଇଲେ ସେ।

କିଛି ସମୟ ଆଗର କ୍ଳାନ୍ତି ଆଉ ନ ଥିଲା ଶୁଭ୍ରାଂଶୁର। ଏବେ ତା'ର ସେଇ ଏକମାତ୍ର ଚିନ୍ତା, କେମିତି ଶୀଘ୍ର ଘରେ ପହଞ୍ଚିବ। ରୁମ୍‌କୁ ଯାଇ ସେ ସୁଟ୍ ବଦଳାଇ ନେଲା। ସବୁ ଜିନିଷ ଛୋଟ ବ୍ରିଫ୍‌କେଶ୍‌ରେ ରଖି ତଳକୁ ଆସିବା ପର୍ଯ୍ୟନ୍ତ ଫୋନ୍‌ରେ କଥା କହୁଥିଲେ ରିସେପ୍‌ସନିଷ୍ଟ। ତାକୁ ଦେଖି ଫୋନ୍ ରଖି ମୁଣ୍ଡ ହଲେଇଲେ ସେ। "ଆଇ ଆମ୍ ରିଏଲି ସରି, ସାର୍। କୌଣସି ଟ୍ୟାକ୍ସି ମିଳୁନାହିଁ। ଏଇଟା ଟୁରିଷ୍ଟ ସିଜନ୍ ତ, ସବୁଗୁଡ଼ାକ ଏନ୍‌ଗେଜ୍‌ଡ୍।"

"ଓ ମାଇଁ ଗଡ୍, ଦେଖନ୍ତୁ ଏଇଟା ଗୋଟିଏ ଇମରଜେନ୍‌ସି। ମୋତେ ଯେମିତି ହେଲେ ଯିବାକୁ ହେବ। ଟୁରିଷ୍ଟ ଟ୍ୟାକ୍ସି ଯିନା ମିଳୁନାହିଁ, ଅଧିକ ପଇସା ଦେଲେ ଲୋକାଲ ଟ୍ୟାକ୍ସି କ'ଣ ଯିବାକୁ ରାଜି ହେବନି ?"

ଆଉ ଥରେ ମୁଣ୍ଡ ହଲେଇଲେ ସେ, "ସାର୍, ଏଥିରେ ରାଜି ଅରାଜିର କଥା ନାହିଁ। ଏଇଟା ତାମିଲନାଡୁ। ଆପଣଙ୍କୁ କର୍ଣ୍ଣାଟକ ଭିତରେ ପଶିବାକୁ ହେବ। ଲୋକାଲ ଟ୍ୟାକ୍ସିଙ୍କ ପାଖରେ ଇଣ୍ଟର୍ ଷ୍ଟେଟ୍ ଡ୍ରାଇଭିଙ୍ଗ୍ ପରମିଟ୍ କାହିଁ ?"

ହଠାତ୍ ଯେମିତି ତାଙ୍କର କ'ଣ ମନେ ପଡ଼ିଗଲା, "ଜଷ୍ଟ ଏ ମିନିଟ୍, ସାର୍।"

ଭିତରକୁ ଯାଇ ଅଳ୍ପ ସମୟ ଭିତରେ ସେ ହୋଟେଲର ଗୋଟିଏ ବେଲ୍ ବୟକୁ ନେଇ ଆସିଲେ। "ସାର୍, ମୁଁ ଶେଷ ଚେଷ୍ଟା କରି ଦେଖୁଛି। ଜଣେ ଲୋକାଲ ଟ୍ୟାକ୍ସି ଡ୍ରାଇଭର୍ ଅଛି ଯିଏ କି ଆଗରୁ ଲଙ୍ଗ୍ ଡ଼ିଷ୍ଟାନ୍ସ ଟୁରିଷ୍ଟ ନେଉଥିଲା। ଯଦି ତା'ର ପରମିଟ୍ ଏପର୍ଯ୍ୟନ୍ତ ଭାଲିଡ୍ ଥାଏ, ତେବେ ହୁଏତ ସେ ଆପଣଙ୍କୁ ନେଇ ଯାଇ ପାରିବ। ରଙ୍ଗନାଥନ୍, ତୁମେ ମୋ ମୋପେଡ୍ ନେଇକରି ଯାଅ। ମାଇକେଲ୍‌କୁ ଯେମିତି ହେଲେ ନେଇକରି ଆସିବ।"

ଶୁଭ୍ରାଂଶୁ ମାଡ଼ି ବସିଲା। "ମୁଁ ଯିବି ସାଙ୍ଗରେ। ଯଦି ସେ ରାଜି ହୁଏ, ତେବେ ସେଇଆଡୁ ଚାଲିଯିବି।"

"ସାର୍, ଆପଣ ମୋପେଡ୍‌ରେ...।" ରିସେପ୍‌ସନିଷ୍ଟ ଲଜ୍ଜିତ।

"ଦ୍ୟାଟସ୍ ଓକେ।"

ବ୍ରିଫ୍‌କେଶ୍‌କୁ କୋଳରେ ଧରି ମୋପେଡ୍ ପଛରେ ବସିଗଲା ଶୁଭ୍ରାଂଶୁ। ଉଟିର ଚିହ୍ନା ଚଉଡ଼ା ରାସ୍ତାରୁ ବାହାରି ଯାଇ ରଙ୍ଗନାଥନ୍ ମୋପେଡ୍‌କୁ ଆଗେଇ ନେଲା ସହରର ଅପେକ୍ଷାକୃତ ପୁରୁଣା ଅଂଶ ଆଡ଼କୁ। ଏପଟେ ଟୁରିଷ୍ଟମାନଙ୍କର ଚମକ ନାହିଁ କି ବଡ଼ ବଡ଼ ହୋଟେଲର ମାଦକତା ନାହିଁ। ନିହାତି ଅନାକର୍ଷଣୀୟ ଏପାଖର ଉଟି।

ଗୋଟିଏ ଫାଟକ ନ ଥିବା ଘର ସାମ୍ନାରେ ମୋପେଡ୍ ରହିଲା। ରଙ୍ଗନାଥନ୍‌ର ଡ଼ାକରେ ଯେଉଁ ମଣିଷଟି ବାହାରକୁ ଆସିଲା, ସେ ବୋଧହୁଏ ସେଇ ମାଇକେଲ୍ ଯାହା ବିଷୟରେ କଥା ଚାଲିଥିଲା। ଭିଡ଼ରେ ମିଶିଯିବା ଭଳି ଚେହେରା। ମଧ୍ୟମ ଉଚ୍ଚତା, ରଙ୍ଗ କଳା। ବୟସ ସଇଁତିରିଶ ଅଠତିରିଶ ଭିତରେ ହେବ।

ଅନୁଚ୍ଚ ସ୍ୱରରେ ତାମିଲ ଭାଷାରେ ରଙ୍ଗନାଥନ୍ ତା' ସାଙ୍ଗରେ କଥାବାର୍ତ୍ତା କରୁଥିଲା। ଶୁଭ୍ରାଂଶୁର ବୁଝିବାର ଉପାୟ ନାହିଁ। କିନ୍ତୁ ମୁହଁର ଭାବ ପଢ଼ିବାରେ କ'ଣ ଅସୁବିଧା ହେଉଥିଲା? ସେ ଜାଣି ପାରୁଥିଲା ଯେ ଲୋକଟି ଯିବାକୁ ଅନିଚ୍ଛୁକ। ଶୁଭ୍ରାଂଶୁର ଶେଷ ଭରସାଟି ଯେମିତି ହାତ ମୁଠିରୁ ଖସି ଯାଉଥିଲା। ନା- ସମ୍ପୂର୍ଣ୍ଣ ଭାବରେ ଅସହାୟ ହୋଇଯିବା ଆଗରୁ ନିଜେ ଥରଟିଏ ଚେଷ୍ଟା କରି ନେବ ସେ। ପଇସା କଥା ତ ନିଶ୍ଚୟ କହିଥିବ ତାକୁ ରଙ୍ଗନାଥନ୍। କିନ୍ତୁ ପଇସାର ଲୋଭ ଦେଖାଇ ଲୋକଟିକୁ ଭଜେଇବା ବୋଧହୁଏ ସମ୍ଭବ ନୁହଁ। ସତ କଥା କହି ଦେଖାଯାଉ।

"ମୁଁ ସତରେ ବଡ଼ ବିପଦରେ ପଡ଼ିଛି। ଘରେ ଗୋଟିଏ ଇମରଜେନ୍‌ସି ହୋଇଛି। ମତେ ଯେମିତି ହେଲେ ବାଙ୍ଗାଲୋର ଯିବାକୁ ହେବ।"

ନରମ ଆଖିରେ ତାକୁ ଚୁଲି ଚାହିଁଲା ମଣିଷଟି। "ମୁଁ ସବୁ ବୁଝୁଛି, ସାର୍। କିନ୍ତୁ ମୁଁ ତିନି ମାସ ହେଲାଣି ଲଙ୍ଗ୍ ଡ଼ିଷ୍ଟାନ୍‌ସ ଯିବା ବନ୍ଦ କରି ଦେଇଛି।"

ଶୁଭ୍ରାଂଶୁ ସ୍ୱରରେ ବିବ୍ରତ ଭାବ ଫୁଟି ଉଠିଲା, "ପରମିଟ୍ ନାହିଁ?"

ଚାହିଁଥିଲେ ମଣିଷଟି ମିଛ କହି ଏଇ ଅପ୍ରୀତିକର ପରିସ୍ଥିତିରୁ ମୁକୁଳି ଯାଇ ପାରିଥାଆନ୍ତା। କିନ୍ତୁ ସେମିତି କିଛି କଲା ନାହିଁ। ସତ କଥା ହିଁ କହିଲା। "ମୋର ପରମିଟ୍ ଅଛି। କିନ୍ତୁ କେତେକ ବ୍ୟକ୍ତିଗତ କାରଣରୁ ମୁଁ ଉଟି ଛାଡ଼ି ବାହାରକୁ ଯାଉନାହିଁ।"

ଶୁଭ୍ରାଂଶୁ ଉଦ୍‌ଭ୍ରାନ୍ତଙ୍କ ଭଳି କହି ପକେଇଲା, ''ଦେଖ ଭାଇ, ମୋ ସ୍ତ୍ରୀର ଯେ କୌଣସି ମୁହୂର୍ତ୍ତରେ ଡ଼େଲିଭରି ହୋଇଯାଇପାରେ। ସେ ନର୍ସିଙ୍ଗ୍ ହୋମ୍‌ରେ ଭର୍ତ୍ତି ହୋଇ ସାରିଛି। ...ଦେଖ, ତୁମେ ମୋତେ ବାଙ୍ଗାଲୋର ପହଞ୍ଚାଇ ଫେରି ଆସିବ। ଉଟି ଯାତ୍ରୀପାଇଁ ଅପେକ୍ଷା କରିବାର ଆବଶ୍ୟକତା ନାହିଁ। ମୁଁ ଯିବା ଆସିବା ଭଡ଼ା ଦେବି।''

ଟଙ୍କା କଥା ଲୋକଟି ଯେମିତି ଶୁଣି ପାରି ନଥିଲା, ''ନର୍ସିଙ୍ଗ୍ ହୋମ୍ ?''

ସତରେ ବଡ଼ ବିବ୍ରତ ହୋଇ ପଡ଼ିଥିଲା ଶୁଭ୍ରାଂଶୁ। ନହେଲେ କ'ଣ ଅଜଣା ଅଶୁଣା ମଣିଷକୁ ଏମିତି ସବୁ କହି ପାରିଥାଆନ୍ତା ? ''ମୁଁ ଆଜି ସକାଳେ ଘର ଛାଡ଼ିବା ବେଳେ କିଛି ନ ଥିଲା। ଅଥଚ ହଠାତ୍ କ'ଣ ଯେ ଅସୁବିଧା ହୋଇଗଲା...।'' ଆଉ ଅଧିକ କିଛି କହି ପାରିଲା ନାହିଁ ସେ। କହିବାର ଆବଶ୍ୟକତା ବି ନ ଥିଲା।

''ଆପଣ ଗାଡ଼ିରେ ବସନ୍ତୁ। ମୁଁ ଘରେ କହି କରି ଆସୁଛି।''

ବାହାରେ ରହିଥିବା ପୁରୁଣା ଧଳା ଆମ୍ବାସାଡ଼ାର୍‌ର କବାଟ ଖୋଲି ଦେଲା ସେ। ଟିକିଏ ମୁଣ୍ଡ ନୁଆଁଇ ନେଇ ଏତେବେଳକୁ କହିଲା, ''ମୋ ନାଁ ଆବ୍ରାହାମ୍ ମାଇକେଲ୍, ସାର୍। ମୋତେ କେଇଟା ମିନିଟ୍ ଦିଅନ୍ତୁ। ମୁଁ ପ୍ରସ୍ତୁତ ହୋଇ ଆସୁଛି।''

ଅଳ୍ପ ସମୟ ଭିତରେ ବାହାରକୁ ଆସିଲା ଆବ୍ରାହାମ୍। ପିନ୍ଧିଥିବା ପୋଷାକ ଉପରେ ଥିଲା ମାଟିଆ ରଙ୍ଗର ସ୍ୱେଟର୍‌ଟିଏ ଆଉ ମୁଣ୍ଡରେ ଗୁଡ଼ା ହୋଇଥିଲା ଗୋଟାଏ ମଫଲର୍। ପଛେ ପଛେ ନାରୀ ଜଣେ। ସମ୍ଭବତଃ ତା' ସ୍ତ୍ରୀ। ତା'ରି ଉଦ୍ଦେଶ୍ୟରେ ହାତ ଟିକିଏ ହଲେଇ ଦେଇ ଛାତିରେ କ୍ରସ୍ ଚିହ୍ନ କରି ଗାଡ଼ି ଷ୍ଟାର୍ଟ କଲା ସେ।

ଶୁଭ୍ରାଂଶୁ ସ୍ୱସ୍ତିର ନିଶ୍ୱାସ ନେଲା। ଏହା ଭିତରେ ବାରଟା ବାଜିଗଲାଣି। ବାଟରେ କିଛି ଅସୁବିଧା ନ ହେଲେ ସେ ସାଢ଼େ ଛଅଟା ସାତଟା ଭିତରେ ନର୍ସିଙ୍ଗ୍ ହୋମ୍‌ରେ ପହଞ୍ଚିଯାଇ ପାରିବ। ଏଥର କେବଳ ପହଞ୍ଚିବା ପାଇଁ ଅପେକ୍ଷା କରିବା କଥା।

ଆବ୍ରାହାମ୍ ଉଟିରୁ ବାହାରି ଆସିଲାଣି। ତା'ର ଗାଡ଼ି ଚଲା ନୀରବ ଭାବରେ ଲକ୍ଷ୍ୟ କରୁଥିଲା ଶୁଭ୍ରାଂଶୁ। ବିନା ସଂଦେହରେ କୁହାଯାଇପାରେ ଯେ ଅତି ଏକ୍ସପର୍ଟ

ଡ୍ରାଇଭର୍। ଅଯଥା ବ୍ୟତିବ୍ୟସ୍ତତା ନାହିଁ, ରକେଟ ଗତିରେ ଗାଡ଼ି ଚଲେଇବାର ଅସ୍ଥିରତା ନାହିଁ। ପ୍ରକୃତ ଲମ୍ବା ରାସ୍ତାର ଡ୍ରାଇଭର୍ ଯେ।

ରାସ୍ତା ଉପରେ ଆଖି ରଖି ଗାଡ଼ି ଚଲାଉ ଚଲାଉ ପାଖରେ ବସିଥିବା ସାହେବଙ୍କୁ କଣେଇ କରି ଟିକିଏ ଦେଖିନେଲା ଆବ୍ରାହାମ୍। କହିଲା, ‘‘ଆପଣ ସାର୍ ଶୋଇ ପଡ଼ନ୍ତୁ। ତା’ହେଲେ ବାଙ୍ଗାଲୋରରେ ପହଞ୍ଚିଲା ବେଳକୁ ଆପଣଙ୍କୁ ଫ୍ରେସ୍ ଲାଗିବ।’’

ଏ ଯେଉଁ ଟେନ୍‌ସନ୍, ସେଥିରେ ପୁଣି ଆଖିକୁ ନିଦ ଆସିବ?

‘‘ଆପଣଙ୍କର ଭୟ ହେଉଛି କି? ମୁଁ କାଳେ ଢୁଳେଇ ପଡ଼ିବି? ଆଦୌ ହେବନି ସେକଥା, ଆପଣ ନିଶ୍ଚିତ ରୁହନ୍ତୁ। ଗତ ବାର ବର୍ଷ ଧରି ଗାଡ଼ି ନେଇ କେଉଁ ଦୂର ଦୂର ଜାଗାକୁ ଯାଇଛି - ବମ୍ବେ, ଗୋଆ, କୋଚିନ୍, ହାଇଦ୍ରାବାଦ୍ - କିଛି ବାକି ନାହିଁ। ଥରେ ଷ୍ଟିଅରିଙ୍ଗ ହୁଇଲ ସାମ୍ନାରେ ବସିଲେ ମୋର ସବୁ କ୍ଳାନ୍ତି ଚାଲିଯାଏ। ଏତେ ଦିନର ଅଭ୍ୟାସ ଯେତେ ଯାହା ହେଲେ...’’

ଶୁଭ୍ରାଂଶୁ କୌତୁହଳଭରା ଦୃଷ୍ଟିରେ ତାକୁ ବୁଲି ଚାହିଁଲା। କହିଲା, ‘‘ସମସ୍ତେ କହନ୍ତି ଲଙ୍ଗ୍ ଡ଼ିଷ୍ଟାନ୍‌ସ ଗାଡ଼ି ଚଲେଇବା ଗୋଟାଏ ନିଶା ଭଳି। ତୁମେ ପୁଣି ଏମିତି ଦୀର୍ଘ ଦିନ ଧରି ଚାରିଆଡ଼େ ବୁଲିଛ। ହଠାତ୍ ସେସବୁ ଛାଡ଼ି ସହର ଭିତରେ ଟ୍ୟାକ୍ସି କାହିଁକି ଚଲାଉଛ? ଯେତେ ଯାହା ହେଲେ ଦୂର ରାସ୍ତା ଗଲେ ପଇସା ବେଶୀ ମିଳେ, ତା’ଛଡ଼ା ଅନ୍ୟାନ୍ୟ ଟିପ୍‌ସ ତ ରହିଛି।’’

ସାମାନ୍ୟ ଚୁପ୍ ରହିଲା ଆବ୍ରାହାମ୍। ତା’ପରେ ହସିଦେଇ କହିଲା, ‘‘ସାର୍, ଜୀବନରେ ପଇସା କ’ଣ ସବୁ କିଛି?’’

ଏମିତି ଗୋଟିଏ କଥା ଆଉ କାହା ମୁହଁରୁ ଶୁଣିଥିଲେ ଶୁଭ୍ରାଂଶୁ ଖୁସୀ ହୋଇଥାଆନ୍ତା, କିନ୍ତୁ ଗାଡ଼ି ଚଲେଇ ପେଟ ପୋଷୁଥିବା ମଣିଷଟିଏ ମୁହଁରୁ ଏ ପ୍ରକାର ଜୀବନତତ୍ତ୍ୱ ଶୁଣି ସେ ଅବାକ ହେଲା। କହିଲା, ‘‘ତା’ ତ ନୁହଁ। କିନ୍ତୁ ଖାଇ ପିଇ ବଞ୍ଚି ରହିବାକୁ ପଇସା ତ ଦରକାର।’’

‘‘ସେତିକି ରୋଜଗାର ମୋର ଉଟି ଭିତରେ ଗାଡ଼ି ଚଳେଇ ହୋଇଯାଏ। ବାପା ଏଇ ଗାଡ଼ି ଖଣ୍ଡିକ କରି ଦେଇ ଯାଇଛନ୍ତି, ତିନି ବଖୁରିଆ ଘରଟିଏ ରଖି ଦେଇଛନ୍ତି। ଦୁଇ ପ୍ରାଣୀ ଖାଇବାକୁ ଆଉ କେତେ ରୋଜଗାର ଦରକାର?’’

‘‘ତୁମେ ଖାଲି ଦୁଇ ଜଣ? ପିଲାପିଲି ନାହାନ୍ତି?’’ କଥାଟା ପଚାରିଦେଇ

ଶୁଭ୍ରାଂଶୁକୁ ଖରାପ ଲାଗିଲା। ଏମିତି କଥା ସଭ୍ୟ ସମାଜରେ କିଏ କାହାକୁ ପଚାରେ ?

କିଛି ସମୟ ଚୁପ୍ ରହିଲା ଆବ୍ରାହାମ୍। ତା'ପରେ ଇତସ୍ତତଃ ଭାବରେ କହିଲା, ''ବାହାଘରର ଏଗାର ବର୍ଷ ପରେ ଶେଷରେ ପ୍ରେଗ୍‌ନାଣ୍ଟ ହୋଇଛି ମୋ ୱାଇଫ୍। ଏତେଦିନ ଆମେ କେବଳ ଆକୁଳ ଭାବରେ ଅପେକ୍ଷା କରି ରହିଥିଲୁ, କେବେ ଆସିବ ସେ ଅପୂର୍ବ ଦିନ। ଏତେ ବର୍ଷ ପରେ ମଦର ମେରୀ ଆମ ପ୍ରାର୍ଥନା ଶୁଣିଛନ୍ତି। ସେଇଥି ପାଇଁ ମୁଁ ଆଦୌ ସ୍ତ୍ରୀକୁ ଏକା ଛାଡ଼ି ଉଠି ବାହାରକୁ ଯାଉନି। ଆଜି ଆପଣଙ୍କର ସେଇ ଏକାଭଳି ପ୍ରବ୍ଲେମ୍ ଶୁଣି ମୋତେ ଲାଗିଲା ମଦର୍ ମୋତେ ପରୀକ୍ଷା କରୁଛନ୍ତି।''

ଏଇଥିପାଇଁ ତେବେ ଲୋକଟି ରାଜି ହୋଇଗଲା !

''କେବେ ଡ଼େଟ୍ ଦେଇଛନ୍ତି ଡ଼ାକ୍ତର ?''

''ବହୁତ ଡ଼େରି ଅଛି। ଆହୁରି ପ୍ରାୟ ଚାରି ମାସ।''

''ସବୁ ନର୍ମାଲ ତ।''

''ଯୀଶୁଙ୍କ କୃପାରୁ ସବୁ ନର୍ମାଲ୍।'' ଆବ୍ରାହାମ୍ ଓଠ ଫାଙ୍କ ଦେଇ ହସ ଝରି ପଡୁଥିଲା।

ସେଇ ହସ ଟିକକ ସଂକ୍ରମିତ ହୋଇ ଆସିଲା ଶୁଭ୍ରାଂଶୁ ଓଠକୁ। ''ଝିଅ ନା ପୁଅ - ଆଜିକାଲି ତ ଆଗରୁ ଜଣା ପଡ଼ି ଯାଉଛି।''

''ନା, ଆମେ ଜାଣିବାକୁ ଚାହିଁନୁ। ଏତେ ବର୍ଷର ଅପେକ୍ଷା ପରେ ଝିଅ ପୁଅର ତଫାତ୍ କୌଣସି ମାନେ ରଖେନି। ନିଜ ରକ୍ତର ସନ୍ତାନଟିଏ ଦରକାର। ବାସ୍...''

ହଠାତ୍ ଉତ୍ସାହିତ ହୋଇ ପଡ଼ିଲା ଆବ୍ରାହାମ୍, ''ସାର୍, ମୋର ଇଚ୍ଛା ଅଛି ଯେ ପୁଅ ହେଲେ ତା' ନାଁ ଦେବି କାର୍ଲ ଆଉ ଝିଅ ହେଲେ ମାର୍ଟିନା। କିନ୍ତୁ ମୋ ସ୍ତ୍ରୀ ଜମା ରାଜି ହେଉନି। ତା'ର ଇଚ୍ଛା ପୁଅ ହେଲେ ତା' ନାଁ ରଖିବ ପ୍ରକାଶ ଆଉ ଝିଅ ହେଲେ ଉଷା।''

ସବୁଗୁଡ଼ାକ ନାମ ଭିତରେ କ'ଣ ଗୋଟିଏ ଜଣାଶୁଣା ଭାବର ଝଲକ ଥିଲା। କିନ୍ତୁ ଠିକ୍ ଧରି ପାରୁ ନ ଥିଲା ଶୁଭ୍ରାଂଶୁ। ''କାର୍ଲ... ମାର୍ଟିନା।'' ପ୍ରାୟ ଅନେକଟା ନିଜକୁ ନିଜେ କହିବା ଭଳି ସେ ଗୁଣୁଗୁଣେଇଲା।

''ସାର୍, ଆପଣଙ୍କର ମଧ୍ୟ ନାଁ ଦୁଇଟି ପସନ୍ଦ ହୋଇଛି!'' ଆବ୍ରାହାମ୍ ସ୍ୱରରେ ଖୁସି ଝଲମଲ କରିଲା। ''ଜାଣନ୍ତି ସାର୍, ମୁଁ ସ୍କୁଲରେ ପଢ଼ିବା ବେଳେ ମୋର ଟେନିସ୍ ପ୍ରତି ବହୁତ ଦୁର୍ବଳତା ଥିଲା। ସେତେବେଳେ ପଇସାପତ୍ର, ଦାରିଦ୍ର୍ୟ, ଅଭାବ - ଏସବୁ ବୁଝିବା ଭଳି ବୟସ, ବୁଦ୍ଧି ହୋଇ ନ ଥିଲା। ଦିନା କେତେ ମୋ ବାପା ମୋତେ ଟେନିସ ଶିଖାଇବା ବ୍ୟବସ୍ଥା କରିଥିଲେ। କିନ୍ତୁ ବେଶୀ ଦିନ ପାଇଁ ସେକଥା ସମ୍ଭବ ହେଲା ନାହିଁ। ରଡ୍‌ନି ମାର୍ଶ, ଜନ୍ ବର୍ଗଙ୍କ ଭଳି ଟେନିସ୍ ପ୍ଲେଆର୍ ହେବାର ଆଶାକୁ ବିସର୍ଜନ କରିବାକୁ ହେଲା। ସେତିକିବେଳେ ଆମ ସ୍କୁଲର ଖେଳ ଶିକ୍ଷକ ମୋତେ ଜବରଦସ୍ତି ହାଇ ଜମ୍ପ, ଲଙ୍ଗ୍ ଜମ୍ପ, ଚାରି ଶହ ମିଟର ହର୍ଡ଼ଲ୍‌ସ - ଏସବୁ କରାଇଲେ। ବାଧ୍ୟରେ ପଡ଼ି କରୁ କରୁ ଆଥଲେଟିକ୍‌ସ ପ୍ରତି ମୋର ଆକର୍ଷଣ ହୋଇଗଲା। ଏବେକା ଆଥଲେଟ୍‌ଙ୍କ ଭିତରେ କାର୍ଲ ଲୁଇସ୍ ଭଳି ଆଉ କିଏ ଅଛି କୁହନ୍ତୁ? ସେଥିପାଇଁ ତାଙ୍କରି ନାଁକୁ ମୁଁ ବାଛିଛି।''

''ଆଉ ମାର୍ଟିନା?''

''ମାର୍ଟିନା ନାଭ୍ରାତିଲୋଭା। ମୋର ସବୁଠାରୁ ପ୍ରିୟ ଟେନିସ୍ ଖେଳାଳୀ। ଏବେ ସିନା ବୟସ ହୋଇଗଲା ବୋଲି ଜର୍ମାନୀର ଷ୍ଟେଫି ଗ୍ରାଫ୍ ତାଙ୍କୁ ହରାଇ ଦେଲା। ନ ହେଲେ କାହାର ସାଧ୍ୟ ଥିଲା?'' ଆବ୍ରାହାମ୍‌ର ଅଜାଣତରେ ତା' ସ୍ୱର ଉଚ୍ଚ ହୋଇ ଯାଇଛି।

ଏତେବେଳକୁ ଶୁଭ୍ରାଂଶୁ ମନରେ ଥିବା ଗୋଳକଧନ୍ଦାର କିଛି ସମାଧାନ ହେଲା। ''କିନ୍ତୁ ପ୍ରକାଶ... ଉଷା... ଏଭଳି ନାଁ ତୁମ ସ୍ତ୍ରୀ ବାଛିଛନ୍ତି କାହିଁକି? ସେ କ'ଣ ହିନ୍ଦୁ?''

''ନା ସାର୍, ଏଲିଜାବେଥ୍ ମୋ ଭଳି କ୍ୟାଥୋଲିକ୍। ସେ ମଧ୍ୟ ସ୍କୁଲ ଦିନରେ ଭଲ ଖେଳାଖେଳି କରୁଥିଲା। ତାଙ୍କ ସ୍କୁଲର ଚମ୍ପିଆନ ହୋଇଥିଲା ଗୋଟିଏ ବର୍ଷ। ହେଲେ ତା'ର ବିଦେଶୀ ଖେଳାଳୀଙ୍କ ପ୍ରତି ବେଶୀ ଆକର୍ଷଣ ନାହିଁ। ତା'ର ଇଚ୍ଛା ପୁଅ ହେଲେ ସେ ହେବ ପ୍ରକାଶ ପାଡୁକୋନ୍‌ଙ୍କ ଭଳି ବ୍ୟାଡ଼୍‌ମିଣ୍ଟନ୍ ଖେଳାଳୀ। ଆଉ ଝିଅ ହେଲେ ସେ ହେବ ପି.ଟି.ଉଷାଙ୍କ ଭଳି ଆଥ୍‌ଲେଟ୍।''

ଶୁଭ୍ରାଂଶୁ ହସିଲା। ଦେଖାଯାଉ ସ୍ୱାମୀ ସ୍ତ୍ରୀ ଭିତରେ କିଏ ଜିତୁଛି। କାହାର

ବଛା ନାଁ ଦିଆଯାଉଛି ପିଲାକୁ।

''କ'ଣ ଖେଳ ଶିଖାଇବ ତୁମ ପିଲାକୁ ?''

''ଖେଳ ତ ଖେଳ। ଯାହା ସେ ଚାହିଁବ। ମିଲ୍‌ଖା ସିଂ ପୁଅ କ'ଣ ତା' ଭଳି ଆଥ୍‌ଲେଟ୍ ହେଲା ? ସେ ଏବେ ଗଲ୍‌ଫ ଖେଳରେ ନାଁ କରୁଛି। ତେଣୁ ମୁଁ କେବେ ବାଧ୍ୟ କରିବିନି। ଭଲ ଖେଳିଲେ ସେତିକି ଯଥେଷ୍ଟ।'' ଖୁବ୍ ସିରିୟସ୍ ଭାବରେ କହିଚାଲିଥିଲା ଆବ୍ରାହାମ୍।

ଶୁଭ୍ରାଂଶୁ ଅବାକ୍ ଭାବରେ ଦେଖୁଥିଲା ଏଇ ଖେଳ ପାଗଳା ମଣିଷକୁ। ଭଗବାନଙ୍କୁ ବି ଧନ୍ୟ କହିବ। ଠିକ୍ ଖାପ୍ ଖାଇଲା ଭଳି ଜୁଟାଇ ଦେଇଛନ୍ତି ସ୍ପୀଟିଏ।

ଆବ୍ରାହାମ୍ ଉତ୍ତର ପାଇବା ପାଇଁ ଅପେକ୍ଷା ନ କରି ଗପି ଚାଲିଛି। କାହା ସାଙ୍ଗରେ କାହାର ତାଳ ମେଳ ନ ଥିବା ଗପ। ଜନ୍ ବର୍ଗର ଟେନିସ୍‌ରୁ ଆରମ୍ଭ କରି ଜେସି ଓଓ୍ବେନ୍‌ସର ସଫଳତାର କାହାଣୀ। ପୁଣି କାହାଣୀର ମୋଡ଼ ବୁଲି ଯାଇ ପହଞ୍ଚି ଯାଉଛି ମ୍ୟାଜିକ୍ ଜନ୍‌ସନ୍ ଓ ମାଇକେଲ୍ ଜୋର୍ଡ଼ାନ ପାଖରେ। ଏସବୁ କିଛି କିଛି ଶୁଭ୍ରାଂଶୁର ଜଣା, ପୁଣି କିଛି ଅଜଣା। ଆବ୍ରାହାମ୍‌ର ବକରବକର ଶୁଣୁଶୁଣୁ କେତେବେଳେ ଆଖି ଲାଗିଯାଇଛି ତା'ର।

''ସାର୍, ବାଙ୍ଗାଲୋର୍ ଆସିଗଲା।''

ବାଙ୍ଗାଲୋର୍ ! ଏକା ଟାଣରେ ଏତେଗୁଡ଼ାଏ ସମୟ ଶୋଇଗଲା ସେ ? ଆଶ୍ଚର୍ଯ୍ୟ ହେବାର ବା କ'ଣ ଅଛି। କ୍ଲାନ୍ତ ତ କମ୍ ହୋଇ ନ ଥିଲା !

''ଏଥର ବାଟ କହନ୍ତୁ।''

''ହଁ।'' ସିଧା ହୋଇ ବସି ବାହାରକୁ ଚାହିଁଲା ଶୁଭ୍ରାଂଶୁ। ''ଏଇଠୁ ବାଁ ପଟେ ଯିବା। ଆଉ ଆଗରେ ଯୋଉ ଓଭରବ୍ରିଜ୍ ଦେଖା ଯାଉଛି, ସେଇଟା ପାର ହେଲେ ରାଇଟ୍...।''

ନର୍ସିଙ୍ଗ୍ ହୋମ୍ ପାଖରେ ପହଞ୍ଚିବା ବେଳକୁ ସକାଳ ହୋଇ ଆସୁଛି। ରାସ୍ତାଘାଟରେ ସେପର୍ଯ୍ୟନ୍ତ ଭଲ କରି ଲୋକବାକ ଚଳପ୍ରଚଳ ଆରମ୍ଭ ହୋଇନି। ଗାଡ଼ିରୁ ଓହ୍ଲାଇ ରିସେପ୍‌ସନିଷ୍ଟ ପାଖକୁ ଶୁଭ୍ରାଂଶୁ ଧାଇଁଗଲା। ଥ୍ୟାଙ୍କ ଗଡ୍, ଏହା ଭିତରେ ଡ଼େଲିଭରି ହୋଇଯାଇନି। ଭୋର ପାଞ୍ଚଟା ବେଳକୁ ସୁମିତାର ଅଳ୍ପ ଅଳ୍ପ ପେନ୍ ଆରମ୍ଭ ହୋଇଛି। କିନ୍ତୁ ଦୁଇ ଅଢ଼େଇ ଘଣ୍ଟା ଆଗରୁ କିଛି ହେବନି। ଡ଼ାକ୍ତର ଆସି

ପହଞ୍ଚିବେ ସାତଟା ସାଢ଼େ ସାତଟା ବେଳକୁ।

ସ୍ୱସ୍ତିର ନିଶ୍ୱାସ ନେଇ ଶୁଭ୍ରାଂଶୁ ଆବ୍ରାହାମ୍‌ର ଭଡ଼ା ଛିଣ୍ଡାଇ ଦେଲା। ତା' କାନ୍ଧରେ ହାତ ପକାଇ କହିଲା, "ଥ୍ୟାଙ୍କ୍ ୟୁ। ଥ୍ୟାଙ୍କ୍ ୟୁ ସୋ ମଚ୍। ତୁମେ ବହୁତ ବଡ଼ ସାହାଯ୍ୟ କରିଛ।"

ଆବ୍ରାହାମ୍ କିଛିଟା ଲଜ୍ଜା ଓ କିଛିଟା ଆନଂଦରେ କହିଲା, "ନଟ୍ ଆଟ୍ ଅଲ୍ ସାର୍, ନଟ୍ ଆଟ୍ ଅଲ୍। ଆପଣଙ୍କର ଏମିତି ଗୋଟିଏ ସମୟରେ ଯେ ମୁଁ କାମରେ ଆସି ପାରିଲି ସେଇଟା ହିଁ ମୋ ପାଇଁ ବଡ଼ କଥା। ନହେଲେ ଯୀଶୁ ମତେ କେବେ କ୍ଷମା ଦେଇ ନ ଥାଆନ୍ତେ।"

"ଓ.କେ. ଆବ୍ରାହାମ୍, ତୁମେ ଏଥର ଯାଅ। ପୁଣି କେବେ ଉଟି ଗଲେ ତୁମ ଘରକୁ ନିଶ୍ଚୟ ଯିବି। କାର୍ଲ, ପ୍ରକାଶ, ମାର୍ଟିନା ବା ଉଷା - ଯିଏ ଆସିଥିବେ ତାଙ୍କୁ ଟିକିଏ ଦେଖି ଆସିବି।"

ଶୁଭ୍ରାଂଶୁ କିନ୍ତୁ ଆଉ ଦୁଇଟା ବର୍ଷ ଉଟି ଯାଇ ପାରିଲା ନାହିଁ। ଯିବାର କୌଣସି ଆବଶ୍ୟକତା ହିଁ ହେଲା ନାହିଁ। ଝିଅ ତ ନୁହଁ, ଯେମିତି ଲକ୍ଷ୍ମୀ ବିରାଜିଲେ ତା' ଘରେ। ଝିଅ ଜନ୍ମ ପରେ ପରେ ହିଁ ତା'ର ପ୍ରମୋସନ୍ ହୋଇଗଲା। ତା'ପରଠୁଁ ଛୋଟକାଟିଆ କନ୍‌ଫରେନ୍‌ସରେ ଭାଗ ନେବାର ଦାୟିତ୍ୱ ପଡ଼ିଲା ତା'ର ଜୁନିଅର୍ ଉପରେ। ଏଥର ଶୁଭ୍ରାଂଶୁକୁ ଯିବାକୁ ପଡ଼େ ଦିଲ୍ଲୀ ବା କଲିକତା। ଏବଂ ବର୍ଷରେ ଥରେ ଦୁଇଥର ବିଦେଶ। ଏମିତି ବ୍ୟସ୍ତ ଜୀବନରୁ ସମୟ କାଢ଼ି ନେଇ କୁଆଡ଼େ ବୁଲି ଯାଇଥାଆନ୍ତା ସେ ?

ଦିନେ କିନ୍ତୁ ସୁମିତା ଜିଦ୍‌ଧରି ବସିଲା। ଘରେ ପ୍ରାୟ ଏକା ଏକା ପିଲା ସମ୍ଭାଳି ସେ କ୍ଲାନ୍ତ। ତା'ଛଡ଼ା ବାପଘର ଛଡ଼ା ଅନ୍ୟ କିଛି ନୂଆ ଜାଗା ଦେଖିବା ତା' ପକ୍ଷରେ ଏହା ଭିତରେ ସମ୍ଭବ ହୋଇନାହିଁ। 'ଏଥର ଶୁଭ୍ରାଂଶୁକୁ କିଛି କରିବାକୁ ହେବ। ଯେମିତି ହେଲେ।

"ଯିବା କୁଆଡ଼େ ?"

"ସାଉଥ୍‌ରେ ଏତେ ବର୍ଷ ରହିଲେଣି। ଅଥଚ କିଛି ଜାଣ ଦେଖା ହୋଇନାହିଁ। ଆଉ ତୁମେ ପଚାରୁଛ ଯିବା କୁଆଡ଼େ ?"

"ମହୀଶୂର ତ ଯାଇଛ...।"

''ଥରେ ଗଲେ କ'ଣ ଆଉ ଥରେ ଯିବାକୁ ମନା ? ମୁଁ ଆଗ ଯିବି ମହୀଶୂର। ତା'ପରେ ଦୁଇ ଦିନ ମଦୁମଲ୍ଲାଇର ଅଭୟାରଣ୍ୟରେ ରହି ଯିବି ଉଟି। ଉଟିରେ ତିନି ଚାରି ଦିନ ରହି କୋଏମ୍ବାଟୁର୍ ଯାଇ ମେଞ୍ଚେ ଶାଢ଼ି କିଣି ମୁଁ ଫେରିବି ବାଙ୍ଗାଲୋର।''

''ବାବାରେ ବାବା। ଯେ ତ ରୀତିମତ କଣ୍ଡକ୍‌ଟେଡ୍ ଟୁର୍।''

''ହଉ ପଛକେ। ତୁମକୁ ଛୁଟି ନେଇ ଯିବାକୁ ହେବ। ଅରୁଣର ବାର ତାରିଖ ସ୍କୁଲ୍ ଛୁଟି ହେଉଛି, ସେଇ ଦିନ ବାହାରିଯିବା। ନହେଲେ ତା' ପର ଦିନ। ମୁଁ ଏଥର କିଛି ଶୁଣିବି ନାହିଁ।''

ସୁମିତାର କଥା ଶେଷରେ ରହିଲା। ଶୁଭ୍ରାଂଶୁ ଛୁଟି ନେଇ ନୂଆ ମାରୁତି ଗାଡ଼ିରେ ବାହାରି ପଡ଼ିଲା। ମହୀଶୂର, ମଦୁମଲ୍ଲାଇରେ ଦୁଇ ଦୁଇ ଦିନ ରହି ଉଟିରେ ଯେଉଁଦିନ ସେମାନେ ପହଞ୍ଚିଲେ, ସେଦିନ ଖାଲି ବର୍ଷା। ଚାରିଆଡ଼େ ପଚ ପଚ। ଏତେ ଭିତରେ ବି ଯୁଆଡ଼େ ଚାହିଁବ ଟୁରିଷ୍ଟ ଭିଡ଼। ଦୁଇଟା ବର୍ଷ ଭିତରେ ଶୁଭ୍ରାଂଶୁ ଦେଖୁଥିଲା କେତେ ବେଶୀ ଅବନତି ଘଟିଯାଇଛି ସହରର।

ଉଟିରେ ତିନି ଦିନ ସେମାନଙ୍କର ରହିବା କଥା। ହେଲେ କୋଉ ଗୋଟାଏ ଦିନ ବି ପାଗ ଭଲ ହେଲା ନାହିଁ। ସେଇ ବର୍ଷା ଭିତରେ ଭିତରେ ହିଁ ସେମାନେ ଆଖପାଖର ଜାଗା ସବୁ ବୁଲି ଦେଖିନେଲେ। ଦିନେ କୁନୁର୍ ବି ବୁଲି ଆସିଲେ।

ପରଦିନ ସକାଳୁ ଉଟି ଛାଡ଼ିବା କଥା। ରୁମ୍ ସର୍ଭିସ୍‌ରେ ଚାହା ମଗେଇ ଚାରିଟା ବେଳେ ଚାହା ପିଉ ପିଉ ଶୁଭ୍ରାଂଶୁ କୋଏମ୍ବାଟୁର୍ ଯିବା ରାସ୍ତାର ମ୍ୟାପ୍ ଦେଖୁଥିଲା। ଆଉ ଝିଅକୁ କ୍ଷୀର ପିଆଉ ପିଆଉ ସୁମିତା ମନେ ମନେ ଭାବି ନେଉ ଥିଲା ପରଦିନ କୋଏମ୍ବାଟୁର୍‌ରୁ କି କି ଶାଢ଼ି କିଣିବ।

ହଠାତ୍ ଉଠି ଆସିଲା ଶୁଭ୍ରାଂଶୁ। ''ଆମେ ତ ଗୋଟିଏ ଜାଗାକୁ ଯିବା କଥା ଏକଦମ୍ ଭୁଲି ଯାଇଛେ।''

''କେଉଁଠିକି ?''

''ତୁମକୁ କହି ନ ଥିଲି ସେ ଆବ୍ରାହାମ୍ ମାଇକେଲ୍ କଥା। ଗିନି ଡ଼େଲିଭରି ବେଳେ ଯିଏ ମତେ ଉଟିରୁ ଆଣିଥିଲା।''

''ହଁ ହଁ।'' ସୁମିତାର ସବୁ ମନେ ପଡ଼ିଗଲା, ''ସେଇ ଯୋଉ ଖେଳ-ପାଗଳ ସ୍ୱାମୀ ସ୍ତ୍ରୀ ?''

"ହଁ। ମୁଁ ତାକୁ କହିଥିଲି ଯେ କେବେ ଉଟି ଆସିଲେ ତା' ଘରକୁ ନିଶ୍ଚୟ ଦିନେ ଯିବି। ତା' ପିଲାକୁ ଦେଖି ଆସିବି। ...ଯିବା ?"

"ହଁ, ଚାଲ। ...ଯେ ମହାରାଣୀ ଟିକିଏ କ୍ଷୀର ପିଇ ନିଅନ୍ତୁ, ତା'ପରେ ବାହାରିବା। ...ଗଲାବେଳେ ଟିକିଏ ବଜାର ହୋଇକରି ନେବା। ମୁଁ ତା' ପିଲା ପାଇଁ କ'ଣ ଗୋଟାଏ କିଣି ନେବି।"

କଲେକ୍ଟୋରେଟ୍ ଅଫିସ ପାଖ ଗୋଟିଏ ଖେଳଣା ଦୋକାନ ସାମ୍ନାରେ ଗାଡ଼ି ଅଟକେଇଲା ଶୁଭ୍ରାଂଶୁ। ଚଟ୍ କରି ଭିତରକୁ ଯାଇ ଦୁଇଟା ବଡ଼ ପ୍ୟାକେଟ୍ ସୁମିତା ନେଇ ଆସିଲା।

"ଏତେ ଜଲ୍‌ଦି ! କ'ଣ କିଣିଲ କି ?"

ସୁମିତା ହସିଲା। "ଏମିତି ଲୋକଙ୍କ ପିଲାଙ୍କ ପାଇଁ ଜିନିଷ କିଣିବା ବେଳେ କ'ଣ ଭାବିବାକୁ ସମୟ ଲାଗେ ! ...ଗୋଟିଏ ଛୋଟ ବ୍ୟାଡ୍‌ମିଣ୍ଟନ୍ ରାକେଟ୍ ଓ ସଟଲ୍ କକ୍, ହଳେ ଖେଳ ଜୋତା ଆଉ ଗୋଟିଏ ବଲ୍। ...ହେବନି ?"

ସ୍ତ୍ରୀ ମୁହଁକୁ ଚାହିଁ ହଠାତ୍ ଜୋରରେ ହସିବାକୁ ଲାଗିଲା ଶୁଭ୍ରାଂଶୁ। "ତୁମକୁ ଧନ୍ୟ କହିବ, ସୁମିତା। ପିଲାଟାର ବୟସ ଏବେ ଦେଢ଼ ବର୍ଷ ହୋଇଥିବ କି ନାହିଁ, ଅଥଚ ତୁମେ ତା' ପାଇଁ ଏସବୁ ଜିନିଷ କିଣି ଆଣିଲ ?"

"ଓହୋ, ପରେ ତ ବ୍ୟବହାର କରିପାରିବ ପିଲାଟା। ତା' ବାପା ମା' ଯଦି ତା' ଜନ୍ମ ଆଗରୁ ଏତେ ପରିକଳ୍ପନା କରି ପାରିଲେ, ତେବେ ବ୍ୟାଡ୍‌ମିଣ୍ଟନ୍ ରାକେଟ୍ ଓ ଜୋତା କିଣି ମୁଁ ଏମିତି କି ଭୁଲ କଲି ?"

"ନା ନା ଭୁଲ କାହିଁକି କରିବ ? ଭଲ ହିଁ କଲ।"

ସ୍ତ୍ରୀ ପଛରେ ଆଉ ନ ଲାଗି ଶୁଭ୍ରାଂଶୁ ଘର ଖୋଜିବାରେ ଲାଗିଲା। ଦୁଇ ବର୍ଷ ତଳେ ରାତି ଦେରିରେ ଯାହା ଥରେ ଯାଇଥିଲା ସେ। ଏମିତିରେ ଠିକଣା ଅଛି। ତଥାପି...। ଶେଷରେ ବେଶ୍ କିଛି ସମୟର ଖୋଜା ଖୋଜି ପରେ ଘର ମିଳିଲା। ସେଇ ଫାଟକ ନ ଥିବା ଘର। କିନ୍ତୁ ଘର ସାମ୍ନାରେ ଆମ୍ବାସାଡ଼ାର୍ ଗାଡ଼ିଟା ନ ଥିଲା।

"ଗାଡ଼ି ନେଇ ଯାଇଛି ନା କ'ଣ ଲୋକଟା। ମୁଁ ପ୍ରଥମେ ଦେଖେ।" ଶୁଭ୍ରାଂଶୁ ଓହ୍ଲେଇ ପଡ଼ିଲା। ଜଣେ ସଂପୂର୍ଣ୍ଣ ଅପରିଚିତ ଲୋକ ଘର କବାଟ ଖୋଲିଲେ। ଶୁଭ୍ରାଂଶୁ ପ୍ରଶ୍ନର ଉତ୍ତରରେ କହିଲେ, "ଆବ୍ରାହାମ୍ ତ ଆଉ ଏଠି

ରହୁ ନାହିଁ। ମୋତେ ତା’ ଘରଟା ବିକ୍ରି କରି ଦେଇଛି। ଟିକିଏ ରୁହନ୍ତୁ। ମୁଁ ତା’ ଘର ଠିକଣା ଆପଣଙ୍କୁ ଦେଉଛି।’’

ଆଶ୍ଚର୍ଯ୍ୟ! ଘର ବିକ୍ରି କରି ଦେଇଛି? କ’ଣ ଏମିତି ହୋଇଗଲା ଏହା ଭିତରେ?

ହାତରେ ଠିକଣାଟା ଧରି ଶୁଭ୍ରାଂଶୁ ଗାଡ଼ି ଷ୍ଟାର୍ଟ କଲା। କେଇ ଜଣଙ୍କୁ ପଚାରି ସେ ଯେତେବେଳେ ଆବ୍ରାହାମ୍‌ର ଘର ପାଖରେ ପହଞ୍ଚିଲା, ସେତେବେଳକୁ ଅଂଧାର ହୋଇ ସାରିଥିଲା। ତଥାପି ସେଇ ଅଂଧାର ଭିତରେ ଅଞ୍ଚଳଟିର ପାରିପାର୍ଶ୍ୱିକ ଅବସ୍ଥା ଲକ୍ଷ୍ୟ କରିବାକୁ ଅସୁବିଧା ହେଲା ନାହିଁ ଶୁଭ୍ରାଂଶୁର। ଏଇମିତି ଭଙ୍ଗା ଘରେ ରହୁଛି ଏବେ ଲୋକଟି? ଗାଡ଼ିରୁ ଓହ୍ଲେଇ ଯିବ କି ନାହିଁ ଭାବି ହେଉଥିଲା ସେ। ହଠାତ୍ ଘରର କବାଟ ଖୋଲିଗଲା। ଭିତରୁ ବାହାରି ଆସିଲା ବୁଢ଼ାଳିଆ ମଣିଷ ଜଣେ। ମୁଣ୍ଡରେ କଞ୍ଚା ପାଚିଲା ବାଳ। ପିଠି ବଙ୍କି ଯାଇଛି।

‘‘କାହାକୁ ଖୋଜୁଛନ୍ତି?’’

‘‘ଆବ୍ରାହାମ୍ ମାଇକେଲ୍...।’’

‘‘ଆଜ୍ଞା ମୁଁ ଆବ୍ରାହାମ୍। କ’ଣ ଦରକାର ଥିଲା କି?’’

ଶୁଭ୍ରାଂଶୁ ନିର୍ବାକ। ଦୁଇ ବର୍ଷ ଭିତରେ ଯେ ପୂରାପୂରି ବଦଳି ଯାଇଛି ମଣିଷଟି। ନିଶ୍ଚୟ ଅସୁସ୍ଥ ହୋଇ ପଡ଼ିଥିଲା ଏହା ଭିତରେ। ତାକୁ ଏବେ କ’ଣ କହି ନିଜର ପରିଚୟ ଦେବ ସେ? ପୁରୁଣା କଥାକୁ ମନେ ରଖି ଏମିତି ଚାଲି ଆସିବା ବୋଧହୁଏ ଉଚିତ ହୋଇନାହିଁ।

‘‘ଆପଣ ଦାସ୍ ସାହେବ ନା?’’ ଆବ୍ରାହାମ୍ ନିରିଖେଇ ଦେଖୁ ଦେଖୁ ଚିହ୍ନି ପକେଇଛି ଶୁଭ୍ରାଂଶୁକୁ।

‘‘ହଁ। କହିଥିଲି ନା ଉଟି ଆସିଲେ ମୁଁ ନିଶ୍ଚୟ ଥରେ ତୁମକୁ ଆଉ ତୁମ ପିଲାକୁ ଦେଖିବାକୁ ଆସିବି। ଦେଖ, ଠିକ୍ କଥା ରଖିଛି। ମୋ ସାଙ୍ଗରେ ମୋ ଫ୍ୟାମିଲି ମଧ୍ୟ ଆସିଛନ୍ତି।’’

ଆବ୍ରାହାମ୍ କିଛି ସମୟ ଚୁପ ହୋଇଗଲା। ବୋଧହୁଏ ଭାବୁଥିଲା, ତା’ ଘର ଭିତରକୁ ଏମାନଙ୍କୁ ଡ଼ାକିବ କେମିତି।

ଶୁଭ୍ରାଂଶୁ ଗାଡ଼ି ଭିତରୁ ଓହ୍ଲେଇ ପଡ଼ିଛି। ତା’ ପଛେ ପଛେ ସୁମିତା,

ଅରୁଣ ଓ ଗିନି।

"ଆସନ୍ତୁ ଭିତରକୁ।"

ମୁଣ୍ଡ ନୁଆଁଇ କବାଟ ଭିତରେ ପଶୁ ପଶୁ ସୁମିତା ଫିସ୍ ଫିସ୍ କରି କହିଲା, "ଇସ୍, ଖେଳଣା ପ୍ୟାକେଟ୍‌ଟା ଗାଡ଼ିରେ ରହିଗଲା।"

"ହଉ। ମୁଁ ଟିକିଏ ପରେ ଯାଇ ନେଇ ଆସିବି।" ତାକୁ ଆଶ୍ୱାସନା ଦେଲା ଶୁଭ୍ରାଂଶୁ।

"ଆଚ୍ଛା ଆବ୍ରାହାମ୍, ତୁମର ପୁଅ ନା ଝିଅ ?"

"ଝିଅ।"

"ଭେରି ଗୁଡ୍। ତା'ହେଲେ କି ନାଁ ରଖିଲ ? ମାର୍ଟିନା ନା ଉଷା ?"

"ସାର୍ !!" ହଠାତ୍ ଜୋରରେ ଚମକି ପଡ଼ିଲା ସେ।

"ଆରେ ମୋର ସବୁ ମନେ ଅଛି।" ହସି ହସି ଶୁଭ୍ରାଂଶୁ କହିଲା, "ଖାଲି ଜାଣିବାକୁ ଚାହୁଁଛି କିଏ ଜିତିଲା। ତୁମେ ନା ତୁମ ସ୍ତ୍ରୀ ?"

ଛାତି ଥରାଇ ନିଶ୍ୱାସ ନେଲା ଆବ୍ରାହାମ୍। ଶୁଭ୍ରାଂଶୁ କଥାର କୌଣସି ଉତ୍ତର ନ ଦେଇ ନୀରବ ଭାବରେ ଭିତରକୁ ଯାଇ ଛୋଟ ପିଲାଟିକୁ କୋଳେଇ ନେଇ ଆସିଲା ସେ। ଏଇ.. ଏଇ ଝିଅ ଆବ୍ରାହାମ୍‌ର !! ପିଲାଟା ଦେହରେ ଯେମିତି ପଳେ ମାଂସ ନାହିଁ। ଶେତାଳିଆ ଚେହେରା। ଆଉ... ଆଣ୍ଠୁ ତଳକୁ ଗୋଡ଼ ଦୁଇଟା ଅସମ୍ଭବ ଭାବରେ ସରୁ।

"ଏଇ ଆମ ଝିଅ ମେରୀ।"

"କ'ଣ ହୋଇଛି ତା'ର ?" ଶୁଭ୍ରାଂଶୁ ଖୁବ୍ ଧୀରେ ପଚାରିଲା।

"କନ୍‌ଜେନିଟାଲ୍ ପ୍ରବ୍ଲେମ୍... ଡାକ୍ତର କହିଲେ କୌଣସି ଚାନ୍ସ ନାହିଁ। ଚାରିଆଡ଼େ ଦେଖାଇଲୁ। ଶେଷରେ ବମ୍ବେର ଜଣେ ଡ଼ାକ୍ତର ଭରସା ଦେଇଛନ୍ତି। କହିଛନ୍ତି ଯେ ଅପରେସନ୍ କଲେ ଅନ୍ତତଃ ଛୋଟେଇ ଛୋଟେଇ ସେ ଚାଲି ପାରିବ। ନିଜ କାମ ନିଜେ କରିପାରିବ। ବିଛଣାରେ କେବଳ ପଡ଼ି ରହିବାକୁ ହେବ ନାହିଁ ତାକୁ। ସେଥିପାଇଁ ଆସନ୍ତା ସୋମବାର ତାକୁ ନେଇ କରି ବମ୍ବେ ଯାଉଛୁ।"

ମୁଣ୍ଡ ତଳକୁ ପୋତିଦେଲା ଆବ୍ରାହାମ୍। କିଛି ସମୟ ସେଇମିତି ବସିବା ପରେ ହଠାତ୍ ହାହାକାର ଭରା ସ୍ୱରରେ କହି ପକେଇଲା, "ଆମେ ଦୁଇ ଜଣଯାକ ହାରିଗଲୁ, ସାର୍।" ▯▯

# ଅଧୀଶ୍ୱରୀ

ଶନି ରବି ଦୁଇ ଦିନକୁ ଛାଡିଦେଲେ ସବୁଦିନ ସେଇ ଏକା ରୁଟୀନ୍। ସକାଳ ଠିକ୍ ସାଢେ ସାତଟା ବେଳକୁ ଆଗ ବାହାରି ଯାଆନ୍ତି ବବି ଓ ପାମି। ଆଠ ବର୍ଷର ବବି ଘୂରି ଘୂରି ସମସ୍ତଙ୍କୁ ଘେରାଏ 'ବାଏ', 'ସି ୟୁ' ନ କହିଲେ ଘର ବାହାରେ ପାଦ ଦେଇ ପାରେ ନାହିଁ। ତେବେ ସୁପ୍ରଭାଙ୍କ ପାଇଁ ଅଧିକ କିଛି। ତାଙ୍କୁ ଦୁଇ ହାତରେ ଜାବୁଡି ଧରି ଦୁଇ ଗାଲରେ ଗେହ୍ଲା କରି ଦେଇ କହେ, ''ସି ୟୁ ଆଟ୍ ଥ୍ରି, ଆଈ।''

ଅଭ୍ୟସ୍ତ ଭାବରେ ସୁପ୍ରଭାଙ୍କ ପାଟିରୁ ଖସି ଆସେ- 'ସି ୟୁ'।

ଚଉଦ ବର୍ଷର ପାମି କିନ୍ତୁ ବେଶୀ କଥା କହେ ନାହିଁ। କେବଳ ଭଦ୍ରାମୀରେ 'ବାଏ ଏଭ୍ରିବଡି' କହି ଦେଇ ସେ ବଡ ବଡ ପାଦ ପକାଇ ବାହାରକୁ ଚାଲିଯାଏ। ନହେଲେ ଯେ ପୁଣି ବବି ସାଙ୍ଗରେ ଚାଲିବାକୁ ପଡିବ। ଇସ୍- ତା'ପରେ ସାଙ୍ଗମାନଙ୍କ ଥଟ୍ଟାରେ ସେ କ'ଣ ମୁହଁ ଟେକି ପାରିବ ?

''ଟେକିଙ୍ଗ୍ କେଆର୍ ଅଫ୍ ୟୋର୍ କିଡ୍ ବ୍ରଦର୍ ?''

''ଓ ପାମି, ୟୁ ଆର୍ ସୋ ଲଭିଙ୍ଗ୍ !''

ଆଉ ତା'ପରେ ହି ହି ହସ।

ବରଂ ଶୀଘ୍ର ଶୀଘ୍ର ଚାଲିଗଲେ ରକ୍ଷା। ଘରୁ ତ ସ୍କୁଲ୍ ମାତ୍ର ଦଶମିନିଟ୍‌ର ରାସ୍ତା। ବବି ଠିକ୍ ପାଇ ପାରିବ। ପଛରୁ ସୁପ୍ରଭା ପାଟି କରନ୍ତି, ''ଆରେ ମା' ପାମି, ଭାଇକୁ ସାଙ୍ଗରେ ନେଇ କରି ଯାଆ।''

କିଏ ଶୁଣେ କାହା କଥା ?

ତରବର ହୋଇ ଗରମ କଳାକଫିଗୁଡାକ ଗିଳି ପକାଉ ପକାଉ ସୁରୁଚି କହେ, ''କାହିଁକି ମା' ତୁମେ ତା' ପଛରେ ପଡିଛ? ଟିନ୍ ଏଜର୍। ପଦେ ଭଲ କଥା କହିଲେ ରାଗିକରି ଦଶଟା ଅଖାଡୁଆ କାମ କରିବ।''

ତା' ବୋଲି ନିଜ ପିଲାଟାକୁ କିଛି କହିବ ନାହିଁ? ସେ ତାଙ୍କ ଜୀବନ କାଳ ଭିତରେ ଢେର ଟିନ୍ ଏଜର୍ ଦେଖିଛନ୍ତି। ଭଲରେ ସେମାନଙ୍କୁ ଶାସନ ନ କଲେ କିଗିଡି ଯିବେନି ସେମାନେ? ହଁ ମ, ତାଙ୍କର କ'ଣ ଯାଏ ଆସେ? ସୁରୁଚି ନିଜେ ଯେତେବେଳେ କିଛି କହୁନାହିଁ, ସେ କାହିଁକି ବ୍ୟସ୍ତ ହେବେ?

ମ୍ୟାଚିଙ୍ଗ୍ ହିଲ୍ ଜୋତାକୁ ଗୋଡରେ ଗଳେଇ ଦେଇ ଖଟ୍ ଖଟ୍ କରି ଆଠଟା ବେଳକୁ ବାହାରିଯାଏ ସୁରୁଚି। ଗୋଟିଏ ପ୍ରାଇଭେଟ୍ ବ୍ୟାଙ୍କ୍‌ରେ ସେ କାମ କରେ। ଗ୍ୟାରେଜ୍ ଖୋଲି ଗାଡି ଭିତରେ ବସିବା ପର୍ଯ୍ୟନ୍ତ ସେ କେବଳ ଷାଠିଏ ମାଇଲ୍ ସ୍ପିଡ୍‌ରେ କଥା ହିଁ କହିଚାଲେ।

ଉପଦେଶ। ଉପଦେଶ।

''ମା', ଓଭାନ୍‌ରେ ଚିକେନ୍ ରୋଷ୍ଟଟା ବସେଇ ଦେଇଗଲି। ଠିକ୍ ଘଣ୍ଟାଏ ପରେ ବନ୍ଦ କରିଦେବ।...ଯଦି ରୀନା ଫୋନ୍ କରେ ତାକୁ କହିଦେବ ବାର ତାରିଖ ଡିନାର୍ ପାଇଁ ମୁଁ ଆସିପାରିବି ନାହିଁ। ସମୀରଙ୍କ ଅଫିସ୍‌ରେ ପାର୍ଟି ଅଛି। ...ହଁ ମା', ବବି ସ୍କୁଲରୁ ଫେରିଲେ ତାକୁ ଜବରଦସ୍ତି କ୍ଷୀରଟା ଆଗ ଦେଇଦେବ। ନହେଲେ ଥରେ ଟି.ଭି ଖୋଲି ବସିଗଲେ ତାକୁ ଆଉ ଉଠେଇ ହେବ ନାହିଁ...''

ଅଧା କଥା ସୁପ୍ରଭାଙ୍କ କାନରେ ପଶେ। ବାକୀ ଅଧା ସେଇମିତି ପବନରେ ଭାସି ଭାସି ରହିଯାଏ। କହୁ, ଯାହା କହିବ କହିଯାଉ। ତା'ଘର। ଦାୟିତ୍ୱ ତ ଯେତେ ଯାହା ହେଲେ ତା'ର।

ସୁରୁଚି ଯିବାର ପନ୍ଦର କୋଡିଏ ମିନିଟ୍ ପରେ ବାହାରି ଯାଆନ୍ତି କ୍ୱାଇଁ ସମୀର। କାହାକୁ କିଛି ସେ କହନ୍ତି ନାହିଁ। ଚୁପ୍‌ଚାପ୍ ଟେଲିଭିଜନ୍ ସାମ୍ନାରୁ ଉଠି ହାତରେ ଧରିଥିବା ଖାଲି ଜଳଖିଆ ପ୍ଲେଟ୍‌ଟିକୁ ଧୋଇଧାଇ ଥାକରେ ରଖିଦେଇ ବାହାରି ଯାଆନ୍ତି। ଆଜିଯାଏଁ ତାଙ୍କ ମୁହଁରୁ 'ବାଏ' ବା ସେଇଭଳି କିଛି ଶୁଣିନାହାନ୍ତି ସୁପ୍ରଭା। ସେ ତାଙ୍କୁ ଏତେବର୍ଷ ଧରି ଦେଖି ଆସୁଛନ୍ତି। ସବୁଦିନେ ଏଇମିତି ଅଳ୍ପଭାଷୀ। ସେଇଥିପାଇଁ ତାଙ୍କ ଉପରେ ଏଭଳି ହାକିମାତି ଚଳାଏ ସୁରୁଚି।

ନହେଲେ କି ଜୋର ଜବରଦସ୍ତି ନିଜର ସମର୍ଥ ବାପା, ମା'ଙ୍କୁ ଆଣି ଘରେ ପୂରେଇ ପାରିଥାଆନ୍ତା !

ନା- ଏସବୁ କଥା ସୁପ୍ରଭା ଭାବିବେ ନାହିଁ। ଆମେରିକାରେ ପାଦ ଦେବାର ପ୍ରଥମ ଦିନ ହିଁ ଶିବପ୍ରସାଦ ତାଙ୍କୁ ତାଗିଦ କରିଦେଇଛନ୍ତି। ସେ ଯେମିତି ଝିଅ ଜ୍ୱାଇଁଙ୍କ ପରିବାରରେ କୌଣସି ଅଶାନ୍ତି ନ ଘଟାନ୍ତି। ଆରେ, ଅଶାନ୍ତି କାହିଁକି କରିବେ ସିଏ ? କୋଉ ତାଙ୍କର କିଛି ଅଭାବ ରହୁଛି ?

ଶିବପ୍ରସାଦ ବାହାରିଯାଆନ୍ତି ଶେଷରେ। ସମସ୍ତେ ଯିବା ପରେ। ତାଙ୍କର ସେମିତି କିଛି ଧରାବନ୍ଧା ସମୟ ନାହିଁ। ତଥାପି ପ୍ରାୟ ସାଢେ ନଅଟା ବେଳକୁ ସିଡିରେ ଧୀରେ ଧୀରେ ତଳକୁ ଚାଲିଆସନ୍ତି ସେ। ଆଉ କବାଟ ପାଖରେ ଠିଆ ହୋଇ କହନ୍ତି, ''ମୁଁ ତେବେ ଆସୁଛି।''

ସୁପ୍ରଭା ମୁଣ୍ଡ ଟୁଙ୍ଗାରିବା ପର୍ଯ୍ୟନ୍ତ ବା 'ଆସ' ବୋଲି କହିବା ପର୍ଯ୍ୟନ୍ତ ସେ ଆଉ ଅପେକ୍ଷା କରନ୍ତି ନାହିଁ। ଚାଳିଶ ବର୍ଷର ପୁରୁଣା ଅଭ୍ୟାସରୁ କଥାଟା କହିଦେଇ ଅନ୍ୟମନସ୍କ ଭାବରେ ସେ ବାହାରକୁ ବାହାରି ଯାଆନ୍ତି। କିଛି ସମୟ ପରେ ସେକେଣ୍ଡ-ହ୍ୟାଣ୍ଡ ଟୟୋଟା କରୋଲାର ଚାଲିଯିବାର ଶବ୍ଦ ଆସେ।

ବାସ୍।

ସକାଳୁ ଘୋ ଘା ଲାଗିଥିବା ଘରଟା ହଠାତ୍ ନିସ୍ତବ୍ଧ ହୋଇଯାଏ। ଏଇ ଏବେ ଯେମିତି।

ସ୍ୱସ୍ତିର ନିଶ୍ୱାସ ନେଲେ ସୁପ୍ରଭା। କି ଶାନ୍ତି ! ସୁରୁଚି ଆଉ ପାମି ଭିତରେ ଝଗଡା ନାହିଁ। ବବିର ବୁମ୍ ବକ୍ସର ସଙ୍ଗୀତ ମଧ୍ୟ ନାହିଁ।

ବଡ ହାଲୁକା ଲାଗୁଛି ସୁପ୍ରଭାଙ୍କୁ। ଠେଲି ଠେଲି ତାଙ୍କ ଭିତରୁ କିଏ ଯେମିତି କହି ପକେଇଲା, ''ଆଇ ଆମ୍ ଦି ମୋନାର୍କ ଅଫ୍ ଅଲ୍ ଆଇ ସର୍ଭେ।''

କିଏ ଜାଣ କହିଥିଲା ! କିଏ କେଉଁଠି ଲେଖିଥିଲା କି ? କିଏ ? ପାଞ୍ଚବର୍ଷ ତଳେ ଡେରାଡୁନ୍‌ର ଛୋଟ ଗୋଟିଏ ସ୍କୁଲରେ ଇଂରାଜୀ ପଢାଇବା ବେଳେ ସୁପ୍ରଭାଙ୍କର ଏସବୁ ମନେ ଥିଲା। ଅଥଚ ଏବେ କେମିତି ହଜିଗଲା ସେସବୁ ? ସତେ କ'ଣ ମାତ୍ର ପାଞ୍ଚ ବର୍ଷ ? କେଜାଣି ? କେମିତି ଯେମିତି ଲାଗୁଛି ଜୀବନ କାଳଟିଏ କଟିଗଲାଣି ଯା ଭିତରେ।

ଓହୋ, କିଏ କହିଥିଲା କଥାଟା ? ସମୁଦ୍ର ଘେରା ନିର୍ଜନ ଦ୍ୱୀପଟିଏରେ ବସି କିଏ ଜଣେ ବୋଧହୁଏ ଏହି କଥାଟା କହିଥିଲା । କିଏ ସେ ?

ସେ ଯିଏ ହେଉ, କିନ୍ତୁ କଥାଟା ବଡ ଭାବିଚିନ୍ତି କହିଥିଲା । ସୁପ୍ର[illegible] ସାଙ୍ଗରେ ତା' ଚିନ୍ତାଧାରାର କି ଗଭୀର ମେଳ ! ତା' ଭଳି ଏଥର ସେ ମଧ୍ୟ ରାଜା ।

ଆରେ, ରାଜା କେମିତି ମ, ରାଣୀ ପରା ।

ନିଜ ଭୁଲକୁ ସୁଧାରିବାକୁ ଯାଇ ସୁପ୍ରଭା ମନକୁ ମନ ହସି ପକେଇଲେ । ''ଆଇ ଆମ୍ ଦି କୁଇନ୍ ଅଫ୍ ଅଲ୍ ଆଇ ସର୍‌ଭେ ।''

ସେ ଘର ଚାରିକଡେ ଆଖି ବୁଲେଇ ଆଣିଲେ । କ୍ୟାଲିଫୋର୍ଣ୍ଣିଆର ସାରାଟୋଗା ପାହାଡ ଉପରେ ବିରାଟ ଦୁଇମହଲା ଘର ।

ନା- ଏଇଟା ତାଙ୍କ ଘର ନୁହଁ । ସେ ଏଠି ରହନ୍ତି କେବଳ । ଏଇଟା ଝିଅ ସୁରୁଚି ଓ ଜ୍ୱାଇଁ ସମୀରଙ୍କ ଘର । ଏ ଘରେ ସେ ଗେଷ୍ଟ । ଅତିଥି । ସେ ଓ ଶିବପ୍ରସାଦ ଝିଅ ଜ୍ୱାଇଁଙ୍କ ପାଖରେ ସବୁଦିନ ପାଇଁ ରହିବାକୁ ଆସିଛନ୍ତି । ତଥାପି ସେମାନେ ଏଠି ପର୍ମାନେଣ୍ଟ ଗେଷ୍ଟ । ଘରର ସଦସ୍ୟ ନୁହଁ । ସବୁ ଆରାମ ଅଛି, ହେଲେ କୌଣସି ଦାୟିତ୍ୱ ନାହିଁ । ବାଃ- କି ମଜାର, ଆନନ୍ଦର ଜୀବନ !

ବଡ ଅଦ୍ଭୁତ ଜାଗା ଏ କ୍ୟାଲିଫୋର୍ଣ୍ଣିଆ । ଏଠି ପାହାଡ ଉପରେ ଥିବା ଘରର ଦାମ ଉପତ୍ୟକାରେ ଥିବା ଘରଗୁଡିକଠୁ ଅନେକ ବେଶୀ । କିଏ କେବେ ଶୁଣିଛି ଏମିତିକା କଥା ? ଖାଲି କ'ଣ ସେତିକି, ପାହାଡ ଭିତରେ ପୁଣି ନମ୍ବର ୱାନ୍, ନମ୍ବର ଟୁ ପାହାଡ ଅଛି । ଧର, ଯଦି କାହା ପାଖରେ କହିଦେଲ 'ମୋ ଘର ପାହାଡ ଉପରେ'; ତେବେ ସେ ସାଙ୍ଗେ ସାଙ୍ଗେ ପଚାରିଦେବ କେଉଁ ପାହାଡ ? ମିଲ୍‌ପିଟାସ୍ ନା ସାରାଟୋଗା ? ଏବଂ ତୁମ ଉତ୍ତରରୁ ତୁମର ଦୌଡ କେତେଦୂର ସେକଥା ଜାଣି ନେବ ।

କ୍ୟାଲିଫୋର୍ଣ୍ଣିଆକୁ ଆସିବା ପରେ ସୁରୁଚି ଓ ସମୀର ସନିଭେଲ୍‌ରେ ଛୋଟ ଘରଟିଏ କିଣିଥିଲେ । ସନିଭେଲ୍ ଜାଗାଟା ପାହାଡ ପାଖରେ ନୁହଁ । ଉପତ୍ୟକାରେ କହିଲେ ଚଳେ । ତେଣୁ କମ୍ ଦାମ୍‌ର । ପରେ ସମୀରଙ୍କ ପଦୋନ୍ନତି ହେବା ପରେ ଏବଂ ଦରମାର ପରିମାଣ ବେଶ୍ ସୁଦୃଶ୍ୟ ହୋଇଯିବା ପରେ ସେଇ ଛୋଟ ଘରଟା ସେମାନଙ୍କ ସମ୍ମାନରେ ଆଞ୍ଚ ଆଣିଲା । ବହୁତ ଖୋଜି ଲୋଡି

ସାରାଟୋଗା ପାହାଡ ଉପରେ ଏହି ଘରଟା କିଣିଲେ ସେମାନେ।

କିଛି ଟଙ୍କା ଦିଆ ହୋଇଛି। ବାକିଟା ମୋର୍ଟଗେଜ୍। ଆହୁରି କୋଡ଼ିଏ ବର୍ଷ ଚାଲିବ ଏହି ଋଣ ସୁଝା ବ୍ୟବସ୍ଥା।

ବାବାରେ ବାବା! କେମିତି ଏତେଗୁଡାଏ ବୋଝ ମୁଣ୍ଡ ଉପରେ ରଖି ଏମାନେ ନିଶ୍ଚିତ ଭାବରେ ଚଳପ୍ରଚଳ ହୁଅନ୍ତି? ବେଳେବେଳେ ଏମିତିଆ କଥା ସବୁ ସୁପ୍ରଭାଙ୍କ ଓଠ ପାଖରେ ଆସି ଭିଡ ଜମାନ୍ତି। ତାଙ୍କର ଇଚ୍ଛା ହୁଏ ପୁରୁଟିକୁ ପାଖରେ ବସାଇ ବୁଝାଇ ଦେବେ। କ'ଣ ମିଳିବ ଏ ବୋଝରୁ? ଛୋଟ ଘରେ ରହିଲେ କ୍ଷତି କ'ଣ? ଆମର ଏ ଲୋକଦେଖାଣିଆ କାରବାରରେ କ'ଣ ଅଛି?

କିନ୍ତୁ କିଛି କହିପାରନ୍ତି ନାହିଁ ସେ। କାହାକୁ କହିବେ? ଅଠତିରିଶ ଛୁଇଁ ସାରିଥିବା ଝିଅକୁ ନା କେବଳ 'ହଁ', 'ନାହିଁ'ରେ ଉତ୍ତର ଦେଉଥିବା ବ୍ରାଇଁକୁ? ନିଜ ମନକୁ ସୁପ୍ରଭା ବୁଝାନ୍ତି। ତାଙ୍କର ଏତେ ଚିନ୍ତା କାହିଁକି? ତାଙ୍କର ରହିବାର ଜାଗାଟିଏ ହେଲେ ହେଲା।

ଯାହା ବା ହେଉ, କିଏ କ'ଣ ସତରେ ବାରି ଦେଇ ପାରିବ ଏ ଘରଟିକୁ? ପାଞ୍ଚଟା ବଡ ବଡ ଶୋଇବା ଘର। ବିଶେଷ ଅତିଥିଙ୍କ ପାଇଁ ସ୍ୱତନ୍ତ୍ର ଡ୍ରଇଂ ରୁମ୍। ସାଧାରଣ ଅତିଥି ଓ ଘର ଲୋକଙ୍କ ପାଇଁ ''ଫ୍ୟାମିଲି ରୁମ୍''। ଆଉ ଫୁଟ୍‌ବଲ୍ ପଡିଆ ଭଳି ବିରାଟ ରୋଷେଇ ଘର।

ସେଠି ସବୁ ସଜଡା। ରାନ୍ଧିବା ପାଇଁ କୁକିଙ୍ଗ ରେଞ୍ଜ। ସୁଇଚ୍ ମୋଡିଲେ ଚାଲିଲା। ନିଆଁ ଲଗେଇବାର ପାଲା ନାହିଁ। ଗ୍ୟାସ୍ ସରିଯିବାର ଭୟ ମଧ୍ୟ ନାହିଁ। ସେ ପାଖକୁ ବଡ ଫ୍ରିଜ୍। ଗୋଟିଏ ସୈନ୍ୟବାହିନୀକୁ ଖୁଆଇବା ଭଳି ସବୁବେଳେ ଜିନିଷପତ୍ର ଖୁନ୍ଦା ହୋଇ ରହିଥାଏ ତା' ଭିତରେ। ଫ୍ରିଜ୍ ପାଖ କାନ୍ଥରେ ହିଁ ଲଗା ହୋଇଛି ମାଇକ୍ରୋଓଏଭ୍। ଅଳ୍ପ କେଇ ମିନିଟ୍‌ରେ ରାନ୍ଧି ବା ଗରମ କରି ଥୋଇଦେବ।

ଧୀରେ ଧୀରେ ମାଇକ୍ରୋଓଏଭ୍ ପାଖକୁ ଚାଲିଗଲେ ସୁପ୍ରଭା। ନିଜ ପାଇଁ କପେ କଫି କରି ନେଇ ଆସି ଫ୍ୟାମିଲି ରୁମ୍‌ରେ ପଡିଥିବା ପୁରୁଣା ସୋଫାରେ ଗୋଡ ଟେକି ବସିଗଲେ ସେ। ଟି.ଭିଟା ଏପର୍ଯ୍ୟନ୍ତ ଚାଲିଛି। ଚ୍ୟାନେଲ୍-୨ର ବ୍ରେକ୍‌ଫାଷ୍ଟ ଶୋ' ଦେଖୁ ଦେଖୁ ତରବରରେ ଅଫିସ୍ ବାହାରିଯାଇଥିଲେ ସମୀର।

ଟି.ଭି ବନ୍ଦ କରିବାକୁ ଆଉ ମନେ ନ ଥିଲା। ବ୍ରେକ୍‌ଫାଷ୍ଟ ଶୋ' ଶେଷ ହୋଇ କ'ଣ ଗୋଟାଏ ଭାଷଣ ଆରମ୍ଭ ହେଲାଣି। ଟି.ଭି ରିମୋଟ୍‌ରେ ନମ୍ବର ଟିପି ସୁପ୍ରଭା ଚ୍ୟାନେଲ୍ ବଦଳେଇବାକୁ ଲାଗିଲେ।

ଧେତ୍ ତେରି। ଆଜି କ'ଣ କୌଣସି ଚ୍ୟାନେଲ୍‌ରେ ତାଙ୍କର ମନ ଖୁସୀ କରେଇ ଦେବା ଭଳି ପ୍ରୋଗ୍ରାମ ନାହିଁ? ସେ ମୁହୂର୍ତ୍ତେ ଆନମନା ହୋଇଗଲେ। କୋଉ ପ୍ରୋଗ୍ରାମ ତାଙ୍କୁ ଭଲ ଲାଗେ ? କୋଉଟା ? ସେମିତି କାହିଁ କିଛି ମନେ ପଡୁନି। ଡ଼େରାଡୁନ୍‌ର ସେଇ ଛୋଟ ସ୍କୁଲ୍‌ର ଏକଦା ଇଂରାଜୀ ଶିକ୍ଷୟିତ୍ରୀ ସୁପ୍ରଭା ରାୟ ଏବେ ଏମିତି ସବୁ ଭୁଲିଯାଉଛନ୍ତି କାହିଁକି? ସ୍କୁଲ୍‌ରେ ସବୁ ବିଷୟରେ ସ୍ପଷ୍ଟ ଭାବରେ ମତବ୍ୟକ୍ତ କରୁଥିବା ସୁପ୍ରଭା ମିସ୍ ଏବେ କାହିଁକି ନିଶ୍ଚିତ ଭାବରେ କହି ପାରୁ ନାହାନ୍ତି ଟେଲିଭିଜନ୍‌ର କେଉଁ ପ୍ରୋଗ୍ରାମ୍ ତାଙ୍କର ପ୍ରିୟ ?

ସୁରୁଚି ଘରେ ଥିଲେ ତା' ସାଙ୍ଗରେ ବସି ସେ ଦେଖନ୍ତି ଟକ୍ ଶୋ'। ଅପ୍‌ରା ୱିନଫ୍ରେ ହେଉ କି ସାଲି ଜୋନ୍‌ସ। ଝିଅର ବୟଫ୍ରେଣ୍ଡକୁ ଚୋରି କରିନେଉଥିବା ମା'ମାନଙ୍କର ସ୍ୱୀକୋକ୍ତି ହେଉ ବା ବିବାହ ନ କରି ମା' ହୋଇଯାଉଥିବା ଅଳ୍ପ ବୟସର ଝିଅମାନଙ୍କର ଟିପ୍‌ପଣୀ ହେଉ। ସେସବୁ ଶୁଣିବା ବେଳେ ସୁରୁଚିର "ଏ ସମାଜ କେଉଁଠି ଯାଇ ପହଞ୍ଚିଲାଣି, ଦେଖୁଛ ମା'?" ର ଉତ୍ତର ମଧ୍ୟ 'ଚୁ ଚୁ'ରେ ଦେବାକୁ ହୁଏ। ପାମି ସେ ରୁମ୍‌ରେ ପାଦ ଦେଲେ ଟି.ଭିର ଚ୍ୟାନେଲ ବଦଳିଯାଏ। ଆରମ୍ଭ ହୋଇଯାଏ ଏମ୍.ଟି.ଭି। ଦେହ ସାଙ୍ଗରେ ପ୍ରାୟ ମିଶିଯାଇଥିବା ପୋଷାକ ପିନ୍ଧି କିଛି ବୁଝି ନ ହେଉଥିବା ସଙ୍ଗୀତର ତାଳେ ତାଳେ ନିଶାଗ୍ରସ୍ତ ପରି ନାଚୁଥିବା ପୁଅଝିଅଙ୍କର ଅଙ୍ଗଭଙ୍ଗୀ। ଆଖିରେ ପଲକ ନ ପକାଇ ତା'କୁ ଇ ପିଇଯାଏ ପାମି। ବିରକ୍ତ ହୋଇ ସୁରୁଚି ଉଠିଯାଏ।

"ହରିବଲ୍।"

ପାମି ରାଗିଯାଏ, "ମୋ ପାଇଁ ଅଲଗା ପର୍ସନାଲ୍ ଟି.ଭି କିଣି ଦିଅ। ତାହେଲେ ମୁଁ ତୁମକୁ ବିରକ୍ତ କରିବି ନାହିଁ। ଜାଣ, ମୋର ସବୁ ସାଙ୍ଗଙ୍କର ନିଜ ନିଜର ଟି.ଭି ଅଛି।"

"ହଉ ଥାଉ ଥାଉ। ପୁଣି ସେସବୁ ଆରମ୍ଭ କରନି। ପଇସାବାଲା ସାଙ୍ଗଙ୍କ ସାଙ୍ଗରେ ଆଡ୍‌ଡ଼ା ଦେଇ ଦେଇ ତୋ ମତିଗତି ବଦଳିଗଲାଣି।" ଚିଡି ଉଠି ପାଟି କରେ ସୁରୁଚି।

''ଦେଖୁଛ, ଦେଖୁଛ ଆଈ। ମମି ଇଜ୍ ଦି ଲିମିଟ୍। ଥରେ ଆରମ୍ଭ ହେଲେ ଚାଲିଲା। ଓ, ଆଇ ହେଟ୍ ଇଟ୍।'' ଆଖି କପାଳକୁ ଟେକି ନେଇ ପାମି କହେ। ସୁପ୍ରଭା କିଛି ନ କହି ହସିଦିଅନ୍ତି। ନାତୁଣୀ ସାଙ୍ଗରେ ବସି ମାଇକେଲ୍ ଜ୍ୟାକ୍ସନ୍ ବା ମ୍ୟାଡୋନାର ଅବୁଝା ସଙ୍ଗୀତ ଶୁଣନ୍ତି।

ଆଠ ବର୍ଷର ନାତି ବବି କଥା ଭିନ୍ନ। ଏବେ ବି ସେ କାର୍ଟୁନ୍ ପାଇଁ ପାଗଳ। ଆଈକୁ ପାଖରେ ବସାଇ ଟମ୍ ଆଣ୍ଡ୍ ଜେରି ବା ଡ଼କ୍ ଟେଲ୍‌ସ ଦେଖୁ ଦେଖୁ ସେ ହସି ହସି ଗଡିଯାଏ। ''ଦେଖୁଛ ଆଈ, ଏଡ଼ିକି ଟିକିଏ ମୂଷା, କେମିତି ପାଠ ପଢେଇ ଦେଲା ବିଲେଇକୁ?'' ସୁପ୍ରଭା ମୁଣ୍ଡ ଟୁଙ୍ଗାରନ୍ତି।

ସମୀର କୋଉଠି ଘରେ ଥାଆନ୍ତି ଯେ ଟି.ଭି ଦେଖିବେ। ସେଇ ଅଫିସ୍ ଯିବା ଆଗରୁ ଜଳଖିଆ ଖାଉ ଖାଉ ଯେତିକି ସମୟ। ଆଉ ବାକି ରହିଲେ ଶିବପ୍ରସାଦ। ସୁପ୍ରଭାଙ୍କ ସହିତ ଚାଳିଶିଟି ବିବାହିତ ବର୍ଷ କଟେଇ ଆସିଥିବା ଶିବପ୍ରସାଦ। ଘରେ ରହିଥିବା ବେଳେ କେବଳ ଖାଇବା ସମୟତକ ଛାଡିଦେଲେ ସେ ଆଦୌ ନିଜ କୋଠରୀରୁ ବାହାରନ୍ତି ନାହିଁ। ବଡ ଆଶ୍ଚର୍ଯ୍ୟ ଲାଗେ ସୁପ୍ରଭାଙ୍କୁ। ଗୋଟାଏ ମଣିଷ ସାଙ୍ଗରେ ଜୀବନଟାଏ କଟିଗଲା, ଅଥଚ ଟିକିଏ ବି ଚିହ୍ନି ପାରିଲେ ନାହିଁ ତାଙ୍କୁ! ଶିବପ୍ରସାଦଙ୍କ ବୟସ ଯଦି ପଚିଶ ହୋଇଥାଆନ୍ତା, ତେବେ ସୁପ୍ରଭା ବୁଝିପାରିଥାଆନ୍ତେ, ମାନି ନେଇ ପାରିଥାଆନ୍ତେ। କିନ୍ତୁ ଷାଠିଏ ବର୍ଷ ବୟସରେ ଆମେରିକାରେ ପାଦ ଦେଇ ଯେ ଜଣେ ଏମିତି ହଠାତ୍ କରି ବଦଳି ଯାଇପାରେ, ସେଇଟା ଆଖିରେ ନ ଦେଖିଲେ କିଏ କ'ଣ ବିଶ୍ୱାସ କରିପାରିବ? ଯେଉଁ ମଣିଷଟି ତାଙ୍କୁ ପାଖରେ ବସାଇ ଦେଶର ରାଜନୀତିଠାରୁ ଅଫିସ୍‌ର ଗୁଜବ ପର୍ଯ୍ୟନ୍ତ ସବୁ ଶୁଣାଉଥିଲା ସେ କ'ଣ ଏଇ ଶିବପ୍ରସାଦ? ଆଉ ସବୁଦିନ ତାଙ୍କର ହାତ ଟାଣି ମର୍ଣ୍ଣିଂ ଓ ଇଭନିଙ୍ଗ୍ ଓ୍ୱାକ୍‌ରେ ଯିଏ ନେଇ ଯାଉଥିଲା ଏବଂ ବେଳ ଅବେଳ ନ ମାନି ତାଙ୍କ ସାଙ୍ଗରେ ଚାହା କଫି ପିଇବାକୁ ବାଧ୍ୟ କରୁଥିଲା, ସେ କ'ଣ ଏଇ?

ତାହେଲେ? ତାହେଲେ ଏମିତି ବଦଳିଗଲେ କେମିତି? ପାଞ୍ଚବର୍ଷରେ ଗୋଟିଏ ମଣିଷ କ'ଣ ଏତେ ବେଶୀ ବଦଳିଯାଇପାରେ? ଯିଏ ତାଙ୍କୁ ପୃଥିବୀର ଶ୍ରେଷ୍ଠ ସୁଖର ମୋହ ଦେଖାଇ ଆମେରିକାକୁ ନେଇ ଆସିଲା, ସେ ନିଜେ ଇ ଯେ ଏମିତି ଅଚିହ୍ନା ମଣିଷଟିଏ ହୋଇଯିବ, ଏକଥା ସୁପ୍ରଭା ଜାଣିଥିଲେ ଦେଶ ଆଦୌ

ଛାଡ଼ି ନ ଥାଆନ୍ତେ।

ବେଳେବେଳେ ସ୍ୱପ୍ନ ପରି ମନେହୁଏ। ଡ଼େରାଡୁନ୍ କଥା। ସକାଳୁ ପ୍ରସ୍ତୁତ ହୋଇ ତରବରରେ ସ୍କୁଲ ଯିବା କଥା। ବେଶ୍ ଭଲ ଇ ତ ସବୁ ଚାଲିଥିଲା। ଷୋହଳ ବର୍ଷ ତଳେ ଏକମାତ୍ର ଝିଅ ସୁରୁଚିର ବାହାଘର ପରେ ମଧ କିଛି ସେମିତି ବିଶେଷ ବଦଳି ଯାଇ ନ ଥିଲା। ହଁ, ଦିନା କେତେ ମନ ଖରାପ କରିଥିଲେ ସେ। ସବୁବେଳେ ପାଖରେ ରହିଥିବା ଝିଅଟି ଯେ ବାହା ହୋଇ ଏକଦମ୍ ଆମେରିକା ଚାଲିଗଲା, ସେ କଥା ମନେ ପଡିଲେ ତାଙ୍କ ମନ ଦବି ଯାଉଥିଲା।

ପୁଣି ସବୁ ସହଜ ହୋଇଗଲା। ମଝିରେ ମଝିରେ ବର୍ଷେ ଦୁଇ ବର୍ଷରେ ଥରେ ସୁରୁଚି ଭାରତ ଆସୁଥିଲା। ମାସେ ଦୁଇମାସ ପାଖରେ ରହି ଫେରି ଯାଉଥିଲା।

ବେଶ ତ। ସ୍କୁଲ, ଘର ହୋଇ ସୁପ୍ରଭାଙ୍କର ଦିନଗୁଡିକ ବେଶ୍ ସୁନ୍ଦର କଟିଯାଉଥିଲା।

ତା'ପରେ ସେଇ ଯେ ବବି ଜନ୍ମବେଳେ ହଠାତ୍ ଅସୁସ୍ଥ ହୋଇପଡିଲା ସୁରୁଚି, ସବୁ କେମିତି ସେତିକିବେଳେ ବଦଳିଗଲା। ସୁରୁଚିର ଡ଼େଲିଭରି ସମୟରେ ପାଖରେ ରହିବା ପାଇଁ ସମୀର ସେମାନଙ୍କ ପାଇଁ ଦୁଇଟା ଟିକେଟ୍ ପଠେଇ ଦେଇଥିଲେ। ଆଉ ତିନିମାସ କ୍ୟାଲିଫୋର୍ଣ୍ଣିଆରେ ରହି ଫେରିବା ପରେ ଶିବପ୍ରସାଦଙ୍କର ମନ ହିଁ ବଦଳି ଯାଇଥିଲା।

ଆସିବା ଆଗରୁ ସୁରୁଚିର ସମୀର ସହିତ ଏକାନ୍ତରେ କ'ଣ ଯେ ଏତେ କଥାବାର୍ତ୍ତା ଚାଲୁଥିଲା, ସୁପ୍ରଭା ଠିକ୍ ବୁଝୁ ନ ଥଲେ। ଛୋଟ ପାମି ଓ ତା'ଠୁ ଆହୁରି ଅନେକ ଛୋଟ ବବିକୁ ନେଇ ତାଙ୍କର ଦିନ କଟିଯାଉଥିଲା।

ଡ଼େରାଡୁନ୍‌ରେ ପହଞ୍ଚିବାର କେଇଦିନ ପରେ ହିଁ ଶିବପ୍ରସାଦ ପ୍ରଥମ କରି କଥାଟି କହିଲେ।

''ରୁଚି, ସମୀର ଏତେ କରି କହୁଛନ୍ତି। ଠିକ୍ କଥା କହୁଛନ୍ତି।''

ସୁପ୍ରଭା ବୁଝି ନ ଥିଲେ, ''କି କଥା ?''

''ଆମମାନଙ୍କର ଆମେରିକା ଯିବା ବିଷୟ।''

''ଏଇ ତ ଫେରିଲା।'' ସୁପ୍ରଭାଙ୍କୁ ଗୋଟିଏ ଗୋଲକଧନ୍ଦାରେ ପଡିଗଲା

ଭଳି ଲାଗୁଥିଲା ।

"ଆରେ ନାହିଁ । ସବୁଦିନ ପାଇଁ ଆମେରିକାକୁ ଚାଲିଯିବା କଥା ।"

ସୁପ୍ରଭାଙ୍କ ହୃଦୟ ଭିତରେ ଭାରତୀୟ ସଂସ୍କାର ହଠାତ୍ ଜାଗି ଉଠିଥିଲା ଯେମିତି । "ପାଗଳ ହେଲ, ଝିଅ ଘରେ ଯାଇ ରହିବ ?"

ଶିବପ୍ରସାଦ ହଠାତ୍ କେମିତି ଅଧିକ ବୁଝିବା ସୁଝିବାର ହୋଇ ଯାଇଥିଲେ । ପୁଅ ଝିଅ ଭିତରେ ଯେ କୌଣସି ତଫାତ୍ ନାହିଁ, ସେ ଯୁକ୍ତି ସ୍ତ୍ରୀଙ୍କ ସାମ୍ନାରେ ରଖିଥିଲେ ସେ ।

ସୁପ୍ରଭାଙ୍କର ଆଦୌ ରାଜି ହେବାର ନ ଥିଲା । କିନ୍ତୁ ସ୍ୱାମୀଙ୍କର ସେଇ ଗୋଟିଏ ମନ୍ତବ୍ୟରେ ଏକଦମ୍ ବିଗଳିତ ହୋଇଗଲେ ସେ ।

କାହିଁକି, କାହିଁକି ଏମିତି ଭଳିଗଲେ ?

ଶିବପ୍ରସାଦ କହିଥିଲେ, "ଦେଖ, ଝିଅ ପାଇଁ ବେଳେବେଳେ ତୁମ ମନ ଗୋଳେଇ ହୁଏ କି ନାହିଁ? ନା ଝିଅ ଆସିପାରେ, ନା ଆମେ ତା' ପାଖକୁ ଧାଇଁ ଯାଇ ପାରୁ । ସେଇ ତ ଗୋଟିଏ ଝିଅ ଆମର । ତା' ପାଖରେ ରହିଲେ ଆଉ କ'ଣ ମନ ବିକଳ ଲାଗିବ ?"

ଟିକିଏ ରହି ସେ ପୁଣି ଯୋଡିଥିଲେ, "ଯଦି ଏକଥା କେବଳ ରୁଚି କହିଥାଆନ୍ତା, ତାହେଲେ ମୁଁ ଆଦୌ ଗୁରୁତ୍ୱ ଦେଇ ନ ଥାଆନ୍ତି । କିନ୍ତୁ ସମୀର ଏଥର ବାରମ୍ବାର ଏ ବିଷୟ କହିଛନ୍ତି । ...ତୁମେ ନିଜେ ଦେଖ, କି ହଇରାଣ ହେଉଛନ୍ତି ସେମାନେ । ଦୁଇ ଜଣଯାକ ଚାକିରି କରିବାକୁ ଚାଲି ଯାଉଛନ୍ତି । ନା ଘରର ଠିକ ଠିକଣା ଅଛି ନା ପିଲାଙ୍କର । ଏତିକି ଟିକେ ବବି, ତାକୁ ମଧ୍ୟ ବେବିସିଟର୍ ପାଖରେ ଛାଡି କରି ଯିବାକୁ ହେଉଛି । ସମୀରଙ୍କ ମା, ବାପା ବଞ୍ଚିଥିଲେ ମୁଁ କ'ଣ ତୁମକୁ ଏମିତିଆ ପ୍ରସ୍ତାବଟେ ଦେଇ ଥାଆନ୍ତି ?"

ଶିବପ୍ରସାଦଙ୍କୁ ଆଉ କିଛି କହିବାକୁ ପଡି ନ ଥିଲା । ଦୁଇ ନାତିନାତୁଣୀଙ୍କ କଥା ଥରେ ଭାବି ନେଇ ସୁପ୍ରଭା ରାଜି ହୋଇଗଲେ ।

ତା'ପରେ ସବୁ କେମିତି ଖୁବ୍ ଶୀଘ୍ର ଶୀଘ୍ର ହୋଇଗଲା । ସୁରୁଚି ନିଜର ବାପା ମା'ଙ୍କୁ ପାଖକୁ ନେବା ପାଇଁ ଦରଖାସ୍ତ କରିଲା । ତିନିବର୍ଷ ଭିତରେ ଗ୍ରିନ୍ କାର୍ଡ ମଧ୍ୟ ମିଳିଗଲା । ଡ଼େରାଡୁନ୍‌ର ଘର, ଘରର ଏତେବର୍ଷର ପୁରୁଣା ଜିନିଷ, ପୁରୁଣା ଗାଡି- ସବୁ କିଛି ଅଳ୍ପ କେଇଦିନରେ ବିକ୍ରି ହୋଇଗଲା ।

ସୁପ୍ରଭା ପଢାଉଥିବା ସ୍କୁଲ୍‌ର ପ୍ରିନ୍‌ସିପାଲ୍ ଧାଇଁ ଆସିଥିଲେ ତାଙ୍କ ପାଖକୁ। କହିଥିଲେ, ‘‘ମିସେସ୍ ରାୟ, ମୁଁ ଆପଣଙ୍କ ଉପରେ କେତେ ନିର୍ଭର କରିଛି। ଅଥଚ ଆପଣ ଚାଲିଯାଉଛନ୍ତି ? ଆପଣଙ୍କ ଭରସାରେ ମୁଁ ସ୍କୁଲଟିକୁ ରେସିଡେନ୍‌ସିଆଲ୍ ସ୍କୁଲ୍ କରୁଛି। ଡୁନ୍, ୱେଲେସ୍‌ଲି ଠାରୁ ଭଲ କରିବାର ସ୍ୱପ୍ନ ଦେଖୁଛି। ଆପଣ ଚାଲିଗଲେ କେମିତି ହେବ ?’’

ସୁପ୍ରଭା ନିର୍ବାକ୍ ହୋଇଯାଇଥିଲେ। ସତକଥା ତ। ବାହାଘର ପରଠାରୁ ସେ କେବେ କୌଣସି ବିଷୟ ପାଇଁ ସ୍ୱାମୀଙ୍କ ଉପରେ ନିର୍ଭର କରିନାହାନ୍ତି। ଏବେ, ଏଇ ବୟସରେ ପୁଣି ଝିଅ ଜୋଇଁଙ୍କ ପାଖରେ ସବୁ କଥା ପାଇଁ ହାତ ପତେଇବାକୁ ହେବ ? ପାରିବେ ସେ ?

ଶିବପ୍ରସାଦ ଆଶ୍ୱାସନା ଦେଇଥିଲେ, ‘‘ତୁମେ ସେମିତି କାହିଁକି ଭାବୁଛ ? ମୁଁ ସେଠିକି ଯାଇ ନିଶ୍ଚୟ କ’ଣ ଗୋଟାଏ କରିବି। ମୋ ରୋଜଗାର ଟଙ୍କା କ’ଣ ତୁମର ହେବନି ?’’

ସୁପ୍ରଭା କିଛି ଉତ୍ତର ଦେଇ ନ ଥିଲେ। କି ଲାଭ ? ସବୁ ପ୍ରସ୍ତୁତି ତ ସରିଯାଇଥିଲା ସେତେବେଳକୁ।

ଏଇ ତ ଚାହୁଁ ଚାହୁଁ ପାଞ୍ଚବର୍ଷ ହୋଇଗଲା। ଗ୍ରିନ୍‌କାର୍ଡ ନେଇ କିଛି ବର୍ଷ ରହିବା ପରେ ସେ ବର୍ତ୍ତମାନ ଆମେରିକାର ସିଟିଜେନ୍। ନିଜ ଦେଶର ନାଗରିକତ୍ୱ ଛାଡି ଆଉ ଗୋଟିଏ ବିଦେଶୀ ଦେଶର ନାଗରିକତ୍ୱ ଗ୍ରହଣ କରିବାକୁ ସୁପ୍ରଭା ପ୍ରଥମେ ରାଜି ହୋଇ ନ ଥିଲେ। କିନ୍ତୁ ସୁରୁଚି ବୁଝେଇ ଦେଲା ଯେ ନାଗରିକ ନ ହେଲେ ବହୁତ ଅସୁବିଧା। ସରକାରୀ ସାହାଯ୍ୟ ମିଳିବ ନାହିଁ। ମେଡ଼ିକାଲ ଇନ୍‌ସ୍ୟୁରାନ୍‌ସ ହୋଇ ପାରିବ ନାହିଁ। ସେମିତି ଅବସ୍ଥାରେ ଦେହ ଖରାପ ହେଲେ ଶହ ଶହ ଡ଼ଲାର ଡ଼ାକ୍ତରଙ୍କୁ ଗଣିବାକୁ ପଡିବ।

ତାଙ୍କ ପାଇଁ ପୁଣି ଅନ୍ୟମାନେ ଅଧିକ ଖର୍ଚ୍ଚାନ୍ତ ହେବେ ?

ସୁପ୍ରଭା ଆମେରିକାର ନାଗରିକ ହେବା ପାଇଁ ରାଜି ହୋଇଗଲେ। ତଥାପି ବେଳେବେଳେ ଦେଶ କଥା ମନେ ପଡି ଦୁଃଖ ଲାଗେ।

ସେ କାହାକୁ ଏ କଥା କହିବେ ? ଯିଏ ଶୁଣିବ ସେ ହସିବ।

ଝିଅ ତ ଝିଅ, ଜ୍ୱାଇଁ ସମୀର ମଧ୍ୟ ପଦେ ଖରାପ କରି କଥା କହନ୍ତି ନାହିଁ। ତାହେଲେ ପୁଣି ତାଙ୍କର ଦୁଃଖ କ’ଣ ?

ଶିବପ୍ରସାଦ ଏଠିକୁ ଆସିବା ପରେ ସମୀରର ଜଣେ ବନ୍ଧୁର କମ୍ପାନୀରେ ଚାକିରି ଆରମ୍ଭ କରିଛନ୍ତି। ଡ଼େରାଡ୍ରୁନ୍‌ରେ ଏତେବଡ କମ୍ପାନୀରେ ଯିଏ ଡ଼େପୁଟୀ ଡ଼ାଇରେକ୍ଟର ଥିଲେ, ସେ ଏଠି ଗୋଟିଏ ପ୍ରିଣ୍ଟିଙ୍ଗ୍ ପ୍ରେସ୍‌ର ଆସିଷ୍ଟାଣ୍ଟ ମ୍ୟାନେଜର ହୋଇଛନ୍ତି। ତଥାପି ତ ନିଜ ଖର୍ଚ୍ଚ ପାଇଁ ସେ ଅନ୍ୟ କାହା ଉପରେ ନିର୍ଭର କରିନ୍ତି ନାହିଁ! ସେକେଣ୍ଡ ହ୍ୟାଣ୍ଡ ହେଉ ପଛକେ, ଗାଡିଟିଏ ଅଛି ତାଙ୍କର।

ସେ ସ୍ୱାଧୀନ। ଅନ୍ୟମାନଙ୍କ ଭଳି।

ଆଉ ସୁପ୍ରଭା ?

ଏତେ ବର୍ଷର ସ୍ୱାଧୀନ ଜୀବନଯାପନ ପରେ ହଠାତ୍ ଯେଉଁ ଏମିତି ପରାଧୀନ ହୋଇ ପଡିଲେ ? ଏ କଥା କିଏ ଚିନ୍ତା କରେ ? କୁଆଡେ ଟିକିଏ ଯିବା ପାଇଁ ଅନ୍ୟ ଉପରେ ନିର୍ଭର କରିବାକୁ ପଡେ। କିଛି ଗୋଟାଏ ଘର ଭିତରେ କରିବାକୁ ଚାହିଁଲେ ବାକୀ ସଦସ୍ୟମାନଙ୍କର ମର୍ଜି ଜଗିବାକୁ ହୁଏ। କାହା ପାଇଁ ପଇସାଟିକର ଜିନିଷ କିଣିବାକୁ ଚାହିଁଲେ ହାତ ପତେଇବାକୁ ହୁଏ।

ସବୁ ଅଛି; ହେଲେ ତାଙ୍କ ପାଖରେ ଯେ କିଛି ବି ନାହିଁ!!

ଶିବପ୍ରସାଦ, ସମୀର, ସୁରୁଚି ଏବଂ ପାମି, ବବି ଚାଲିଗଲା ପରେ ସେ ଯେ କେମିତିଆ ଏକା ହୋଇଯାଆନ୍ତି, ଏକଥା କ'ଣ କିଏ ଭାବିପାରେ ? ଅଫିସ, ସ୍କୁଲରୁ ଫେରିବା ପରେ ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ, ଆଉ ସେ ସୁପ୍ରଭା ନିଜେ ?

କାର୍ପେଟ୍ ଘେରା ସିଡି ଚଢି ସେ ନିଜ କୋଠରୀକୁ ଗଲେ। ତାଙ୍କର ସ୍ୱତନ୍ତ୍ର କୋଠରୀ। ଝର୍କା ପାଖରେ ପଡିଥିବା ରକିଙ୍ଗ ଚେଆର୍‌ରେ ଝୁଲୁଝୁଲୁ ଆଖି ବୋଧହୁଏ ଲାଗି ଯାଇଥିଲା ଟିକିଏ। ସ୍ୱପ୍ନରେ କିଏ ଯେମିତି ପଶିଆସି ଠେଲି ଉଠେଇ ଦେଲା ତାଙ୍କୁ। କହିଲା, ''ମୂର୍ଖ, ମୂର୍ଖ, ମୂର୍ଖ। ଏତେ ଶୀଘ୍ର ଆଲେକ୍‌ଜାଣ୍ଡର ସେଲ୍‌କାର୍କଙ୍କୁ ଭୁଲିଗଲୁ ? ଭୁଲିଗଲୁ ଉଇଲିଅମ୍ କୁପର୍‌ଙ୍କୁ ?''

ଚାଉଁ କରି ନିଦ ଭାଙ୍ଗିଗଲା ସୁପ୍ରଭାଙ୍କର। ହଁ ତ।

ନିଶାଗ୍ରସ୍ତ ଭଳି ଜୋର୍‌ରେ ଆବୃତ୍ତି କରି ଉଠିଲେ ସେ-

''ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ
ଲଂଘି ମୁଁ ଯାଆନ୍ତି ସାଗର ବକ୍ଷ...''

କିଛି ପାର୍ଥକ୍ୟ ଅଛି ନିର୍ଜନ ଦ୍ୱୀପରେ, ସ୍ୱେଚ୍ଛାରେ ନିର୍ବାସନ ନେଇଥିବା

ଆଲେକ୍‌ଜାଣ୍ଡର ସେଲ୍‌କାର୍କ ଓ ସ୍ୱେଚ୍ଛାରେ ଏକ ବିଦେଶୀ ରାଷ୍ଟ୍ରର ନାଗରିକ ହୋଇଯାଇଥିବା ସୁପ୍ରଭା ରାୟଙ୍କ ଭିତରେ ? ଦୁହିଁଙ୍କର ହୃଦୟରେ କି ଆକାଶ ଭରା ଦୁଃଖ !

କ'ଣ କରିଥିଲେ ସେଲ୍‌କାର୍କ ? ତାଙ୍କୁ ତ ଜଣେ କିଏ ପୁଣି ଉଦ୍ଧାର କରିଥିଲା ? ଡ଼େରିରେ ହେଉ ପଛକେ କୌଣସି ଏକ ଜାହାଜର କ୍ୟାପ୍‌ଟେନ୍ ଉଇଲିଅମ୍ ରୋଜର୍ ତାଙ୍କୁ ଫେରାଇ ନେଇଥିଲେ ନିର୍ଜନ ଦ୍ୱୀପରୁ । କେବେ ସେହି ମୁକ୍ତିର ଦିନଟି ସୁପ୍ରଭାଙ୍କ ଜୀବନରେ ଆସିବ ?

ଏତେ ବର୍ଷ ହୋଇଗଲାଣି । ତଥାପି ନିୟମିତ ଭାବରେ ଚିଠି ଲେଖି ଯାଉଛନ୍ତି ପ୍ରିନ୍‌ସିପାଲ୍ ସିହ୍ନା । ଏଇ ତ ମାସେ ତଳେ ଚିଠି ଆସିଥିଲା ତାଙ୍କର । ଲେଖିଥିଲେ ଯେ ସ୍କୁଲରେ ଦୁଇଟି ହଷ୍ଟେଲ ଖୋଲା ହୋଇଛି । ଗୋଟିଏ ପୁଅଙ୍କ ପାଇଁ, ଅନ୍ୟଟି ଝିଅମାନଙ୍କ ପାଇଁ । ଏବେ ମଧ ସେ ଆଶା ରଖିଛନ୍ତି । ସୁପ୍ରଭା ରାୟ ଫେରିବେ ଏବଂ ଝିଅମାନଙ୍କର ହଷ୍ଟେଲ୍‌ର ଦାୟିତ୍ୱ ନେବେ । ସେ ନିଜ ଘର ସିନା ବିକ୍ରି କରି ଦେଇଛନ୍ତି, କିନ୍ତୁ ହଷ୍ଟେଲ ସୁପରିଟେଣ୍ଡେଣ୍ଟଙ୍କ ପାଇଁ ସ୍ୱତନ୍ତ୍ର କୋଠରୀ ଯେ ରହିଛି ।

ସୁପ୍ରଭା ମନ ସ୍ଥିର କଲେ । ନା- ସେ ଚିଠି ଲେଖିବେ । ଆଜି ହିଁ ପ୍ରିନ୍‌ସିପାଲ୍‌ଙ୍କ ପାଖକୁ ଚିଠି ଲେଖିବେ । ଆଉ ଯଦି ଏବେ ମଧ ହଷ୍ଟେଲ୍ ସୁପରିଟେଣ୍ଡେଣ୍ଟଙ୍କ ପୋଷ୍ଟଟି ଖାଲି ଥାଏ, ତେବେ ସେ ଆନନ୍ଦରେ ଗ୍ରହଣ କରିନେବେ । ନିଜ ଦେଶକୁ, ନିଜସ୍ୱ ପୃଥିବୀକୁ ଫେରିଆସିବେ ସୁପ୍ରଭା ।

ବାହାରେ କିଏ କଲିଂବେଲ୍ ବଜାଇଲା ।

ସୁପ୍ରଭାଙ୍କର ସଂବିତ ଫେରି ଆସିଲା । ଆରେ, ଏହା ଭିତରେ ତିନିଟା ବାଜିଗଲାଣି ! ସେ ଏମିତି କି ସ୍ୱପ୍ନରେ ମଜ୍ଜି ଯାଇଥିଲେ ? ତରବର ହୋଇ ଉଠିପଡିଲେ ସେ । ବବି ନିଶ୍ଚୟ । ଠିକ୍ ତିନିଟା ବେଳେ ଘରକୁ ଫେରେ ସେ । ତା' ପାଇଁ ସେ ଯେ ଜଳଖିଆ କିଛି କରି ରଖି ନାହାନ୍ତି ।

ଅଧୈର୍ଯ୍ୟ ଭାବରେ ପୁଣି ବେଲ୍ ଟିପିଲା ବବି ।

''ଆସୁଛିରେ ।''

ଦାଣ୍ଡ କବାଟ ଖୋଲୁ ଖୋଲୁ ଦୁଇ ହାତରେ ତାଙ୍କୁ ଜାବୁଡି ଧରିଲା ବବି । ''ହ୍ୟାଲୋ ଆଣ୍ଟ, ଭାରି ଭୋକ । ଆଜି କ୍ଷୀର ପିଇବି ନାହିଁ । ଷ୍ଟ୍ରବେରି

ମିଲ୍‌କ ସେକ୍ କରିଦିଅନା ।''

''ହଉ ହଉ । ତୁ ଆଗ ଧୁଆଧୁଇ ହୋଇ ଆସ ।''

ଡ଼େଇଁ ଡ଼େଇଁ ନିଜ କୋଠରୀକୁ ଚାଲିଗଲା ବବି ।

ରୋଷେଇ ଘରେ ପାଦ ଦେଇ ଫ୍ରିଜ୍ ଭିତରୁ ଥଣ୍ଡା କ୍ଷୀର କାଢ଼ିବାବେଳେ ସୁପ୍ରଭା ଟିକିଏ ଅନ୍ୟମନସ୍କ ହୋଇଗଲେ । ସେ ଫେରିଯିବା ପରେ କିଏ ବୁଝିବ ବବି ଖବର ? ପିଆନୋ କ୍ଲାସ କରି ପାମି ଫେରେ ସାଢେ ଚାରିଟା ବେଳେ । ଆଉ ସୁରୁଚି ତ ଫେରୁ ଫେରୁ ପାଞ୍ଚ, ସାଢେ ପାଞ୍ଚ । ଶେଷରେ ବବିକୁ କ'ଣ ସ୍କୁଲ୍‌ର ଡ଼େ କେଆର୍‌ରେ ରହିବାକୁ ପଡିବ ମା' ଫେରିବା ପର୍ଯ୍ୟନ୍ତ ?

ଦରକାର ହେଲେ ରହିବ । ସେ ଏସବୁ ଭାବିବେ ନାହିଁ । ଡ଼ାଇନିଙ୍ଗ୍ ଟେବୁଲ୍‌ରେ ବବି ସାମ୍ନାରେ ସୁପ୍ରଭା ସାଣ୍ଡୱିଚ୍ ଓ ମିଲ୍‌କ ସେକ୍ ରଖିଦେଲେ ।

''ଆଈ, କାଲି ଯେଉଁ କେକ୍ କରିଥିଲ, ଅଛି ?''

''ହଁ ଦେଉଛି ।''

କେକ୍ ଡ଼ବାଟା ଆଲମାରୀରୁ କାଢିବା ବେଳେ ସୁପ୍ରଭାଙ୍କ ହାତ ଟିକିଏ ଅଟକିଗଲା । ସତରେ ପାରିବେ ସେ ? ଏ ମାୟା ଘୂର୍ଣ୍ଣିରୁ ନିଜକୁ ମୁକୁଳାଇ ପାରିବେ ? ଆଉ ସତରେ କ'ଣ ଫେରି ଯାଇ ପାରିବେ ଡ଼େରାଡୁନ୍‌ର ତାଙ୍କର ସେଇ ପରିଚିତ ଜଗତକୁ ?

ଅଧୈର୍ଯ୍ୟ ହୋଇ ଡ଼ାଇନିଙ୍ଗ୍ ଟେବୁଲ୍ ପାଖରୁ ହଠାତ୍ ଦୌଡି ଆସିଲା ବବି । ଜୋର୍‌ରେ ସୁପ୍ରଭାଙ୍କୁ ହଲେଇଦେଇ ପଚାରିଲା, ''ଆଈ, କ'ଣ ଭାବୁଛ ?'' ▫▫

# କୃଷ୍ଣା

ବାଇଶ ପାହାଚ ଓହ୍ଲେଇ ତରବର ହୋଇ ଗାଡ଼ି ପାଖକୁ ଯିବା ବେଳେ ଅଦିତିର ପାଦ ଟିକିଏ ରହିଗଲା। ଅରୁଣ ସ୍ତମ୍ଭର ବାଁ ପଟେ ରାସ୍ତା ଉପରେ ବସି ଜଗନ୍ନାଥଙ୍କର ବିଭିନ୍ନ ଜିନିଷ ବିକ୍ରି କରୁଛି ବୁଢ଼ାଟିଏ। ଆଉ ତା' ସାମ୍ନାରେ ଯିଏ ନଇଁ ପଡ଼ି ନିର୍ମାଲ୍ୟ କିଣୁଛନ୍ତି, ସେଇ ବୟସ୍କା ବିଧବା ସ୍ତ୍ରୀ ଲୋକ ଜଣଙ୍କୁ ସେ ଆଗରୁ କେଉଁଠି ଯେମିତି ଦେଖିଛି। ମା'ର କେହି ଚିହ୍ନା ପରିଚୟ ନା ଶ୍ୱଶୁର ଘରର କୋଉ ଦୂର ସମ୍ପର୍କୀୟ ଆତ୍ମୀୟ? ସାତ ବର୍ଷ ପରେ ନିଜ ଦେଶକୁ ଫେରିଲେ ଏମିତି ହୁଏ। ଚଟ୍‌କରି ଆଉ ମଣିଷମାନଙ୍କୁ ଚିହ୍ନି ହୁଏ ନାହିଁ।

ଅଦିତିର ପାଦର ଗତି କମିଯାଇଥିଲା। ଆସ୍ତେ ଆସ୍ତେ ଚାଲିକରି ଯାଉ ଯାଉ ସେ ଦୂରରୁ ତାଙ୍କୁ ଦେଖୁଥିଲା। ମହିଳା ଜଣକ ସଳଖି ଉଠି ଠିଆ ହେଲେ। "ଏଇ ଦୁଇଟା ଦେଇ ଦିଅ। ..କେତେ ହେଲା?" ଶାନ୍ତ ଗଳାରେ ମାତ୍ର କେଇ ପଦ କଥା। କିନ୍ତୁ ସେଇତକ ଯଥେଷ୍ଟ ଥିଲା ଅଦିତିପାଇଁ। ତା' ଅବଚେତନ ମନର ବଂଦ କବାଟ ଯେମିତି କିଏ ଖୋଲି ଦେଲା।

ଏ ତ ରଞ୍ଜିତା ମାଉସୀ। କୃଷ୍ଣାର ମା'। ତଥାପି ଅଦିତି ମନରେ ଟିକିଏ ସଂଦେହ ଥିଲା। ମୁହଁର ଗଢ଼ଣଟା ଛାଡ଼ିଦେଲେ ଆଉ କିଛିର ସାମଞ୍ଜସ୍ୟ ସେ ଖୋଜି ପାଉ ନ ଥିଲା। କଲେଜରେ ତା' ସାଙ୍ଗରେ ପଢ଼ୁଥିବା କୃଷ୍ଣାର ମା'ଙ୍କୁ ସେ ଶେଷ ଥର ପାଇଁ ଦେଖିଥିଲା କୋଉ ସାତ ଆଠ ବର୍ଷ ତଳେ। ଏତେ

ଦିନ ପରେ ଭୁଲ ହୋଇଯିବା ଅସ୍ୱାଭାବିକ ନୁହଁ। ତଥାପି ତାଙ୍କ ପାଖକୁ ଆଗେଇ ଗଲା ସେ। ସାମାନ୍ୟ ଇତସ୍ତତଃ ହୋଇ ପଚାରିଲା, ''କିଛି ମନେ କରିବେନି, ଆପଣ ରଞ୍ଜିତା ମାଉସୀ ?''

ବୁଲି ପଡ଼ି ତା' ମୁହଁକୁ ଚାହିଁଲେ ଭଦ୍ରମହିଳା। ଅଦିତିର କ'ଣ ଚିହ୍ନିବାରେ ଭୁଲ ହେଲା ?

''ହଁ। ତୁମେ...''

''ମାଉସୀ, ମୋତେ ଚିହ୍ନି ପାରିଲେନି ? ମୁଁ ପରା ଅଦିତି। କୃଷ୍ଣାର ସାଙ୍ଗ।'' ପରମ ଉତ୍ସାହରେ ସେ କହି ପକେଇଲା।

''ଓ।''

''ଆପଣ ଏଠି କେମିତି ? କ'ଣ ପୁରୀ ବୁଲି ଆସିଛନ୍ତି ?''

''ନା- ଏବେ ଏଇଠି ରହୁଛି।''

''କୃଷ୍ଣା ? କୃଷ୍ଣା ଏବେ କୋଉଠି ମାଉସୀ ?''

ଅଦିତିର ମନେହେଲା ମାଉସୀଙ୍କ ଦେହଟା ହଠାତ୍ କେମିତି କଠିନ ହୋଇଗଲା। କିଭଳି ଏକ ବିବ୍ରତ ଭାବ ମାଡ଼ି ବସିଲା ତାଙ୍କୁ। କିଛି ଭୁଲ ପ୍ରଶ୍ନ ପଚାରି ଦେଲା କି ସେ ?

ଧେତ୍- ସବୁଥିରେ ଗୋଟାଏ ଅର୍ଥ ଖୋଜିବା ତା'ର ବାଜେ ଅଭ୍ୟାସ ହୋଇ ଗଲାଣି। ଏମିତି ଗୋଟିଏ ସାଧାରଣ ପ୍ରଶ୍ନରେ ବିବ୍ରତ ହେବାର କ'ଣ ଅଛି ଯେ ? ରଞ୍ଜିତା ମାଉସୀ ଅଦିତି ମୁହଁକୁ ନିସ୍ପୃହ ଭାବରେ ଚାହିଁଲେ। ପ୍ରଶ୍ନର ଉତ୍ତର ଖୋଜୁଛନ୍ତି ଯେମିତି। ତା'ପରେ ଖୁବ୍ ସରୁ ଗଳାରେ କହିଲେ, ''ଏଇଠି ମୋ ପାଖରେ ଅଛି।''

''ଏଇଠି ? ସତରେ ?'' ଅଦିତି ପିଲାଙ୍କ ଭଳି ଖୁସୀ ହୋଇଗଲା। ଜିଭ ତଳେ ଆସି ଧାଡ଼ି ଲଗେଇଲେଣି ହଜାରେ ପ୍ରଶ୍ନ। ଇଚ୍ଛା ହେଉଥିଲା ସବୁତକ ଏକାଠି ପଚାରି ଦେବାକୁ। ହେଲେ ସେମିତି କ'ଣ ହୁଏ ? ଗାଡ଼ି ପାଖରେ ଠିଆ ହୋଇ ତା' ସାନ ଭାଇ ଅଜୟ ଆଉ ମା' ବ୍ୟସ୍ତ ହୋଇ ପଡ଼ିଲେଣି। ଭୁବନେଶ୍ୱର ପହଞ୍ଚି ସାଙ୍ଗେ ସାଙ୍ଗେ ଅଫିସ ଯିବ ଅଜୟ। ପୁଣି ମା' କାଖରେ କେଁ କେଁ ଆରମ୍ଭ କରିଦେଲାଣି ତା' ତିନି ବର୍ଷର ପୁଅ ବୁବୁନ୍। ତା' ଖାଇବା ସମୟ ହୋଇଗଲାଣି।

ଅଦିତି ପର୍ସ ଖୋଲି କାଗଜ ଖଣ୍ଡିଏ ବାହାର କଲା। "ମାଉସୀ, ଆପଣ ଏଇଠି ଆପଣଙ୍କ ଘର ଠିକଣାଟା ଲେଖି ଦିଅନ୍ତୁ! ମୁଁ ଆମେରିକା ଯିବା ଆଗରୁ ଆଉ ଥରେ ପୁରୀ ନିଶ୍ଚୟ ଆସିବି। ସେତେବେଳେ ଆପଣଙ୍କ ଘରକୁ ଆସି କୃଷ୍ଣାକୁ ଦେଖା କରିଯିବି।"

ଧୀର ଭାବରେ ମାଉସୀ କେବଳ କହିଲେ, "ହଉ।" ତାଙ୍କ ଆଖି ଉପରେ ବସି ଯାଇଥିବା ବରଫର ପରଦା ଅଦିତି ଦେଖି ପାରିଲା ନାହିଁ।

ପୁରୀରୁ ଭୁବନେଶ୍ୱର ଫେରିବା ବେଳେ ତା' ମନଟା ଫୁରୁ ଫୁରୁ ହୋଇ ଉଡୁଥିଲା। ଯା ହେଉ, ଜଣେ ତ କେହି ଏବେ ବି ରହିଛି ପାଖରେ। ଯିଏ ଅଦିତି ପାଖରେ ବସି କଲେଜ ଦିନର ଅଧ୍ୟାୟକୁ ପୁଣି ଥରେ ମେଲାଇ ଦେଇ ପାରିବ। ସେତେବେଳକାର ଛୋଟ ଛୋଟ କଥା ମନେ ପକାଇ ହୃଦୟ ଖୋଲି ହସି ପାରିବ।

ସାତ ଦିନ ତଳେ ଆମେରିକାରୁ ଆସି ଭୁବନେଶ୍ୱର ପହଞ୍ଚିବା ପରେ କେବଳ ସେଇ ଗୋଟିଏ ଜିନିଷ ନେଇ ଅଦିତିର ମନ ଭିତରେ ଟିକିଏ ଦୁଃଖ ରହିଯାଇଥିଲା। କଲେଜ ଦିନର ସାଙ୍ଗମାନେ କିଏ ଯେ କୁଆଡ଼େ ସବୁ ରହିଲେଣି, ସେମାନଙ୍କ ସାଙ୍ଗରେ ଆଉ ଦେଖା ହୋଇ ପାରିଲା ନାହିଁ। ଚିଠି ପତ୍ରର ସମ୍ପର୍କ କେବଳ ଜଣଙ୍କ ସାଙ୍ଗରେ। ସେ ହେଲା ଅରୁଣା। ସେ ବି ଏତିକି ବେଳେ ଟୁର୍‌ରେ ପଳେଇଛି ଦିଲ୍ଲୀ। କେବେ ଫେରିବ ଜଣା ନାହିଁ। ତେଣୁ କୃଷ୍ଣା ସାଙ୍ଗରେ ଯୋଗାଯୋଗର ବ୍ୟବସ୍ଥା ହୋଇଯିବା ପରେ ଅଦିତିର ମନ ଖୁସୀ ହୋଇଯିବା ସ୍ୱାଭାବିକ। ଦିନଗୁଡ଼ାକ ଶୀଘ୍ର ଶୀଘ୍ର କଟିଯାଇ ପୁଣି ଥରେ ପୁରୀ ଯିବା ଦିନ ଆସିଯାଆନ୍ତା ନାହିଁ!

ଅଦିତି ମନକୁ ମନ ହସି ପକେଇଲା। ସବୁବେଳେ ତା'ର ଏମିତି ଅଧୈର୍ଯ୍ୟ। ଆଉ କେଇଟା ଦିନ ସେ ଅପେକ୍ଷା କରି ପାରିବିନି କୃଷ୍ଣାକୁ ଦେଖା କରିବାକୁ? ଅରୁଣା ଭଳି କୃଷ୍ଣା ତା'ର ଏତେ ଘନିଷ୍ଠ ନ ଥିଲା, ତଥାପି ବେଶ୍ ଭଲ ବନ୍ଧୁତ୍ୱ ଥିଲା ତା' ସାଙ୍ଗରେ। ବଡ଼ ଶାନ୍ତଶିଷ୍ଟ ଇନ୍‌ଟେନ୍‌ସ ଝିଅ। କଥା କହୁଥିଲା ସଜେଇ କରି, ଓଠରେ ସବୁବେଳେ ଖେଳୁଥିଲା ହସ। ଅନ୍ୟମାନଙ୍କ ଭଳି ଯୁକ୍ତି ତର୍କ କରି ଗଗନ ପବନ କମ୍ପାଉ ନ ଥିଲା। ହୋ'ହଲ୍ଲା କରି କଲେଜ ଉଠାଇ ପକାଉ ନ ଥିଲା। ଚାଲିଚଳଣରେ ତା'ର କେମିତି ଗୋଟିଏ ସୌଷ୍ଠବ ରହିଥିଲା।

ସେଥିପାଇଁ ଦେଖିବାକୁ ଅତିଗୁଡ଼ାଏ ସୁନ୍ଦର ନ ହୋଇଥିଲେ ମଧ୍ୟ ଭାରି ଭଲ ଲାଗୁଥିଲା ସେ।

ଆଉ ସେଇ ଯେଉଁ ତା'ର ଭଲପାଇବାର ମଣିଷଟି? ଅଦିତିର ଓଠ କଣରେ ହସ ଖେଳିଗଲା। କଲେଜର ଦ୍ୱିତୀୟ ବର୍ଷରୁ ସମସ୍ତେ ଜଣାଜଣି ହୋଇଯାଇଥିଲେ ଯେ କୃଷ୍ଣାର ଜଣେ ବୟ ଫ୍ରେଣ୍ଡ ଅଛି। ବୟ୍ ଫ୍ରେଣ୍ଡ୍ କହିଲେ ଯେଉଁ ହାଲୁକା ରୋମାନ୍ସ କଥା ମନକୁ ଆସେ, ଏ ସେଇମିତି କଫି ହାଉସ୍ ବା ସିନେମା ହଲ୍‌ର ସାଥି ନୁହଁ। ତା'ଠାରୁ ଅଧିକ କିଛି। କୃଷ୍ଣା ସିନା ଉପରେ ପଡ଼ି କାହାକୁ କିଛି କହୁ ନ ଥିଲା, କିନ୍ତୁ ତା' ଆଖିର ନରମ ଚାହାଣୀ, ବିନା କାରଣରେ ଓଠରେ ଖେଳି ଯାଉଥିବା ମାଦକଭରା ହସ କହିଦେଉଥିଲା ଯେ ସେ ତା'ମନର ମଣିଷକୁ ଖୋଜି ପାଇ ଯାଇଛି। କିଏ ଜଣେ ସେଇ ପୁଅଟିର ନାଁକୁ କଲେଜରେ ପ୍ରଚାର କରି ଦେଇଥିଲା - ପାର୍ଥସାରଥୀ। ଡ଼ବଡ଼ବୀ ଅରୁଣା କପାଳରେ ହାତ ଦେଇ କହିଥିଲା, ''ଆରେ ଯାଃ - ବଡ଼ ବେଖାପ ହୋଇଗଲା ନାଁ ଟା। କୃଷ୍ଣାର ପ୍ରିୟ ମଣିଷ ସିନା ପାର୍ଥ ହେବା କଥା। ପାର୍ଥସାରଥୀଙ୍କୁ ସେ ପୂଜା କରିପାରେ, ନୈବେଦ୍ୟ ଦେଇପାରେ, କିନ୍ତୁ ଭଲପାଇବାଟା ତ ପୋଷାଇବ ନାହିଁ... ଏଇ କୃଷ୍ଣା, ତୁ ତୋର 'ତାଙ୍କୁ' ଆଫିଡ଼ାଭିଟ୍ କରି ନାଁଟା କେବଳ ପାର୍ଥ କରିଦେବାକୁ କହି ଦେ। ତେବେ ସିନା ମାନିବ।''

କିଛି ନ କହି କୃଷ୍ଣା ଅଳ୍ପ ହସି ମୁଣ୍ଡ ତଳକୁ ପୋତି ଦେଇ ଚାଲିଯାଇଥିଲା ସବୁଦିନ ଭଳି। ହେଲେ ତା' ପରଠୁଁ କଥା ରହିଯାଇଥିଲା - 'କୃଷ୍ଣାର ପାର୍ଥ'। ଅଦିତିକୁ କିଏ ଜଣେ ଥରେ ମାଷ୍ଟର କ୍ୟାଣ୍ଟିନ୍ ଛକ ପାଖରେ ଦେଖାଇ ଦେଇଥିଲା ସେଇ ପୁଅଟିକୁ - ''ହେଇ ଦେଖ ଦେଖ, କୃଷ୍ଣାର ପାର୍ଥ।''

ସାଧାରଣ ଚେହେରା, ସାଧାରଣ ଉଚ୍ଚତା ନେଇ କୋଡ଼ିଏ ବାଇଶ ବର୍ଷର ଯୁବକଟିଏ। ଗୁଡ଼ାଏ ହ୍ୟାଣ୍ଡସମ୍ ନୁହଁ କି ଗୁଡ଼ାଏ ବୁଦ୍ଧିମତ୍ତା ତା' ମୁହଁରେ ଝଲମଲ କରୁନାହିଁ। ସାଧାରଣ କଲେଜରୁ ବି.ଏ. ପାସ କରିବା ପରେ ସେ ରିଜିଓନାଲ କଲେଜରେ ବି.ଏଡ୍. କରୁଛି। ଅଦିତିକୁ ଭାରୀ ଆଶ୍ଚର୍ଯ୍ୟ ଲାଗିଯାଇଥିଲା। ଏଇ ପୁଅଟି ଭିତରେ କ'ଣ ଏମିତି ଦେଖିଲା କୃଷ୍ଣା? କି ସ୍ୱପ୍ନର ମୋହରେ ସେ ନିଜକୁ, ନିଜର ଜୀବନକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରିଦେଲା?

କେଜାଣି, କିଛି ଥିବ ନିଶ୍ଚୟ ସେଇ ପୁଅଟି ଭିତରେ। ନହେଲେ କି

କୃଷ୍ଣା ଭଳି ସିରିୟସ ଝିଅ ଏତେ ଗଭୀର ଭାବରେ ପ୍ରେମ କରିବସିଥାଆନ୍ତା ? ଅଦିତି ନିଜକୁ ନିଜେ କହିଲା । ତଥାପି ତା' ମନରେ ସଂଦେହଟିଏ ଥିଲା । କ'ଣ ହେବ ତା' ବାପା ମା' ଜାଣିଲେ ଏ ବିଷୟରେ ? ସେମାନେ ଅବଶ୍ୟ ଏତେଟା ରକ୍ଷଣଶୀଳ ନୁହନ୍ତି । କିନ୍ତୁ ନିଜ ଝିଅ କଥା ଯେତେବେଳେ...

ଦିନେ ଜାଣିଗଲେ ସେମାନେ । ଭୁବନେଶ୍ୱର ଆଧୁନିକ ସହର ହୋଇପାରେ, କିନ୍ତୁ ପ୍ରେମ ଭଳି ଘଟଣା ଏଠି ବେଶୀ ଦିନ ଲୁଚି ରହେ ନାହିଁ । ଆଉ ଥରେ କୃଷ୍ଣା ବିଷୟରେ ଜାଣିବା ପରେ ଯେଉଁ ଭୟ ଅଦିତି ମନରେ ଥିଲା ସେଇଟା ସତ ହୋଇଗଲା । ମଉସା ମାଉସୀ ଆକାଶ ପୃଥିବୀ ଏକ କରି ଥୋଇ ଦେଲେ । ହୁଏତ ଭଲ ଘରର ଭଲ ଚାକିରି କରୁଥିବା ବ୍ରାହ୍ମଣ ପିଲା ହୋଇଥିଲେ ସେମାନେ ମାନିନେଇଥାଆନ୍ତେ । କିନ୍ତୁ ଏ ଯେ ନିମ୍ନ ମଧ୍ୟବିତ୍ତ ପରିବାରର କରଣ ପିଲା । ବି.ଏଡ୍. ପରେ ହୁଏତ ସାଧାରଣ ଚାକିରିଟିଏ ଯୋଗାଡ଼ କରି ନେବ, କିନ୍ତୁ କୃଷ୍ଣାର କ'ଣ ସେ ଯୋଗ୍ୟ ?

ଘରର ଦୁଃସହ ପରିସ୍ଥିତି ସମ୍ପର୍କରେ ମୁହଁ ଖୋଲି କୃଷ୍ଣା କାହାକୁ କିଛି କହିବାର ଆବଶ୍ୟକତା ନ ଥିଲା । ସବୁ ପ୍ରତିବିମ୍ବିତ ହୋଇଯାଉଥିଲା ତା' ଚେହେରାରେ । ତା' ଓଠରେ ସବୁବେଳେ ଖେଳି ବୁଲୁଥିବା ହସ ଖଣ୍ଡକ ଆଉ ଦେଖିବାକୁ ମିଳୁ ନ ଥିଲା ।

ହଠାତ୍ ଦିନେ ତା'ର କଲେଜ ଆସିବା ବନ୍ଦ ହୋଇଗଲା । କୃଷ୍ଣା ଘର ପାଖରେ ରହୁଥିବା ଝିଅଟି କହିଲା ଯେ ଟି.ସି. ନେଇ ତାକୁ ଦିଲ୍ଲୀ ପଠାଇ ଦେଇଛନ୍ତି ତା' ବାପା ମା' । ସେ ସେଇଠି ମାଉସୀ ଘରେ ରହି ବି.ଏ. ପଢ଼ିବ । କିଛି ନ ହେଲେ ଦୂରେଇ ତ ରହିବ ସେ ପାର୍ଥ ସାରଥୀଠୁଁ ।

ଘଟଣାଟା ଦିନା କେତେ ଅଦିତିର ସାଙ୍ଗ ମହଲରେ ଭୀଷଣ ଚର୍ଚ୍ଚାର ବିଷୟ ହୋଇ ପଡ଼ିଥିଲା । ସେମାନେ ଯେଉଁ ମୁହଁ ବଢ଼ା, ନାରୀ ସ୍ୱାଧୀନତା ନେଇ ଯୁକ୍ତି କରୁଥିବା ଝିଅଦଳକ ଥିଲେ, ସେମାନେ ଏଭଳି କିଛି ଚୁପଚାପ ମାନି ନେଇ ପାରିଲେ ନାହିଁ । ଏ କେଉଁ ମାନଧାତା ଅମଳର କଥା ହୋଇଛି ନା କ'ଣ ? ଉଣେଇଶ ବର୍ଷର ସାବାଳିକାକୁ ତୁମେ କେଉଁ ଅଧିକାରରେ ଏମିତି ଧରିବାଂଧି ଦୂରକୁ ଚାଲାଣ କରି ଦେବ ?

ଅରୁଣା ହସିଥିଲା । କହିଥିଲା, ''ତୁମେ ସବୁ ଭାବୁଛ କୃଷ୍ଣା ଭଳି ଝିଅ

ନୀରବ ଭାବରେ ଏଭଳି ନିଷ୍ପତ୍ତି ମାନିନେବା । ଆରେ ସେ ଭିନ୍ନ ଉପାଦାନରେ ଗଢ଼ା । ତା' ଭଳି ଝିଅମାନେ ଥରେ ମନ ସ୍ଥିର କରି ନେଲେ ଆଉ ହଲନ୍ତି ନାହିଁ । ଏବେ ସେ କେବଳ ତା' ପାଠ ପଢ଼ା, ଆଉ ପାର୍ଥର କୋର୍ସ ଶେଷ ହେବା ଅପେକ୍ଷାରେ ରହିଛି । ଥରେ ନିଜ ଗୋଡ଼ରେ ନିଜେ ଠିଆ ହେଲେ ସେମାନଙ୍କୁ ଧରି ରଖେ କିଏ ?''

''ଏତେଗୁଡ଼ାଏ ସମୟ ଭିତରେ ଯଦି ସେ ପୁଅ ତାକୁ ଭୁଲିଯାଏ, ତେବେ...''

''ଆରେ ଯାଃ - ପାର୍ଥ କେବେ ତା' କୃଷ୍ଣାକୁ ଭୁଲିଛି ନା ଭୁଲିପାରିବ ?''

ହସାହସିରେ ସେଦିନର ଆଲୋଚନା ଶେଷ ହୋଇଯାଇଥିଲା । ତା'ପରେ କୃଷ୍ଣା କଥା କେବେ ଯେ ଉଠିନି ତା' ନୁହଁ । କିନ୍ତୁ ଅନେକଟା ଥଣ୍ଡା ପଡ଼ିଯାଇଥିଲା ବିଷୟଟି । ଆଗରେ ଯେ ଫାଇନାଲ ପରୀକ୍ଷା । ଆଉ ପରୀକ୍ଷା ସରିବା ପରେ ପରେ ହିଁ ସଞ୍ଜୀବ ସାଙ୍ଗରେ ଅଦିତିର ବାହାଘର ହୋଇ ସେ ଆମେରିକା ଚାଲିଗଲା । ସେଇ ଯେଉଁ ଦେଶ ଛାଡ଼ିଥିଲା, ତା'ପରେ ଏଇ ଏବେ ଆସିଛି । ଏତେ ବର୍ଷ ପରେ ତା'ର କେତେ କଥା ଗପିବାର ଅଛି କୃଷ୍ଣା ସାଙ୍ଗରେ । କୃଷ୍ଣାର ନିଜ କଥା, ତା' ପାର୍ଥ କଥା ଆଉ ଅଦିତିର ସାତ ବର୍ଷର ନୂଆ ଜୀବନ କଥା । ମନଟା ପୁଲକିତ ହୋଇଯାଉଥିଲା ତା'ର ।

ଘରେ ପହଞ୍ଚୁ ପହଞ୍ଚୁ ଆଉ ଗୋଟିଏ ଆନନ୍ଦ ଅଦିତି ପାଇଁ ଅପେକ୍ଷା କରିଥିଲା । ମା'ଙ୍କୁ କାମରେ ସାହାଯ୍ୟ କରୁଥିବା ଅଠର ବର୍ଷର ଝିଅ ଶ୍ୟାମଳୀ ଗେଟ୍ ଖୋଲିବା କ୍ଷଣି କହିଲା, ''ନାନୀ ମ, ତୁମର ଜଣେ ସାଙ୍ଗ ଆସିଛନ୍ତି । ବାବୁ କହିଲାରୁ ତାଙ୍କୁ ମୁଁ ଦାଣ୍ଡ ଘରେ ବସାଇ ରଖିଛି । ଅରୁଣା ନା କ'ଣ ।''

ଅରୁଣା !! ସେ ଫେରିଲାଣି ଦିଲ୍ଲୀରୁ ! ଅଦିତି ''ମାମା ମାମା'' ହେଉଥିବା ବୁବୁନ୍ ମୁହଁକୁ ନ ଚାହିଁ ଦାଣ୍ଡ ଘରେ ପଶିଗଲା । ଆଉ ଅରୁଣା ହାତ ଧରି ତା' ରୁମ୍‌କୁ ଟାଣି ନେଉ ନେଉ ସବୁତକ ନାଲିସ କରିଦେଲା, ''ତୋତେ ଏତେ ଆଗରୁ ଚିଠି ଦେଇ ରଖିଲି । ତଥାପି ତୁ ପଳେଇଲୁ ଦିଲ୍ଲୀ ?''

''କ'ଣ କରିବି କହ । ଚାକିରି କଥା । ଆଜି ସକାଳୁ ଆସି ପହଞ୍ଚିଛି । ଦେଖ୍, ଏଠିକି ଆସିବି ବୋଲି ଅଫିସ ମଧ୍ୟ ଆଜି ଗଲିନି ।''

''ଭଲ କଲୁ । ଚାହା ପିଇବୁ ତ ?''

''ନିଶ୍ଚୟ ।''

ଶ୍ୟାମଳୀ ଆସି ମିଠା, ବାରମଜା, ଚାହା ଘର ଭିତରେ ଦେଇଗଲା। କାଚ ଗ୍ଲାସ୍‌ରେ ସୁଡୁ ସୁଡୁ କରି ଚାହା ପିଉ ପିଉ ଅତି ସାଧାରଣ କଥାରେ ହସି ହସି ଗଡ଼ି ଯାଉଥିଲେ ଅଦିତି ଆଉ ଅରୁଣା। ଗପିବାକୁ ଏତେ କଥା ଅଛି ?

ହଠାତ୍ ଅଦିତିର କ'ଣ ଯେମିତି ମନେ ପଡ଼ିଗଲା। ''ଏଇ ଅରୁଣା, ଜାଣିଚୁ ? ଆଜି ମନ୍ଦିର ସାମ୍ନାରେ ମୋର ରଞ୍ଜିତା ମାଉସୀଙ୍କ ସାଙ୍ଗରେ ଦେଖା ହୋଇଗଲା। କୃଷ୍ଣାର ମା' ମ। କି ବଦଳି ଯାଇଛନ୍ତି। ସେ ଏବେ ପୁରୀରେ। ସେ କହିଲେ କୃଷ୍ଣା କୁଆଡ଼େ ସେଇଠି ଅଛି। ତାଙ୍କ ପାଖରେ। ମୁଁ ତ କହିଛି ପୁଣି ଥରେ ପୁରୀ ଗଲେ ନିଶ୍ଚୟ ଦେଖା କରିବାକୁ ଯିବି। ଏଥର ତୁ ବି ଚାଲ। ଜମେଇକରି ଆଡ୍ଡା ଦିଆ ହେବ।''

କିଛି ସମୟ ପାଇଁ ଚୁପ ରହିଲା ଅରୁଣା। ଯେତେବେଳେ କଥା କହିଲା, ସେତେବେଳେ କେମିତି ଗମ୍ଭୀର ଲାଗୁଥିଲା ତା' ଗଳାର ସ୍ୱର। ଆଗର ଖୁସି ଖୁସି ଭାବ ହଜି ଯାଇଥିଲା। ଧୀରେ ଧୀରେ କହିଲା, ''ଏ କୃଷ୍ଣା ଆଉ ସେ ଆଗର କୃଷ୍ଣା ନାହିଁ ରେ।''

''ମାନେ ?''

''ବହୁତ ବଦଳି ଯାଇଛି ସେ।''

ଅଦିତି ଅରୁଣା ଆଖିରେ ଆଖି ରଖିଲା। ''ସାତ ବର୍ଷ ଭିତରେ ଜଣେ ମଣିଷ ଆଉ ବଦଳନ୍ତା ନାହିଁ ? ତୁ ବଦଳିନୁ ? ମୁଁ ବଦଳିନି ? ତାହେଲେ...''

''ସେ କଥା ନୁହଁ, ଅଦିତି।'' ଅରୁଣା ଢୋକ ଗିଳି କଥା ଆରମ୍ଭ କଲା।

କୃଷ୍ଣାକୁ ମାଉସୀ ଘରେ ଛାଡ଼ି ଦେଇ ତା' ବାପା ମା' କିଛି ମାସ ପାଇଁ ନିଶ୍ଚିନ୍ତ ହୋଇଯାଇଥିଲେ। କିନ୍ତୁ ଦିନେ ମାଉସୀ ପୁଅ ଭାଇର ଗୋଇନ୍ଦା ସୂତ୍ରରୁ ଜଣା ପଡ଼ିଲା ଯେ ଶହ ଶହ ମାଇଲ ଦୂରରେ ଥିବା ଦୁଇ ପ୍ରେମୀଙ୍କ ଭିତରେ ମନର ଖେଳ ଏବେବି ଅବ୍ୟାହତ ରହିଛି। ପାର୍ଥସାରଥୀ ନିୟମିତ ଭାବରେ କୃଷ୍ଣାକୁ କଲେଜ ଠିକଣାରେ ଚିଠି ପଠାଉଛି ଏବଂ ତା'ର ପ୍ରତ୍ୟୁତ୍ତର ମଧ୍ୟ ଠିକ୍ ସେଭଳି ନିୟମିତ ଭାବରେ ଦେଉଛି କୃଷ୍ଣା।

କୃଷ୍ଣାର ଖାତା ଭିତରୁ ଉଦ୍ଧାର କରିଥିବା ଚିଠି ଦୁଇଖଣ୍ଡ ହାତରେ ଧରି ଦୀପୁ ଭାଇନା ହିନ୍ଦୀ ସିନେମାର ଭିଲେନ୍ ଭଳି ଠିଆ ହେଲା। ''ହୁଁ, ନଟ୍

ବ୍ୟାଡ୍। ନଟ୍ ବ୍ୟାଡ୍ ଆଟ୍ ଅଲ୍।''

ଏଥର କୃଷ୍ଣା ଭାବିଲା ପ୍ରଳୟ ହୋଇଯିବ। ବାପାଙ୍କ ପାଖକୁ ଖବର ଯିବ। ଆଉ ଚିଠି ପାଇ ହାଜର ହୋଇଯିବେ ବାପା। ମା' ବି କ'ଣ ଆସିବ ?...

ନା- ତା' ବାପା ଆସିଲେ ନାହିଁ। ମା' ମଧ୍ୟ ନୁହଁ। କେବଳ ବାପାଙ୍କ ଅଫିସ୍‌ର ଜଣେ କଲିଗ୍ ଛୋଟ ଖବର ଦେଇ ଫୋନ୍‌ଟିଏ କରିଥିଲେ। 'ରାଧାରଞ୍ଜନ ବାବୁ ଅସୁସ୍ଥ। ତାଙ୍କର ହାର୍ଟ ଟ୍ରବଲ୍ ବାହାରିଛି। ଝିଅକୁ କହିବେ ଶୀଘ୍ର ଆସିବ।'

କୃଷ୍ଣା ସେଇଦିନ ନୀଳାଚଳ ଏକ୍ସପ୍ରେସ୍‌ରେ ବସି ଏକାମୁହାଁ ହୋଇ ଘରକୁ ଚାଲିଆସିଥିଲା। ଛାତିରେ କୋହ। ଆଖିରେ ଲୁହ। ମାତ୍ର ସତଚାଳିଶ ବର୍ଷ ବୟସରେ କ'ଣ ଏମିତି ହୋଇଗଲା ବାପାଙ୍କର। କେବଳ ହାର୍ଟ ଟ୍ରବଲ୍ ବାହାରିଛି ନା ଆଉ ଅଧିକ କିଛି। ସେ ଦୂରରେ ଅଛି ବୋଲି କଥା ଲୁଚାଉ ନାହାନ୍ତି ତ ?

ଗାଡ଼ି ଲେଟ୍ ହୋଇ ସେ ଘରେ ପହଞ୍ଚିଲା ବେଳକୁ ସଂଧ୍ୟା ପାଞ୍ଚଟା। ସେଇ ଅସମୟରେ ଖଟ ଉପରେ ଚିତ ହୋଇ ନିଦରେ ଶୋଇ ରହିଥିଲେ ବାପା। ପାଖରେ ମା' ବସିଥିଲେ। ଝିଅକୁ ଦେଖି ଜଡ଼େଇ ଧରିଲେ ନାହିଁ। ଗୁଡ଼ାଏ ଖୁସୀ ହୋଇଗଲେ ନାହିଁ। ବହୁ ବର୍ଷ ଧରି ଶୋଇ ରହିଥିବା ଆଗ୍ନେୟଗିରି ଜୀବନ ପାଇଲେ ଯେମିତି ଗର୍ଜି ଉଠେ, ଠିକ୍ ସେଇମିତ ଫାଟି ପଡ଼ିଲେ ସେ। ''କ'ଣ ଚାହୁଁଛୁ? କହ, କ'ଣ ଚାହୁଁଛୁ? ଆଉ କ'ଣ ହେଲେ ତୋ ମନ ଶାନ୍ତି ହେବ ?''

କୃଷ୍ଣା ସ୍ତବ୍ଧ। ମା' ଏସବୁ କ'ଣ କହୁଛି ? ଏମିତି ସମୟରେ ଏସବୁ କଥା କାହିଁକି ? ତେବେ କ'ଣ ତା'ରି ପାଇଁ ବାପାଙ୍କର ଏ ଅବସ୍ଥା ! ତା' ପାଦତଳୁ ମାଟି ଘୁଞ୍ଚି ଯାଉଥିଲା। ମୁଣ୍ଡ ଉପରେ କୁଢ଼େଇ ପଡୁଥିଲା ଆକାଶ। ''ମା'...'' କୃଷ୍ଣାର ସ୍ୱର ଭଙ୍ଗା ଭଙ୍ଗା।

''ମା' ବୋଲି ଡ଼ାକିବାକୁ ଲାଜ ଲାଗୁନି ତୋତେ ? ଏମିତିଆ ଝିଅକୁ ମୁଁ ଜନ୍ମ ଦେଇଥିଲି ଯେ ସହରରେ ନାକ କାଟି ରଖି ଦେଲା। ବାର ଲୋକଙ୍କର ମୁହଁରେ ବାର କଥା। ସାନ ଭଉଣୀ ଦିଇଟାଙ୍କର ଘରୁ ପଦାକୁ ବାହାରିବା ବଂଦ ହୋଇଗଲାଣି। ଭାବିଥିଲି ଦିଲ୍ଲୀ ଯାଇ ବୁଦ୍ଧି ଫେରିବ। ସତ୍ ବାଟରେ ଏଥର ଯିବ। ହେଲେ ଦେଖ - ଏ ତ ଆମ ଜୀବନ ନେବାକୁ ବସିଲାଣି।''

କୃଷ୍ଣା ଏ ଅତର୍କିତ ଆକ୍ରମଣରେ ଲହୁଲୁହାଣ ହୋଇଗଲା। ସେ ତେବେ ଅସତ୍ ବାଟରେ ଚାଲିଯାଇଥିଲା ! କାହାକୁ ମନ ଦେଇ ଦେଲେ, କାହା ପାଇଁ ଛାତି ଭିତରେ ସ୍ୱପ୍ନର ଢେଉ ଖେଳାଇଲେ, ସେଇଟା କ'ଣ ଅସତ୍‌ପଣିଆରେ ଯାଏ ?

ମା' ପାଟିରେ ବାପାଙ୍କର ନିଦ ଭାଙ୍ଗିସାରିଥିଲା। ସେ ମଧ୍ୟ ଢୁଲୁଢୁଲୁ ହୋଇ ଝିଅକୁ ଦେଖୁଥିଲେ। ଆଖିରେ ଆଖିଏ ଶୋକ।

ଆଖି ତଳକୁ କଲା କୃଷ୍ଣା। ଆଖି ଦେଇଁ ଯେ ଲୁହ ସବୁ ବୋହି ଆସୁଛନ୍ତି। ଅଟକେଇ ପାରୁନି ସେ।

ହଠାତ୍ ତା' ହାତଟା ଧରି ମା' ତାକୁ ଟାଣି ନେଲା। ବାପାଙ୍କ ପାଦ ଉପରେ ତା' ନିଜ ହାତଟା ମାଡ଼ି ଦେଇ ତୀବ୍ରସ୍ୱରରେ କହିଲା, ''ପ୍ରତିଜ୍ଞା କର। ବାପାଙ୍କ ପାଦ ଛୁଇଁ ପ୍ରତିଜ୍ଞା କର। ଆଉ ଦିନେ ସେ ପିଲା ସାଙ୍ଗରେ ସମ୍ପର୍କ ରଖିବୁନି କି ତାକୁ ବାହା ହେବାକୁ ଜିଦି ଧରି ବସିବୁନି।''

କିଏ ଯେମିତି ବାଳର ମୁଠି ଧରି କୃଷ୍ଣାର ମୁଣ୍ଡକୁ ଉପରକୁ ଝିଙ୍କିଦେଲା। ଯେଉଁ ଆଖିରୁ କିଛି ସମୟ ଆଗରୁ ଅବାରିତ ଗତିରେ ଲୁହର ବୈତରଣୀ ବୋହି ଯାଉଥିଲା, ସେଇ ଆଖି ଦିଇଟା ଏମିତି ଶୁଖିଲା ଠକଠକ ହେଲା କେମିତି ? କୃଷ୍ଣା ଦେହରୁ ନିଗାଡ଼ି ହୋଇ ଜୀବନୀ ଶକ୍ତି ଚାଲି ଯାଉଛି। ସେ କିଛି କରି ପାରୁନି, କିଛି ବୁଝି ପାରୁନି। କୋହର ଜୁଆରରେ ଏତେ ସମୟ ଟଳୁଥିବା ଶରୀରକୁ କେହି ଯେମିତି କାଉଁରି କାଠି ଛୁଆଁଇ ପଥର କରି ଦେଇଛି।

ପାଟିରୁ ପଦଟିଏ କଥା ବାହାରୁ ନ ଥିଲା ତା'ର। ସେ ଥରେ ମା'କୁ, ପୁଣି ଥରେ ବାପାଙ୍କୁ ଚାହିଁଲା। ବାପାଙ୍କର ଓଠ ଥରିଗଲା, ''କଥା ଦେ ମା'।''

କୃଷ୍ଣାର ପାଦ ଦିଇଟା ଅସାଡ଼ ହୋଇ ଯାଉଛନ୍ତି। ଆଉ ଠିଆ ହେବାର ଶକ୍ତି ତା'ର ନାହିଁ। ବିଛଣା ଉପରେ ଧପ୍ କରି ବସିଯାଇ କେମିତି ଏକ ଚାପା ସ୍ୱରରେ ସେ କହିଲା, ''ବେଶ୍, ତୁମେ ଯାହା ଚାହୁଁଛ ସେୟା ହେବ। ମୁଁ କଥା ଦେଲି। ଆଜିଠୁଁ ମୁଁ କାହା ସାଙ୍ଗରେ କୌଣସି ସମ୍ପର୍କ ରଖିବି ନାହିଁ।'' ମନକୁ ମନ ବିଳିବିଳି କରି ଯୋଡ଼ିଲା, 'ପାର୍ଥ ସାଙ୍ଗରେ ନୁହଁ କି ଆଉ କାହା ସାଙ୍ଗରେ ନୁହଁ।'

କିଛି ଦିନ ଭିତରେ କୃଷ୍ଣାର ବାପା ସୁସ୍ଥ ହୋଇଗଲେ। ତାଙ୍କର ତ ସେମିତି

ଜୀବନ ନେଇ ଟଣା ଓଟରା ହେବା ଭଳି ହାର୍ଟ ଟ୍ରବଲ୍ ବାହାରି ନ ଥିଲା। କିଛି ଔଷଧ ଆଉ କିଛି ବିଶ୍ରାମ ହିଁ ଯଥେଷ୍ଟ ଥିଲା। ସେ ଯେଉଁ ଦିନ ଚାକିରିରେ ଜଏନ୍ କଲେ, ସେଇଦିନ ହିଁ ଦିଲ୍ଲୀ ଫେରି ଗଲା କୃଷ୍ଣା।

ଏ ଯେମିତି ଗୋଟିଏ ଭିନ୍ନ କୃଷ୍ଣା। କିଛିଟା ଗମ୍ଭୀର। କିଛିଟା ଅନ୍ୟମନସ୍କ। ନିଜ ଭିତରେ, ଗୋଟାଏ ନିଜସ୍ୱ ପୃଥିବୀରେ ନିଜକୁ ବନ୍ଦୀ କରି ରଖି ଦେଇଥିଲା ସେ। ତା'ରି ଭିତରେ କିଛିଟା ଗତାନୁଗତିକତା। ମାଉସୀ ଘର, କଲେଜ, ଲାଇବ୍ରେରୀ, ପୁଣି ମାଉସୀ ଘର। ଏହାରି ଭିତରେ ଘୂରୁ ଘୂରୁ ଦିନେ ବି.ଏ ପାସ କରିଗଲା ଓ ଏମ୍.ଏ ପଢ଼ିବା ପାଇଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଆଡ୍‌ମିସନ୍ ନେଲା।

ଏବଂ ସେତିକିବେଳେ ଦିନେ ଘଟିଗଲା ଘଟଣାଟି। ସେଦିନ ୟୁନିଭର୍‌ସିଟିରୁ ଦିପହରେ ଫେରିବା ବେଳେ ବସ୍ ମିଳିଲା ନାହିଁ ତାକୁ। ଦେହ ବି ଖୁବ୍ ଗୋଟାଏ ଭଲ ନ ଥିଲା। ସେଥିପାଇଁ ଖରାରେ ଆଉ ଅଧିକ ସମୟ ଠିଆ ନ ହୋଇ ଅଟୋରିକ୍ସାରେ ମାଉସୀ ଘରକୁ ଫେରିଯାଉଥିଲା ସେ। ବୁଲାଣିଆ ବାଟରେ ନ ଯାଇ ରିଜ୍ ଦେଇ ଗାଡ଼ି ନେଇଗଲା ଅଟୋରିକ୍ସାବାଲା। ଅନ୍ୟ ଦିନ ହୋଇଥିଲେ ବୋଧହୁଏ କୃଷ୍ଣା ମନା କରିଥାଆନ୍ତା। ବେଶୀ ପଇସା ପଡୁ ପଛକେ ଆର ବାଟେ ଯିବାକୁ କହିଥାଆନ୍ତା। କିନ୍ତୁ ସେଦିନ ତା'ର ନିଜ ଭିତରେ ବି କିଛିଟା ଅସ୍ଥିରତା। ଶୀଘ୍ର କେମିତି ଘରେ ପହଞ୍ଚିବ। ନେଉ ଯେଉଁପଟେ ହେଲେ।

ରିଜ୍ ଦେଇ ଓହ୍ଲେଇଗଲା ବେଳେ ହଠାତ୍ ମାରୁତି ଭ୍ୟାନ୍‌ଟିଏ ଅଟକିଗଲା ଅଟୋରିକ୍ସା ସାମ୍ନାରେ। ଦୁମଦୁମ କରି ଭ୍ୟାନ୍ ଭିତରୁ ଡ଼େଇଁ ପଡ଼ିଲେ ପାଞ୍ଚଟା ଟୋକା। ଅଟୋରିକ୍ସାବାଲାକୁ ଭୁସିଟାଏ ମାରି ଏକା ଟଣାରେ କୃଷ୍ଣାକୁ ଠେଲି ଭର୍ତ୍ତି କରିଦେଲେ ଗାଡ଼ିର ପଛ ସିଟ୍‌ରେ।

ଏସବୁ ଏତେ କମ୍ ସମୟ ଭିତରେ ହୋଇଗଲା ଯେ ନିଜେ କୃଷ୍ଣା କିଛି ବୁଝି ପାରିଲା ନାହିଁ। ପାଟି କରିବାର ଅବସର ମଧ୍ୟ ପାଇଲା ନାହିଁ। ପାଟି କରିଥିଲେ କିଏ ବା ଶୁଣିଥାଆନ୍ତା ? ଦିନ ଦି'ପହରେ ରିଜ୍ ଆଖପାଖରେ କିଏ ଥାଏ ଯେ। କେମିତି ସବୁ ଅନ୍ଧାର ହୋଇଯାଉଥିଲା ତା' ଚାରିପଟେ।

ଅଦିତି ଭିତରେ ରକ୍ତ ଯେମିତି ଜମାଟ ବାନ୍ଧି ଯାଇଥିଲା ସେତେବେଳକୁ, "କ'ଣ କହୁଛୁ ତୁ ? କୃଷ୍ଣାକୁ ଗୁଣ୍ଡା ଉଠେଇ ନେଇଯାଇଥିଲେ ?"

"ନେଇ ଯାଇଥିଲେ ତ।"

"ରେପ୍?" ସେ ଫିସ୍‌ଫିସ୍ କରି ପଚାରିଲା।

ଅରୁଣା ଓଠ ବଙ୍କେଇ ଶୁଖିଲା ହସଟାଏ ଖେଳାଇଲା। "ନା- ତା'ର ଭାଗ୍ୟ ଭଲ ଯେ କଥା ଏତେବାଟ ଆଗେଇ ପାରିଲା ନାହିଁ। ଭୁସି ଖାଇଥିବା ଅଟୋରିକ୍ସାବାଲା ସମୟ ନଷ୍ଟ ନ କରି ସାଙ୍ଗେ ସାଙ୍ଗେ ପାଖ ପୋଲିସ ଷ୍ଟେସନ୍‌ରେ ଖବର ଦେଲା। ଆଉ ସେଠିକାର ନୂଆ ଥାନା ଇନ୍‌ଚାର୍ଜ ଦଳବଳ ଧରି ବାହାରି ପଡ଼ିଲେ। ୱାକିଟକିରେ ଅନ୍ୟ ପୋଲିସବାଲାଙ୍କ ସହ ଯୋଗାଯୋଗ କରି, ମାରୁତି ଭ୍ୟାନ୍‌ଟିକୁ ଟ୍ରେସ୍ କରି କିଛି ଅଘଟଣ ହେବା ଆଗରୁ ସେ ଗୁଣ୍ଡାମାନଙ୍କର ଆଡ୍ଡାରେ ପହଞ୍ଚିଗଲେ।"

"ଥ୍ୟାଙ୍କ୍ ଗଡ୍।" ଅଦିତି ସ୍ୱସ୍ତିର ନିଶ୍ୱାସ ନେଲା।

"ନା ରେ, ଭଗବାନଙ୍କୁ ଏତେ ଶୀଘ୍ର ଧନ୍ୟବାଦ ଦେ ନାହିଁ।"

"ମାନେ?"

"କୃଷ୍ଣା ତ ଅଜ୍ଞାନ ହୋଇ ଯାଇଥିଲା ବାଟରେ। ତା'ପରେ ତାକୁ କିଏ କୋଉଠିକି ନେଲା, କେମିତି ରଖିଲା, ସେ କିଛି ଜାଣେ ନାହିଁ। ପୋଲିସ ଆସି ପହଞ୍ଚିବା ବେଳକୁ ତା' ଜ୍ଞାନ ଫେରିଥିଲା। କିନ୍ତୁ ସକ୍‌ରେ ତା' ପାଟିରୁ କଥା ବାହାରିଲା ନାହିଁ। ସେ ଖାଲି ସମସ୍ତଙ୍କୁ ଆବାକାବା ହୋଇ ଚାହିଁଲା। ପୋଲିସ ତାକୁ ପାଖ ନର୍ସିଙ୍ଗ୍ ହୋମ୍‌କୁ ନେଇଗଲେ। ଭୋରରୁ ଭୋରରୁ ଯାଇ ଅବସ୍ଥା ଟିକିଏ ଭଲ ହେଲା ତା'ର। ସେତିକିବେଳେ ତା'ଠୁଁ ମାଉସୀ ଘର ଫୋନ୍ ନମ୍ବର ନେଇ ସେଠି ପହଞ୍ଚିବା ବ୍ୟବସ୍ଥା କରି ଦିଆଗଲା।"

ସବୁ ତ ଠିକ୍ ଠିକ୍ ହୋଇଗଲା, ଗୋଟିଏ ଖରାପ ଗ୍ରହର କକ୍ଷରେ ବାନ୍ଧି ହୋଇଯିବା ଆଗରୁ କୃଷ୍ଣା ବର୍ତ୍ତିଗଲା। ତାହେଲେ ପୁଣି ଅସୁବିଧାଟା କୋଉଠି ତା' ଅଦିତି ବୁଝି ପାରୁ ନ ଥିଲା। ସେଇ ଅବୁଝା ଆଖିରେ ଅରୁଣା ମୁହଁକୁ ଚାହିଁଲା।

ଅରୁଣା କହିଲା, "କଥାଟା ଚପିଯାଇଥିଲେ ଭଲ ହୋଇ ଥାଆନ୍ତା। କିନ୍ତୁ...।"

କିନ୍ତୁ?

ଖବର ପାଇ କୃଷ୍ଣାର ବାପା, ମା' ପରଦିନ ହିଁ ଫ୍ଲାଇଟ୍‌ରେ ଦିଲ୍ଲୀ ଚାଲି ଆସିଲେ। ଦୀପୁ ସେମାନଙ୍କୁ ଏଆର୍‌ପୋର୍ଟରୁ ଘରକୁ ଆଣିବା ପରଠୁଁ ହିଁ ଘର

ଭିତରେ ଗୋଟିଏ କନ୍‌ଫରେନ୍ସ ଆରମ୍ଭ ହୋଇଗଲା। ନିଜ ଖଟରେ ପଡ଼ି ରହି କୃଷ୍ଣା ମାଉସୀ ଶୋଇବା ଘରର ବନ୍ଦ କବାଟକୁ ଦେଖୁଥିଲା। ଆଲୋଚନାର ପ୍ରଧାନ ଚରିତ୍ର କିଏ, ତାହା ଜାଣିବାର ଆବଶ୍ୟକତା ନ ଥିଲା। ଆଗରୁ ମଧ୍ୟ ଥରେ ଏମିତି କନ୍‌ଫରେନ୍ସ ହୋଇଯାଇଥିଲା ଏଇଠି। ଏଇଭଳି। ଉଭୟର ଚରିତ୍ର ସମାନ। କେବଳ ଘଟଣାକାଳ, ପରିସ୍ଥିତି ଆଉ ବିଷୟବସ୍ତୁ ବଦଳିଯାଇଛି।

ବିନା କୌତୂହଳରେ ସେ ଖାଲି ଅପେକ୍ଷା କରି ରହିଥିଲା। ମିଟିଙ୍ଗର ନିଷ୍ପତ୍ତି ତ ନିହାତି ଜାଣିବା କଥା।

ରାତି ଡେ଼ରିରେ ଘରର କବାଟ ଖୋଲିଲା। ମା' ପାଖକୁ ଆସି କହିଲେ, "ତୁ ଆମ ସାଙ୍ଗରେ ଭୁବନେଶ୍ୱର ଚାଲ ରେ ମା'। ଦରକାର ନାହିଁ ଆଉ ପଢ଼ିବା।"

ଦୀପୁ ଗମ୍ଭୀର ଭାବରେ କହିଲା, "ଏଠି ରହିଲେ ତୋତେ ବାରମ୍ବାର ପୋଲିସ ଓ କୋର୍ଟ ଚକ୍କରରେ ପଡ଼ିବାକୁ ହେବ। କେବଳ ଟାଣି ହେଉଥିବୁ ଏବଂ ବାରମ୍ବାର ଅପମାନିତ ହେଉଥିବୁ। ଖାଲି ସେତିକି ନୁହଁ, ପବ୍ଲିକ୍ ପାଇଁ ତୁ ଗୋଟିଏ ଦର୍ଶନୀୟ ବସ୍ତୁ ହୋଇଯିବୁ।"

ତା'ହେଲେ ?

"କିଛି ଚିନ୍ତା କରନି। ମୋର କେତେ ଜଣ ଚିହ୍ନା ଅଛନ୍ତି। ସେମାନଙ୍କୁ ଧରି ମୁଁ କାଲି ପୋଲିସ କେସ୍ ବନ୍ଦ କରେଇଦେବି।"

ଏଥର ମାଉସୀର ପାଳି। "ଠାକୁରଙ୍କ ଦୟାରୁ ତ କିଛି ଅଘଟଣ ହୋଇନାହିଁ। ଆଉ କାହିଁକି କଥା ଗଡ଼େଇବା। କଥା ଯେତେ ଗଡ଼ିବ, ସେତେ ଆବର୍ଜନା ଏକାଠି ହେବ।"

ବାପା ତା' ମୁଣ୍ଡ ଆଉଁଶି ଦେଲେ, "ତୁ ଆମ ସମାଜ କଥା ଜାଣିନୁ, ମା' ? ଅଯଥାରେ ବଦନାମ କରିବେ। ଦୋଷ କଲା କିଏ, ଭୋଗିବ କିଏ ?"

କୃଷ୍ଣା ଫାଙ୍କା ଆଖିରେ ତା' ସାମ୍ନାରେ ଠିଆ ହୋଇଥିବା ଚାରିଜଣ ମଣିଷଙ୍କୁ ଦେଖୁଥିଲା। ଚାରି ଯୋଡ଼ା ଆଖିରେ ବିନତି। ପ୍ରତିଶୋଧ ନେବା ନିଶାରେ କୃଷ୍ଣା ଯେମିତି କଠିନ ହୋଇ ନ ବସେ।

କାନ୍ଥରେ ଝୁଲୁଥିବା ପେଣ୍ଟିଙ୍ଗ୍ ଉପରେ ଆଖି ରଖିଲା କୃଷ୍ଣା। କେବେ କେଉଁ କଥାରେ ପ୍ରତିବାଦ କରିଛି ଯେ ସେ ଏବେ କରିବ।

''ଠିକ୍ ଅଛି।''

କୃଷ୍ଣା କଥାରେ ସମସ୍ତେ ଯେତେଟା ନିଶ୍ଚିନ୍ତ ହୋଇଯାଇଥିଲେ, ସେତେଟା ନିଶ୍ଚିନ୍ତ ହେବା ଉଚିତ ନ ଥିଲା। ପରଦିନ ସକାଳର ଖବରକାଗଜ ଖୋଲି ଚମକି ଉଠିଥିଲା ଦୀପୁ। କୃଷ୍ଣାକୁ ଘଣ୍ଟ ଘୋଡ଼େଇ ରଖିବା ପାଇଁ ସେ କେବଳ କୃଷ୍ଣାଠୁଁ ପ୍ରତିଶ୍ରୁତି ନେଇଥିଲା। ଅନ୍ୟ କାହାଠାରୁ ଯେ ସେଭଳି ପ୍ରତିଶ୍ରୁତି ନେବା ଆବଶ୍ୟକ, ସେ ଚିନ୍ତା ତା' ମନକୁ ଆସି ନ ଥିଲା। ଓଃ, ବଡ଼ ଭୁଲ ହୋଇଗଲା। ଅନ୍ତତଃ ଅଟୋରିକ୍ସାବାଲାଟି କଥା ତ ତା'ର ନିହାତି ଭାବିବା ଉଚିତ ଥିଲା। ଏବେ ହେବ କ'ଣ? ଅଟୋରିକ୍ସାବାଲାଟିର ଲମ୍ବା ଲମ୍ବା ସାକ୍ଷାତକାର ଯେ ଖବରକାଗଜରେ ବାହାରି ସାରିଲାଣି। ଲୋକଟି ଉପରେ ରାଗ ହେଉଥିଲା ଦୀପୁର, କିନ୍ତୁ ସେ ତାକୁ ଠିକ୍ ଦୋଷ ଦେଇ ପାରୁ ନ ଥିଲା। ଏଇମିତି ଭୁସି ଖାଇ, ଠିକଣା ସମୟରେ ଗୋଟାଏ ଝିଅକୁ ରକ୍ଷା କରି 'ହିରୋ' ହୋଇଯିବାର କୃତିତ୍ୱକୁ ସାଧାରଣ ଅଟୋରିକ୍ସାବାଲାଟି କେମିତି ହାତରୁ ଛାଡ଼ି ଦେଇଥାଆନ୍ତା?

''ତା'ପରେ?'' ଅଦିତି ପଚାରିଲା।

''ସେତିକିରେ ହେଲେ କଥା ବନ୍ଦ ହୋଇଯାଇଥାଆନ୍ତା। ଅନ୍ତତଃ ଦିଲ୍ଲୀ ଟପି ଖବର ବାହାରକୁ ଯାଇ ନ ଥାଆନ୍ତା।''

କିନ୍ତୁ କୃଷ୍ଣା କେସ୍ ପ୍ରତ୍ୟାହାର କରି ନେଇଥିବା ଖବର ସ୍ଥାନୀୟ ମହିଳା ଅନୁଷ୍ଠାନ କାନରେ ପଡ଼ିଯାଇଥିଲା। ତା' ସାଙ୍ଗରେ ଏ ଖବର ମଧ୍ୟ ଜଣାଜଣି ହୋଇଯାଇଥିଲା ଯେ ପାଞ୍ଚଜଣ ଗୁଣ୍ଡାଙ୍କ ଭିତରୁ ଜଣେ ହେଉଛି କୋଉ ସିନିୟର୍ ପୋଲିସ୍ ଅଫିସରଙ୍କ ପୁଅ। ବାସ୍ - ଦୁଇ ଖବରକୁ ଏକାଠି କରି ଭୀଷଣ ଗଣ୍ଡଗୋଳ ଆରମ୍ଭ କରିଦେଲେ ସେମାନେ। ଯେହେତୁ କୃଷ୍ଣା ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଛାତ୍ରୀ, ତେଣୁ ଏହାକୁ ଉପଯୁକ୍ତ ସୁଯୋଗ ମନେକରି ସେଇ ଅନୁଷ୍ଠାନମାନଙ୍କ ସହିତ ହାତ ମିଳେଇଦେଲେ ସେଠିକାର ଛାତ୍ରସଂସଦର କେଇଜଣ ଭାବୀ ନେତା। ଖବରକାଗଜ, ପତ୍ରପତ୍ରିକାରେ କୃଷ୍ଣା-ହରଣ କେସ୍‌ର ରୀତିମତ ତନାଘନା ଆଲୋଚନା, ତର୍କବିତର୍କ ଚାଲିଲା। କିଏ କେଉଁଠୁ କୃଷ୍ଣାର ଫଟୋ ଯୋଗାଡ଼ କରି ଛପେଇ ମଧ୍ୟ ଦେଇଥିଲେ। ଯେଉଁ କଥାକୁ ପ୍ରଥମରୁ ଲୁଚେଇଦେବାକୁ ବସିଥିଲେ କୃଷ୍ଣାର ଘର ଲୋକମାନେ, ସେଇଟା ଏତେ ବଡ଼ ହୋଇଗଲା ଯେ ସେମାନଙ୍କର ଆଉ କରିବାର କିଛି ରହିଲା ନାହିଁ।

ଧୀରେ ଧୀରେ ଉତ୍ତେଜନା ଥଣ୍ଡା ପଡ଼ିଗଲା। ପାଞ୍ଚ ଗୁଣ୍ଡାଙ୍କୁ ପୋଲିସ ହାଜତରେ ପୂରେଇ ପୁଣି ଜାମିନରେ ଛାଡ଼ିଦେଲା। ମହିଳା ଅନୁଷ୍ଠାନମାନଙ୍କୁ କଥା ଦିଆଗଲା ଯେ ଖୁବ୍ ଶୀଘ୍ର ଦୋଷୀକୁ ଦଣ୍ଡ ଦିଆହେବ।

କୃଷ୍ଣା ଦିଲ୍ଲୀରେ ଆଉ ନ ରହି ଭୁବନେଶ୍ୱର ଫେରି ଆସିଲା।

ଷ୍ଟେସନ୍‌ରୁ ଘରକୁ ଯାଉ ଯାଉ ତାକୁ କିନ୍ତୁ ବଡ଼ ଅସ୍ୱସ୍ତି ଲାଗୁଥିଲା। ଏମିତି ଗାରଡ଼େଇ ଗାରଡ଼େଇ ତାକୁ ସବୁ ଚିହ୍ନା ଅଚିହ୍ନା ମଣିଷମାନେ ଦେଖୁଛନ୍ତି କାହିଁକି ? ହଠାତ୍ ଯେମିତି ଚିଡ଼ିଆଖାନାର ଜନ୍ତୁଟିଏ ପାଲଟିଯାଇଛି ସେ। ସେ ତ ସେଇ ଝିଅ। ଯାହା ଥିଲା ସେୟା ଅଛି। ଅନେକ କିଛି ହୁଏତ ହୋଇପାରିଥାଆନ୍ତା ତା' ଜୀବନରେ, ହଳାହଳ ବିଷର ଧାରାଟିଏ ତା' ଧମନୀରେ ବୋହୁଥିବା ରକ୍ତରେ ମିଶିଯାଇ ତା' ଅସ୍ତିତ୍ୱକୁ ହୁଏତ ବିକଳାଙ୍ଗ କରିଦେଇ ପାରିଥାଆନ୍ତା, କିନ୍ତୁ କିଛି ବି ହୋଇନାହିଁ। ତାହେଲେ ?

କିଏ ଗୋଟାଏ କଲେଜ ପିଲା ପାନ ଦୋକାନ ସାମ୍ନାରେ ଠିଆହୋଇ ଥାଟ୍‌ରେ ସିଗାରେଟ୍ ଟାଣୁ ଟାଣୁ ହଠାତ୍ ମନ୍ତବ୍ୟ କଲା, ''ପଞ୍ଚ ପାଣ୍ଡବ ଆସିଥିଲେ ହେ ଦ୍ରୌପଦୀଙ୍କୁ ନେବା ପାଇଁ।'' ତା'ପରେ କେଇଜଣଙ୍କର ଅଶ୍ଳୀଳ ହସ।

କୃଷ୍ଣାର ପାଦ ପଥର ହୋଇଯାଇଥିଲା। ବେଶ୍ କିଛି ଦିନ ଆଗରୁ ଗମ୍ଭୀର ହୋଇଯାଇଥିବା ମୁହଁଟି ତା'ର ଆଉ ଟିକିଏ କଠିନ ହୋଇଗଲା। ସେ କିଛି କାହାକୁ ନ କହି ଘରକୁ ଆସିଲା। ହେଲେ ଦିନକୁ ଦିନ ସେ ହୋଇଯାଉଥିଲା ଆଉ ଟିକିଏ ଅଧିକ ଅନ୍ତର୍ମୁଖୀ।

ଦୀର୍ଘ ନିଶ୍ୱାସ ନେଲା ଅରୁଣା, ''ତୁ କ'ଣ ଆମ ଏଠିକା କଥା ଜାଣିନୁ ? କୃଷ୍ଣା ହଠାତ୍ ଚର୍ଚ୍ଚାର ବିଷୟ ହୋଇଗଲା। କିଏ କିଏ କୁହା କୁହି ହେଲେ ଯେ ନର୍ସିଙ୍ଗ୍ ହୋମ୍ କଥା ମିଛ। ସାରା ରାତି ଗୁଣ୍ଡାଙ୍କ ଆଡ୍ଡାରେ କଟେଇଥିଲା ସେ।''

''ତା'ପରେ ?''

''ତା'ପରେ ଆଉ କ'ଣ ? ମଉସା ମାଉସୀ ବର୍ଷଟାଏ ଅପେକ୍ଷା କରି ତାକୁ ବାହା କରି ଦେବାକୁ ବସିଲେ। ସେମାନେ ଭାବିଥିଲେ ଯେ କଥା ଦବିଯାଇଥିବ ସେତେବେଳକୁ। କିନ୍ତୁ ସେମିତି କ'ଣ ହୁଏ ଝିଅମାନଙ୍କ ଭାଗ୍ୟରେ ? କୋଉଠି

କିଛି ସ୍ଥିର ହୋଇ ପାରୁ ନ ଥିଲା... ଏତିକି ବେଳେ ଆଶ୍ଚର୍ଯ୍ୟଜନକ ଘଟଣାଟିଏ ଘଟିଲା। ଦିନେ ଆସି ପହଞ୍ଚିଗଲା ପାର୍ଥ।''

''ପାର୍ଥ ! ସେଇ ପାର୍ଥ ?''

''ହଁ। ସେଇ ପାର୍ଥ। କୃଷ୍ଣା ତା' ସାଙ୍ଗରେ ସମ୍ପର୍କ କାଟି ଦେବା ପରେ ସେ ଗୋଟିଏ ଛୋଟ ଚାକିରି ନେଇ ଚାଲିଯାଇଥିଲା ଚଣ୍ଡୀଗଡ଼। କାହାଠୁ ଜାଣ ଏସବୁ ଖବର ପାଇ ଏକାମୁହାଁ ହୋଇ ଚାଲି ଆସିଥିଲା ଏଠିକି। ସିଧା କୃଷ୍ଣା ଘରେ। ଦେଖିବାକୁ ସିନା ଏମିତି ସାଧାରଣ, ହେଲେ ତା' ଚିନ୍ତାଧାରା, ତା' ମନୋବଳ ଅତି ଅସାଧାରଣ। ମଉସା ମାଉସୀଙ୍କୁ ଦେଖା କରି ସେ ବିନା ଉପକ୍ରମଣିକାରେ କହିଥିଲା ଯେ ସେ କୃଷ୍ଣାକୁ ବାହା ହେବାକୁ ଚାହେଁ।''

''ଏତେ ଗୁଜବ ସତ୍ତ୍ୱେ ବି ?''

''ଭାବି ଦେଖ୍ କି ଉପାଦାନରେ ଗଢ଼ା ସେ ପାର୍ଥ। ଜାଣିଛୁ ସେ କ'ଣ କହିଥିଲା ? କହିଥିଲା - କୃଷ୍ଣା ଜୀବନରେ ଯଦି ସତରେ ଏଭଳି ବିପର୍ଯ୍ୟୟ ଘଟି ଯାଇଥାଆନ୍ତା, ତେବେ ବି ସେ ତାକୁ ବାହା ହେବାକୁ ଆଗେଇ ଆସିଥାଆନ୍ତା। ଆଉ ନିଜେ କୃଷ୍ଣା ଯେତେବେଳେ କହୁଛି ଯେ କିଛି ବି ଘଟିନାହିଁ, ତେବେ ସେଇଟା ହିଁ ଧ୍ରୁବ ସତ୍ୟ। ତା' କୃଷ୍ଣାକୁ ଅବିଶ୍ୱାସ କରିବାର ପ୍ରଶ୍ନ ହିଁ ଉଠୁନାହିଁ।''

''ମଉସା ମାଉସୀ ?''

''କୃଷ୍ଣାର ବାପା ମା' ତ ଜାଣ ହାତରେ ସ୍ୱର୍ଗ ପାଇଗଲେ। ହାତରେ ଝିଅ ପାଇଁ ଗୋଟାଏ ବାହାଘର ପ୍ରସ୍ତାବ, ସେ ପୁଣି ଯାହିତାହି ପିଲା ନୁହଁ। କଷଟି ପଥରରେ ପରୀକ୍ଷିତ ହୋଇ ଯାଇଥିବା ଚରିତ୍ରବାନ ପୁଅ। ଆଉ ଅଧିକ କ'ଣ ଦରକାର ?''

ଅଦିତି ଏତେବେଳକୁ ହସିଦେଲା। ତାକୁ ଗପମାନଙ୍କର ଏମିତି ହ୍ୟାପି ଏନ୍‌ଡ଼ିଙ୍ଗ୍ ଭାରି ଭଲ ଲାଗେ। ସେଇ ପୁରୁଣା ପରୀ କାହାଣୀ ପରି। 'ରାଜା ରାଣୀ ସୁଖରେ ଘର ଦ୍ୱାର କରି ରହିଲେ। ମୁଁ ଗଲାରୁ ମୋତେ ବସିବାକୁ କହିଲେ ନାହିଁ କି ପାନ ଖଣ୍ଡିଏ ଯାଚିଲେ ନାହିଁ।'

ଭିଡ଼ିମୋଡ଼ି ହୋଇ ଉଠିଲା ସେ। ଏଥର ଶ୍ୟାମଳୀକୁ କହି ଆଉ କପେ ଚାହା ପିଆଯାଇପାରେ।

''ମୋ କଥା ସରିନି, ଅଦିତି।'' ଅରୁଣା ସେମିତି ଗମ୍ଭୀର ଭାବରେ କହିଲା।

"ଆଉ ପୁଣି କ'ଣ ?"

"ଏତେ ସମୟ ଶୁଣିଲୁ, ଅଥଚ କାହାଣୀର ଶେଷଟା ଶୁଣିବୁନି ?"

ଶେଷ ? ରାଜାରାଣୀଙ୍କ ବାହାଘର ପରେ ତ କାହାଣୀ ଶେଷ ହୋଇଯିବା କଥା ।

"ନା- ଶେଷ ପର୍ଯ୍ୟନ୍ତ ପାର୍ଥ ସାଙ୍ଗରେ କୃଷ୍ଣାର ବାହାଘର ହେଲା ନାହିଁ ।"

ବାହାଘର ହେଲା ନାହିଁ? ଏ କି ବିଷମ ଅବସ୍ଥା ? ଗପର ଏମିତି ଛନ୍ଦପତନ ତ ହେବା କଥା ନୁହଁ ।

"ବାହାଘର ହେଲା ନାହିଁ । କାରଣ ନିଜେ କୃଷ୍ଣା ବାହା ହେବାକୁ ମନା କରି ଦେଲା । ସେ ତା' ବାପାଙ୍କ ପାଦ ଛୁଇଁ ପ୍ରତିଜ୍ଞା କରିଥିଲା ଯେ । ସେଇ ଦୁଃଖରେ ମଉସା ଚାଲିଗଲେ । ମାଉସୀଙ୍କ ଅବସ୍ଥା ତ ଦେଖିଲୁ ।"

"ଆଉ ପାର୍ଥ ?"

"ପାର୍ଥ ? ପାର୍ଥ ଏବେ ମଧ୍ୟ ଅପେକ୍ଷା କରି ବସିଛି । କାଳେ କୋଉ ଦିନ ମନ ପରିବର୍ତ୍ତନ ହେବ କୃଷ୍ଣାର । ସ୍କୁଲରେ ପଢ଼ାଉଥିବା ଛୋଟ ଛୋଟ ପିଲାଙ୍କଠୁଁ ମୁହଁ ବୁଲେଇ କାଳେ କୋଉ ଦିନ ଗଭୀର ଦୃଷ୍ଟିରେ ଚାହିଁ ଦେବ ପାର୍ଥକୁ । ସେଇ ଆଶା ନେଇ ବଞ୍ଚିଛି ସେ ।" □□

# ଜେଜେ ହେବାର ପ୍ରସ୍ତୁତି

ବ୍ୟସ୍ତ ହୋଇ ଶୋଇବା ଘର ଭିତରକୁ ପଶି ଆସିଲା ସୁରେଶ। ସେଇଠି ଖଟ ଉପରେ ଗଦା ହୋଇଥିବା କଚା ଲୁଗାକୁ ଭାଙ୍ଗି ସ୍ତ୍ରୀ ରୁନା ଥାକରେ ରଖୁଥିଲା।

''ତୁମେ ଏଇଠି ଅଛ, ମୁଁ ଘର ସାରା ଖୋଜି ସାରିଲିଣି।''

''ଆହା, ବିଶାଳ ରାଜମହଲରେ ରହୁଛ ନା! ଷାଠିଏ ବଖରାର ଘର ଭିତରେ ଖୋଜି କେମିତି ପାଇବ ରାଣୀ ମା'ଙ୍କୁ? ତେବେ ରାଣୀ ହଂସପୁରରେ ଆଗ ଦେଖିବା ତୁମର ଉଚିତ।'' ରୁନା ହସି ଦେଇ କହିଲା।

ଅନ୍ୟବେଳେ ହୋଇଥିଲେ ସୁରେଶ ଚିଡ଼େଇ ଥାଆନ୍ତା। ହୁଏତ କହିଥାଆନ୍ତା, ''କାଇଁ, ମୋ ହୃଦୟଟା କ'ଣ କେଉଁ ପ୍ରାସାଦରୁ କମ୍ ନା କ'ଣ? ସେଇଠି ଯେତେବେଳେ ରାଜରାଣୀ କରି ରଖିଛି ରାଜପ୍ରାସାଦ ବା କି ଛାର!''

କିନ୍ତୁ ସେ ସେମିତି କିଛି କହିଲା ନାହିଁ। ବରଂ ସାମାନ୍ୟ ବିରକ୍ତ ହୋଇ କହିଲା, ''ଆଃ ସବୁବେଳେ ଥଟ୍ଟା!''

କଣେଇ କରି ତାକୁ ଚାହିଁଲା ରୁନା, ''କ'ଣ ହୋଇଛି?''

''କ'ଣ ହୋଇଛି?? ଏ ଘରେ ଯାହା ସବୁ କାରବାର ଚାଲିଛି, ସେସବୁ କ'ଣ ତୁମ ଆଖିରେ ପଡୁନି?''

''କି କାରବାର?'' ସେମିତି କିଛି ଅଘଟଣ ହେବାର ଖବର ତ ରୁନା ପାଇନି।

''ଓଃ, ବାପା ମୁନୁକୁ କେମିତି ନଷ୍ଟ କରୁଛନ୍ତି ଦେଖିପାରୁନ। ମାଂସ, ଭାତ ଖାଇ ଉଠିବାର ଘଣ୍ଟାଏ ହୋଇନି, ଅଥଚ ଦେଖ - ଆରମ୍ଭ ହୋଇଗଲା ପାଟିଚଲା। ରାସ୍ତାରୁ ଆଗ ପଇଡ଼ କିଣି ପିଆ ହେଲା। ତା'ପରେ ମଶଲା ମୁଢ଼ି। ଆଉ ଏବେ ଜେଜେଙ୍କର ହାତ ଧରି ବାହାରିଛନ୍ତି ତୁମ ପୁତ୍ରମଣି। କ'ଣ ନା ଆଇସକ୍ରିମ୍ ଖାଇବେ।''

ରୁନା କିଛି ନ କହି ତା' କାମ କରି ଚାଲିଥିଲା।

''କ'ଣ ତୁମେ ମୋ କଥା ଶୁଣୁଛ ନା ନାହିଁ?''

''ଶୁଣୁଛି ବାବା ଶୁଣୁଛି। କିନ୍ତୁ ଏସବୁ ମୋତେ ଶୁଣଉଛ କାହିଁକି?''

''ନେଡ଼ି ଗୁଡ଼ କହୁଣୀକୁ ଗଡ଼ିଗଲେ ଯାଇ ଜ୍ଞାନୋଦୟ ହେବ ତୁମର।'' ସୁରେଶ ସତରେ ଚିଡ଼ି ଯାଇଥିଲା। ''ତୁମେ ଯାଇ ବାପାଙ୍କୁ ମନା କରି ପାରୁନ?''

ଆଶ୍ଚର୍ଯ୍ୟ ହୋଇ ସ୍ୱାମୀ ମୁହଁକୁ ଚାହିଁଲା ରୁନା। ''ମୁଁ ମନା କରିବି? ତୁମ ବାପାଙ୍କୁ ମୁଁ ବୋହୂ ହୋଇ ଯାଇ ତାଗିଦା କରିବି? ବାଃ - ଭଲ କଥା କହିଲ ତୁମେ! କାହିଁ ତୁମେ ଯାଇ କହୁନ।''

''ହ, ମୁଁ କହିବି, ଆଉ ବାପା ଶୁଣିବେ! କୋଉ ଦିନ ମୋର କୋଉ କଥା ଶୁଣିଛନ୍ତି ସେ?''

''ଯଦି କିଛି ନ କହି ପାରିବ ତେବେ ଛାଡ଼ିଦିଅ। ମାତ୍ର ଦିଇଟା ଦିନ କଥା ତ। ବାପା ଗାଁକୁ ଚାଲିଗଲେ ଆଉ ପୁଣି କ'ଣ ଏସବୁ ହେବ? ଏବେ ଯଦି ନାତିକୁ ଟିକିଏ ମୁଣ୍ଡରେ ବସାଉଛନ୍ତି ବସାନ୍ତୁ।'' ରୁନା ଲୁଗାତକ ଥାକରେ ରଖି ସୁରେଶର ସାର୍ଟ ଇସ୍ତ୍ରୀ କରିବାକୁ ବସିଲା।

''ତୁମେ କି ମା'? ପିଲାକୁ ଏମିତି ନଷ୍ଟ ହେବାକୁ ଛାଡ଼ି ଦେଉଛ? ବାପା ଗାଁକୁ ଗଲା ପରେ ମୁନୁ ଆମ ମୁଣ୍ଡ କେମିତି ଖାଇବ, ସେକଥା ଚିନ୍ତା କରି ପାରୁଛ? ପ୍ରତିଦିନ ଜିଦି ଆରମ୍ଭ ହୋଇଯିବ। ଆଜି ଏଇଟା ଦରକାର। କାଲି ସେଇଟା ଦରକାର। ନଦେଲେ ପୁଣି କହିବ - ମା' ବାପା ଖରାପ। ଜେଜେ ଭଲ।''

''ଓହୋ, ଏତେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରନି ତ। ...ସବୁ ଯୁଗରେ, ସବୁ ଦେଶରେ ଏମିତି ହୁଏ। ଜେଜେମା, ଜେଜେବାପାମାନେ, ଅଜା ଆଈମାନେ ନାତିନାତୁଣୀଙ୍କୁ ମୁଣ୍ଡରେ ବସାନ୍ତି। ନିଜ ପିଲାଙ୍କ ଉପରେ ଯେଉଁ ସବୁ ବିଷୟ

ନେଇ ଏକଦା କଟକଣା ଜାରି କରୁଥିଲେ, ସେସବୁ ଆଉ ନାତି ନାତୁଣୀଙ୍କ ଉପରେ ଲାଗୁ ହୁଏ ନାହିଁ। ବାପା କ'ଣ ଏକା ? ତୁମେ ବି ଜେଜେ ହେଲେ ସେୟା କରିବ।''

ସୁରେଶ ଅଣ୍ଟାରେ ହାତ ଦେଇ ମୁଣ୍ଡ ବଙ୍କେଇ କହିଲା, ''ଷ୍ଟାମ୍ପ୍ ପେପର ଆଣି ଲେଖି ରଖ। ପରେ ମିଳେଇ ଦେଖିବ। ...ମତେ ତୁମେ କ'ଣ ବୋଲି ଭାବିଛ କି ? ମୁଁ ମୁନୁକୁ ଯେତିକି ଶାସନ କରୁଛି, ଯେତିକି ଗେହ୍ଲା କରୁଛି, ଠିକ୍ ସେତିକି ଶାସନ, ସେତିକି ଗେହ୍ଲା ତା' ପୁଅ ଝିଅଙ୍କୁ କରିବି।''

ବେଖାତିରିଆ ହସଟାଏ ହସି ଦେଲା ରୁନା, ''ହଉ ମ, ସେତେବେଳେ ଦେଖିବିନି କି।'' ମୁଣ୍ଡ ବାଳରେ ଗଣ୍ଠିଟିଏ ପକେଇ ସେ ଚାହା କରିବାକୁ ରୋଷେଇ ଘରକୁ ଚାଲିଗଲା। ମୁନୁକୁ ଆଇସକ୍ରିମ୍ କିଣେଇ ଦେଇ ଘରେ ପାଦ ଦେବା ମାତ୍ରକେ ଶ୍ୱଶୁରଙ୍କର ଆଗ ଚାହା ଦରକାର ହେବ। ଭାତ ଯେତେବେଳେ ଖାଆନ୍ତୁ ପଛକେ ଠିକ୍ ଚାରିଟା ବେଳେ ଚାହା କପ୍‌ଟାଏ ଦରକାର ନିଶ୍ଚୟ ତାଙ୍କର। ପଚିଶ ବର୍ଷର ଅଭ୍ୟାସ। ଏବେ ଅବସର ନେଲେ ବୋଲି କ'ଣ ଦିଇଟା ମାସରେ ଛାଡ଼ିଯିବ ?

ଗ୍ୟାସ ସରିଯାଇଥିଲା। ତେଣୁ ଷ୍ଟୋଭ୍ ଲଗେଇ ସେ ଚାହା ପାଣି ବସେଇଲା। ପୁଣି ଫୁଟନ୍ତା ପାଣିରେ ଚାହା ପତ୍ର ଦେଇ ତାକୁ ଘୋଡ଼େଇ ରଖି କ୍ଷୀର ଗରମ କରି ନେଲା। କାନଟା କିନ୍ତୁ ତା'ର ସଜାଗ ହୋଇ ରହିଥିଲା କଲିଂବେଲ୍ ଶବ୍ଦ ଶୁଣିବାକୁ।

କୁଆଡ଼େ ଗଲେ ବାପା ? ଆଉ କେତେ ସମୟ ଚାହା ଭିଜେଇ ରଖିବ ସେ ? କଡ଼ା ହୋଇଯିବ ଯେ। ଫ୍ଲାସ୍କଟା ବି ଭାଙ୍ଗି ଯାଇଛି। ନହେଲେ ସେଥିରେ ରଖି ଦେଇଥାନ୍ତା। ବାଧ ହୋଇ କପ୍‌ରେ ଚାହା ଛାଣିଲା ରୁନା।

''ଏଇ, ଚାହା ପିଇବ ?'' ହାତରେ ଚାହାକପ୍‌ଟା ଧରି ପର୍ଦ୍ଦା ଟେକି ରୁନା ପଚାରିଲା।

ଖଟ ଉପରେ ଲମ୍ବ ହୋଇ ଶୋଇ ଟେନିସ୍ ମ୍ୟାଚ୍ ଦେଖୁଥିଲା ସୁରେଶ।

''ଚାହା ?''

ଆଶ୍ଚର୍ଯ୍ୟ ହେବା କଥା। ସାରା ଜୀବନ ହଷ୍ଟେଲରେ ରହି ପଢ଼ିଥିଲେ ମଧ ସୁରେଶର ଚାହା କଫି ଅଭ୍ୟାସ ନାହିଁ। ଠିକ୍ ରୁନା ପରି। ତେଣୁ ହଠାତ୍

ଚାହା କାହିଁକି ?

''ବାପାଙ୍କ ପାଇଁ କରିଥିଲି। କାହିଁ ବାପାଙ୍କର ତ ଦେଖା ନାହିଁ। ନିଶ୍ଚୟ ମୁନୁ ତାଙ୍କୁ ଟାଣି ଟାଣି ବଜାର ପର୍ଯ୍ୟନ୍ତ ନେଇଛି। ଏଇ ହ୍ୟାପି ଷ୍ଟୋରରେ ବୋଧହୁଏ ତା' ମନପସନ୍ଦର ଆଇସକ୍ରିମ୍ ମିଳିଲା ନାହିଁ। ଏବେ କପେ ଚାହା କ'ଣ କରିବି ? ଫୋପାଡ଼ି ଦେବାକୁ ହାତ ଯାଉ ନାହିଁ।''

''ଅଧା କପ୍ ଦିଅ।''

ସୁରେଶ ପାଖରେ ବସି ବାକୀ ଅଧା କପ୍ ଚାହା ପିଉ ପିଉ ରୁନାର ମନ ମଧ ଟେନିସ୍‌ରେ ଲାଗିଗଲା। ହଠାତ୍ ତାକୁ ଚମକାଇ ପାଖ ମନ୍ଦିରରୁ ଆଳତି ଘଣ୍ଟା ବାଜି ଉଠିଲା। କାନ୍ଥ ଘଡ଼ିରେ ଆଖି ବୁଲେଇ ଚମକି ଉଠିଲା ସେ। ହେ ଭଗବାନ, ଛଅଟା ବାଜି ସାରିଲାଣି !! ମୁନୁକୁ ନେଇ କୁଆଡ଼େ ଗଲେ ବାପା ? ଏତେ ଡ଼େରି ତ ହେବା କଥା ନୁହଁ।

''ଏଇ, ତୁମେ ଟିକିଏ ଦେଖ ନା। ଏତେ ଡ଼େରି କାହିଁକି ହେଉଛି ? ଏ ବଦମାସ ମୁନୁ ନିଶ୍ଚୟ ରାସ୍ତାରେ ଜିଦି ଆରମ୍ଭ କରିଦେଇଥିବ କ'ଣ ଗୋଟାଏ ନେଇ। ତୁମକୁ ଦେଖିଲେ ଯାଇଁ ଥଣ୍ଡା ପଡ଼ିବ। ବାପାଙ୍କୁ ନାକେଦମ କଲାଣି ନା କ'ଣ।''

''ବାପା ତ ଜାଣି ଜାଣି ମୁଲଉଛନ୍ତି ସେସବୁ।'' ଅସନ୍ତୁଷ୍ଟ ଗଳାରେ କହିଲା ସୁରେଶ, କିନ୍ତୁ ଖଟରୁ ଉଠି ପାଦରେ ଚଟି ଗଳେଇନେଲା। ଟେଲିଭିଜନ ଉପରୁ ଚାବି ନେଇ ବାରଣ୍ଡାରୁ ସ୍କୁଟର କାଢ଼ିବା ବେଳେ ରହିଗଲା ସେ। ଏଇ ତ। ଠିକ୍ ସେତିକିବେଳକୁ ଗେଟ ଖୋଲି ଭିତରକୁ ପଶୁଥିଲେ ମୁନୁ ଓ ତା' ଜେଜେ ବାପା। ବାପାଙ୍କ ମୁହଁରେ ବିବ୍ରତ ଭାବ ନାହିଁ। ମୁନୁ ବି କିଛି ଚଗଲାମି ବା ଜିଦି କରି ଫେରିଥିବା ଭଳି ମନେ ହେଉ ନାହିଁ। ତା'ହେଲେ ଏତେ ଡ଼େରି ?

ଗେଟ ଖୋଲା ଶବ୍ଦରେ ବାହାରକୁ ବାହାରି ଆସିଲା ରୁନା, ''କ'ଣ ହେଲା ବାପା ? ଏତେ ଡ଼େରି ? ଆପଣ ଏପର୍ଯ୍ୟନ୍ତ ଚାହା ବି ପିଇ ନାହାନ୍ତି।''

ଏତେବେଳକୁ ଦୁଇ ଜଣଙ୍କ ଆଖିରେ ପଡ଼ିଲା, ହାତରେ ଧଳା ହୋଇ ରୁମୁରୁମିଆ କ'ଣଟିଏ ଧରିଛି ମୁନୁ। ଆଇସକ୍ରିମ୍ ଖିଆ ପରେ ତେବେ ବଜାରରୁ ଖେଳଣା କିଣା ହେଉ ଥିଲା। ହଠାତ୍ ସରୁ ଗଳାରେ 'ଭୋଉ' କରି ଉଠିଲା ସେଇ ରୁମୁରୁମିଆ ଖେଳଣାଟି। ଚମକି ପଡ଼ିଲେ ରୁନା ଓ ସୁରେଶ।

"ମୁନୁ, କ'ଣ ସେଇଟା ?" ଗମ୍ଭୀର ଭାବରେ ସୁରେଶ ପଚାରିଲା ।

ବାପାଙ୍କର ଏଭଳି ସ୍ୱରକୁ ଚିହ୍ନିଛି ମୁନୁ । ତେଣୁ କିଛି କହିଲା ନାହିଁ । କେବଳ ବୁଲି କରି ଜେଜେଙ୍କ ମୁହଁକୁ ଚାହିଁଲା । ଆଶ୍ୱାସନା ଦେବା ଭଳି ନାତି ମୁଣ୍ଡରେ ଟିକିଏ ହାତ ବୁଲେଇ ଆଣିଲେ ଜେଜେ । ତା'ପରେ କହିଲେ, "ଆରେ ସେ ଆଇସକ୍ରିମ୍ ପାଖ ଚୁଡ଼ି ଦୋକାନର ମାଲିକ କୁକୁର ଛୁଆ ବିକୁଥିଲା । ତିନି ମାସର ଛୁଆ ସବୁ । ଆମ ମୁନୁ ତ ସେଇଠି ଅଟକିଗଲା । ଆଇସକ୍ରିମ୍ ଦୋକାନ ଆଡ଼େ ଚାହିଁଲା ବି ନାହିଁ । ମୁଁ ଭାବିଲି ଏକା ଏକା ପିଲାଟା ବଡ଼ ବୋର୍ ହେଉଛି । କୁକୁର ଛୁଆ ସାଥୀଟିଏ ଥିଲେ ଭଲ ।"

ସୁରେଶ ବିବ୍ରତ ହୋଇ ବାପାଙ୍କ ମୁହଁକୁ ଚାହିଁଲା । "ବାପା, କାହିଁକି ଏମିତି କଲ କୁହ ତ ? ଏଡ଼ିକି ଟିକିଏ ଘର, ମଣିଷ ଚଳପ୍ରଚଳ ହୋଇ ପାରୁନାହାନ୍ତି । ସେଥିରେ ପୁଣି ଏହା ଭିତରେ କୁକୁର ଛୁଆଟିଏ ରହିବ !"

ରୁନା ମଧ୍ୟ ମନେମନେ ଅସନ୍ତୁଷ୍ଟ ହୋଇ ପଡ଼ିଲା । ନାତିକୁ ଗେହ୍ଲା କରିବା ଅର୍ଥ କ'ଣ ଘରଟା ଯାକ ଲୋକଙ୍କୁ ହଇରାଣ କରିବା ! ମୁନୁ ପାଇଁ ସିନା କୁକୁର ଛୁଆ କିଣି ଆଣିଲେ ବାପା, କିନ୍ତୁ ତା'ର ସବୁତକ ଦାୟିତ୍ୱ ପଡ଼ିବ କାହା ମୁଣ୍ଡରେ ? ତାରି ଉପରେ ତ ! ମୁନୁଟା ଛୁଆ ! ପୁଣି ସ୍କୁଲ ଯିବ ସକାଳ ନଅଟାରୁ ତିନିଟା । ଆଉ ଅଫିସ୍ ଯିବେ ସୁରେଶ । ସବୁ କିଛି ତାକୁ ଇ କରିବାକୁ ହେବ । ଏତିକି କଥା ବାପା ବୁଝିଲେନି କେମିତି ? ତା'ର କ'ଣ ଘର ଭିତରେ କମ୍ କାମ ? ସେଥିରେ ପୁଣି ଏଇଟାକୁ ବୁଲାଅ, ଖାଇବାକୁ ଦିଅ, ଗାଧୋଇ ଦିଅ... । ଉଃ ।

କିନ୍ତୁ କିଛି କହି ପାରିଲାନି ସେ । ଯେଉଁ ଶ୍ୱଶୁର ତାକୁ ଏତେ ସ୍ନେହ ଆଦର ଦେଇଛନ୍ତି, ବାପାଙ୍କର ଅଭାବଟାକୁ ଭୁଲେଇ ଦେଇଛନ୍ତି, ତାଙ୍କୁ ପୁଣି ସେ ସମାଲୋଚନା କରିବ ? ସୁରେଶକୁ ବୁଲି ଚାହିଁଲା ସେ, "ଛାଡ଼, ଏଇଟା ଘରକୁ ତ ଆସି ସାରିଲାଣି । ଦି' ମୁଠା ଖାଇ ବାରଣ୍ଡାରେ ପଡ଼ି ରହିବ ।"

ସୁରେଶ ଏତେ ସହଜରେ ମାନିନେବାକୁ ପ୍ରସ୍ତୁତ ନଥିଲା । କଠୋର ଭାବରେ କହିଲା, "ନା- ସେକଥା ହୋଇ ପାରିବନି । ଏଇଟା ଘର ନା ଚିଡ଼ିଆଖାନା ? ...ଏଇ ମୁନୁ, ଚାଲ ମୋ ସାଙ୍ଗରେ । ଯେଉଁ ଦୋକାନରୁ ଏଟାକୁ ଆଣିଥିଲୁ, ସେଇଠି ଏଇଟା ଫେରା ହେବ । ଖେଳଘର ପଡ଼ିଛି ନା କ'ଣ ?"

ହଠାତ୍ ଭେଁ କରି ଚିତ୍କାର କରି ଉଠିଲା ମୁନ୍ନୁ, ''ନାଇଁ, ମୁଁ ଟାଇଗରକୁ ଫେରାଇବି ନାହିଁ। ଏ ମୋ ପୁଅ। ମୁଁ ଜମା ଦେବି ନାହିଁ କାହାକୁ।''

ଆରେ ବାଃ, ଏହା ଭିତରେ ନାମକରଣ ବି ସରିଲାଣି। ରୁନା ହସି ପକେଇଲା, ''ଆଉ ଏସବୁ ଫେରାଫେରି ଧନ୍ଦା ଛାଡ଼। ନାତି ଟୋକାକୁ ଦୁଇ ହାତରେ କୋଳେଇ କରି ନିଅ ଘର ଭିତରକୁ। ମୁଁ ତା' ପାଇଁ କ୍ଷୀର ଆଣୁଛି।''

ସ୍ତ୍ରୀକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲା ସୁରେଶ। ଯାହା ପାଇଁ ତା'ର ସବୁତକ ଚିନ୍ତା ସେ ହିଁ ଏତେ ସହଜରେ ମାନି ନେଉଛି! ଯଦି ଜଣେ ଜାଣି ଜାଣି ରାସ୍ତାରେ ପଡ଼ିଥିବା ବୋଝକୁ ମୁଣ୍ଡରେ ମୁଣ୍ଡେଇ ନେବ, ତାକୁ କିଏ ବୁଝେଇବ? ''ତୁମେ କର ଯାହା କରିବା କଥା। ମୋତେ ଏସବୁରେ ପୂରାଅ ନାହିଁ।'' ଘର ଭିତରକୁ ପଶି ଯାଇ ପୁଣି ଟେଲିଭିଜନ ସାମ୍ନାରେ ସେ ବସିଗଲା।

ବାପା କେବେଠୁଁ ଗାଁକୁ ଯାଇସାରିଲେଣି। ମୁନ୍ନୁ ଦିନା କେତେ ଜେଜେଙ୍କ ପାଇଁ ମନଖରାପ କରିଥିଲା। ଗାଁକୁ ଯିବା ପାଇଁ ଜିଦି କରିଥିଲା। ସବୁଥର ବାପା ଯିବା ପରେ ସେମିତି କରେ ସେ, ନୂଆ କଥା କିଛି ନୁହଁ। କିନ୍ତୁ ଅନ୍ୟଥର ଭଳି ଏଥର ତା' ଜିଦିଟା ସପ୍ତାହ ସପ୍ତାହ ଧରି ଲାଗି ରହିଲା ନାହିଁ। କାରଣ ହେଉଛି ଟାଇଗର। ଏଡ଼ିକି ଟିକିଏ ପନ୍ଦର ଇଞ୍ଚର କୁକୁର ଛୁଆ, ସେ ପୁଣି ମୁନ୍ନୁ ଭଳି ଜିଦିଆ ପିଲାକୁ ନିଜ ମାୟା ଜାଲରେ ବାଂଧି ପକେଇଲା! ରୁନାର ବିଶ୍ୱାସ ହୁଏ ନାହିଁ। ଏବେ ପୁଣି ରୁଟିନରେ ପଡ଼ିଗଲାଣି ତା'ର ଜୀବନ। ସକାଳୁ ସ୍କୁଲ। ଫେରି ଆସି ସାଙ୍ଗସାଥୀ। ସଂଧ୍ୟା ପରେ ହୋମ୍ ୱାର୍କ। ତାରି ଭିତରେ ଭିତରେ ଟାଇଗର ସାଙ୍ଗରେ ଖେଳ।

ସୁରେଶ ଓ ରୁନା ଭାବିଥିଲେ ଏଇ କୁକୁର ଛୁଆଟା ହେଉଛି ପୁଅର ନୂଆ ଖେଳଣା। ଦିନା କେତେ ଆଗ୍ରହ ରହିବ। ତା'ପରେ ଅନ୍ୟ ଖେଳଣା ଭଳି ଘରର କେଉଁ କୋଣରେ ପଡ଼ି ରହିବ। କିନ୍ତୁ ସେମିତି କିଛି ହେଲା ନାହିଁ। ତାକୁ ମୁନ୍ନୁ ପୁଅ କରିଥିଲା ଯେ। ପୁଣି ଟାଇଗର ଭଳି ଖେଳଓ୍ୱାଡ଼୍ କୁକୁର ଏତେ ସହଜରେ ତା' ଖେଳ ସାଥୀକୁ ଛାଡ଼ି ଦେବ? ସେ କ'ଣ ନିର୍ଜୀବ ଖେଳଣା ହୋଇଛି?

ଏବେ ଟାଇଗର ଘରର ଅନ୍ୟତମ ସଦସ୍ୟ। ପ୍ରଥମରୁ ଯେଉଁ ରାଗ ସୁରେଶ

ଭିତରେ ଥିଲା ସେଇଟା ଏବେ ବହୁ ମାତ୍ରାରେ କମି ସାରିଲାଣି। ଦିନା କେତେ ଚିଡ଼ୁଥିଲା ସେ ତା' ଉପରେ। ମନକୁ ମନ ଗୁଣୁଗୁଣୁ ହୋଇ କହୁଥିଲା, ''ମୋଗ୍ରେଲ୍ କୋଉଠିକାର।'' ଏବେ ସେ କହେ, ''ପିଓର୍ ବ୍ରିଡ୍ ନୁହଁ ସିନା କିନ୍ତୁ ଜାତିଆ କୁକୁର। ବାପା ଶସ୍ତାରେ ପାଇଗଲେ।''

ଆଜିକାଲି ସକାଳୁ ଟାଇଗରକୁ ନେଇ ବୁଲି ଯିବାଟା ବାପ ପୁଅଙ୍କର ଅଭ୍ୟାସରେ ପଡ଼ିଗଲାଣି। ଯେଉଁ ମଣିଷ ସାତଟା ନ ବାଜିଲେ ବିଛଣା ଛାଡୁ ନ ଥିଲା, ସେ ପୁଣି ସାଢ଼େ ପାଞ୍ଚଟା ବେଳେ ଗେଟ ଖୋଲି ବାହାରିଯାଏ। ରୁନାକୁ ସତରେ ବଡ଼ ଆଶ୍ଚର୍ଯ୍ୟ ଲାଗେ। ସ୍ୱାମୀକୁ ଟିକିଏ ଚିଡ଼େଇବାର ଲୋଭ ସମ୍ବରଣ କରି ପାରେ ନାହିଁ ସେ। କହେ, ''କ'ଣ ହେଇଛି ତୁମର ଏବେ? ଟାଇଗର ସାଙ୍ଗରେ ଦିନ ଆରମ୍ଭ ନ କଲେ ଦିନଟା ବ୍ୟର୍ଥ ହୋଇ ଯାଉଛି?''

ଓଠ ବଙ୍କେଇ ବେଖାତିରିଆ ହସ ହସେ ସୁରେଶ, ''ମୋର ସେସବୁ ଅଯଥା କୁକୁର ପ୍ରୀତି ନାହିଁ। ତୁମେ ଓ ତୁମ ପୁଅ ବସାଅ ତାକୁ ମୁଣ୍ଡରେ। ମୁଁ ଯାହା ଯେତିକି କରୁଛି, ସେତକ କେବଳ ତୁମକୁ ଟିକିଏ ସାହାଯ୍ୟ କରିବା ପାଇଁ। ସକାଳୁ ତୁମର ଘରେ ହଜାରେ କାମ! ନିଶ୍ୱାସ ନେବାକୁ ଫୁରୁସତ ନାହିଁ, ସେଥିରେ ପୁଣି ଏଇଟାକୁ ବୁଲାଅ, ଖେଳାଅ।''

''ଆହା, ମୋ ପାଇଁ କେତେ ଚିନ୍ତା ତୁମର!'' ହସି ହସି କହେ ରୁନା।

''କୌଣସି ଦିନ ସେକଥା ବୁଝିବନି ତୁମେ।'' ସୁରେଶ ଦାଣ୍ଡ ବାରଣ୍ଡାରେ ଚୌକି ପକାଇ ବସି ଖବର କାଗଜ ମେଲାଏ। ''ତେବେ ଗୋଟିଏ ଲାଭ ହେଇଛି ନିଶ୍ଚୟ। ତୁମକୁ ସାହାଯ୍ୟ କରିବା ଭିତରେ ମୋର ମର୍ଣ୍ଣିଙ୍ଗ ୱାକ୍ ଟିକିଏ ହୋଇ ଯାଉଛି! ନହେଲେ ପେଟଟା ଯେଉଁ ଗତିରେ ବଢ଼ୁଥିଲା, ମୋର ଡ଼ର ହୋଇଯାଇଥିଲା।''

ରୁନା ମନେ ମନେ ହସେ। ସତେ? ଦଶ ବର୍ଷ ପରେ ପୁଣି ନୂଆ କରି ଚିହ୍ନିବାକୁ ହେବ ମଣିଷଟିକୁ? ସୁରେଶକୁ ସେ ଜାଣିନି? ତାକୁ ସାହାଯ୍ୟ କରିବା ଏବଂ କିଛିଟା ପେଟ କମାଇବା ଉଦ୍ଦେଶ୍ୟ ନେଇ ସେ ଏଇ କାମଟା କରୁଛନ୍ତି ବୋଲି କହିଦେଲେ ହେଲା? ସେ ବିଶ୍ୱାସ କରିଯିବ!! ଯଦି ସେଇକଥା ହୋଇଥାଆନ୍ତା, ତାହେଲେ ବୁଲିଆସି ତାଙ୍କରି ଗୋଡ଼ ତଳେ ବସି ରହେ କାହିଁକି ଟାଇଗର୍? କାରଣ ଅକାରଣରେ କାହିଁକି ମୁହଁ ବୁଲେଇ ସେ ଚାଟିଦିଏ ସୁରେଶର

ପାଦକୁ ? ପଶୁ ସେ । ଠିକ୍ ବୁଝେ କିଏ ତାକୁ ସ୍ନେହ କରେ ବା ନ କରେ । ଆଉ ଯେଉଁ ସୁରେଶ ଓଠ ବଙ୍କେଇ ଏତେ ବଡ଼ ବଡ଼ କଥା କହିଦିଏ..., ତା'ରି ହାତଟା ଅନ୍ୟମନସ୍କ ଭାବରେ କାହିଁକି ଟାଇଗର୍‌ର ରେଶମୀ ଦେହଟାକୁ ଆଉଁଶି ଆଣେ ?

ଦେଖେଇ ହୋଇ କହିବାକୁ ସିନା ଭଲ ଲାଗେନି, କିନ୍ତୁ ଟାଇଗର୍ ଭଳି ସ୍ନେହୀ ସୁନ୍ଦର ଜୀବଟିକୁ କିଏ ଭଲ ନ ପାଇ ରହିପାରିବ ? ରୁନା କଥା ହିଁ ଦେଖାଯାଉ । ଟାଇଗର୍ ଘରକୁ ଆସିବା ଦିନ ସେ କହିଥିଲା ଯେ ଦି ମୁଠା ଖାଇ ଦାଣ୍ଡ ବାରଣ୍ଡାରେ ପଡ଼ି ରହିବ କୁକୁରଟା । ହେଲେ, ସେଇଟା କ'ଣ ଦିନେ ବି କରି ପାରିଛି ସେ ? ସେଇ ପ୍ରଥମ ଦିନ ମଧ୍ୟ ନୁହଁ ।

"ଛାଡ଼ - ଆଜି ଆଉ ତାକୁ ବାରଣ୍ଡାରେ ପକେଇ ରଖିବାନି । ଯେତେ ଯାହା ହେଲେ ତା'ର ଆମ ଘରେ ଆଜି ପ୍ରଥମ ଦିନ ।" ରୁନା ଖୁବ୍ ସାଧାରଣ ଭାବରେ କହିଥିଲା । କିନ୍ତୁ କଥାଟିକୁ ସାଧାରଣ ଭାବରେ ନେଲା ନାହିଁ ସୁରେଶ । ବିରକ୍ତି ଭରା ସ୍ୱରରେ କହିଥିଲା, "ଆରମ୍ଭ ହୋଇ ଗଲା ଟି ? ମୁଁ ଠିକ୍ ଜାଣେ । ତୁମେ ସ୍ତ୍ରୀଲୋକମାନେ ଏତେ ଭାବପ୍ରବଣ କାହିଁକି ? ଦେଖ, ଆରମ୍ଭରୁ ଏ କୁକୁରର ଯାହା ଅଭ୍ୟାସରେ ପକେଇବ, ତାହା ହିଁ ସବୁଦିନକୁ ରହିବ । ତା'ଛଡ଼ା ଯାର ଟଏଲେଟ୍ ଟ୍ରେନିଙ୍ଗ୍ ହୋଇଛି ବୋଲି ମନେ ହୁଏନି । ଘର ଯାକ ଅସନା କରିବ ।"

"କଲେ କରିବ । ତୁମ ପୁଅ କରିନି ? ଆଉ ଇଏ ତ ତୁମର ନାତି ଟୋକା ।"

"ନାତି ନା ଚୋପା ।"

ସୁରେଶ ଶୋଇବାକୁ ଚାଲିଯାଇଥିଲା । ସେଦିନ ଘରର କାମ ସାରି ଶୋଇବା ବେଳକୁ ରୁନାର ଗୁଡ଼ାଏ ଡେରି ହୋଇ ଯାଇଥିଲା । ବିଛଣାରେ ପଡ଼ିବା ମାତ୍ରକେ ଆଖି ଲାଗିଗଲା ତା'ର । ଅଳ୍ପ କେଇଟା ମିନିଟ ପାଇଁ କେବଳ । ହଠାତ୍ ଚମକି ଉଠି ବସିଲା ସେ । କିଏ କାନ୍ଦୁଛି ଏତେ ରାତିରେ ?

"ଶୋଇପଡ଼, ଶୋଇପଡ଼ । ସେ କୁକୁର ଛୁଆ ଏମିତି ହେଉଛି । କହିଲି ତାକୁ ବାରଣ୍ଡାରେ ଶୁଆଇ ଦିଅ, ଶୁଣିଲନି । ଏବେ ଏ ଅଶାନ୍ତିରେ ମଣିଷ ଶୋଇବ କେମିତି ?" ନିଦୁଆ ସ୍ୱରରେ କହି ସୁରେଶ କଡ଼ ଲେଉଟାଇ ଶୋଇ

ପଡ଼ିଲା । ରୁନାର କିନ୍ତୁ ଆଉ ନିଦ ହେଲାନି । କାଂନ୍ଦୁଛି କାହିଁକି ? ମା'କୁ ଝୁରି ହେଉଛି ? ଆହାରେ !

ବିଛଣାରୁ ଉଠି ଆସିଥିଲା ସେ । ଯେଉଁ ଅଖା ଉପରେ ଟାଇଗର୍‌କୁ ସେ ଶୁଆଇ ଦେଇଥିଲା, ସେଇଠି ଗୋଲ ଗୋଲ ହୋଇ ଘୂରୁଛି ସେ । ତା' ମା'ର ଉଷୁମ କୋଳ ଖୋଜୁଛି ? ଆଉ ଏ ଯେଉଁ ଛାତି ଥରେଇ ଦେବା ଭଳି କୁଁ କୁଁ ବିକଳ କାଂଦ ! ରୁନା ଆଉ ସହି ପାରିଲା ନାହିଁ ! ତା' ଭିତରେ ଥିବା ମା'ର ହୃଦୟଟା ମଳି ହୋଇ ଯାଇଥିଲା । ନିସ୍ତବ୍ଧ ରାତିରେ ନିଜର କ୍ଲାନ୍ତିକୁ ଭୁଲି ଯାଇ ପରମ ସ୍ନେହରେ ଟାଇଗର୍‌କୁ ଦୁଇ ହାତରେ ଟେକି କୋଳକୁ ନେଇଯାଇଥିଲା ସେ ।

ସେଦିନ କେତେ ରାତିଯାଏଁ ସେମିତି ସେ ବସି ଥିଲା କେଜାଣି ? ଯେତେବେଳେ ଟାଇଗର୍‌ର କାଂଦ କମିଗଲା, ଦେହ ହାତ ଥରିବା ବଂଦ ହୋଇଗଲା, ସେତେବେଳେ ତାକୁ ଆଉଁଶି ଦେଇ ପୁରୁଣା ଚଦରରେ ଢାଙ୍କିଢୁଙ୍କି ଦେଇ ରୁନା କହିଥିଲା, "ଶୋ ରେ ବାବା ଶୋଇପଡ଼ ।" ଟାଇଗର୍ ମୁହଁ ଉପରକୁ ଟେକି ତା'ର ମାଟିଆ ରଙ୍ଗର ସରଳ ଆଖିରେ ନୂଆ ମଣିଷଟିକୁ ଦେଖିଲା । ତାପରେ ଚଟ୍ କରି ତା' ହାତକୁ ଟିକିଏ ଚାଟି ଦେଇ ଗୋଲ ହୋଇ ସେଇ ଅଖା ଉପରେ ଗଭୀର ନିଦରେ ଶୋଇ ପଡ଼ିଲା । ତା'ପରଠାରୁ ଆଉ କେବେ କାଂନ୍ଦିନି ଟାଇଗର୍ । ଆଉ କେବେ ଖୋଜିନି ତା'ର ଜନ୍ମଦାତ୍ରୀକୁ । ସେ ତା'ର ନୂଆ ମା' ଆଉ ନୂଆ ପରିବାର ନେଇ ସନ୍ତୁଷ୍ଟ ହୋଇ ରହିଛି । ସେଇ ଗୋଟିଏ ଦିନରେ ସେ ଯେମିତି ବୁଝି ଯାଇଥିଲା ଯେ ସେ ହେଉଛି ଏ ଘରର ସବୁଠାରୁ ଛୋଟ ସଦସ୍ୟ । ସମସ୍ତଙ୍କର ଅବାରିତ ଭଲପାଇବା ଏଇ ଘରେ ତା' ପାଇଁ ସାଇତା ହୋଇ ରହିଛି ।

ଏବେ ଟାଇଗର୍ ବିନା ଘର କଥା ରୁନା ଚିନ୍ତା କରି ପାରେନି । କଥା କହି ପାରୁ ନ ଥିବା ଏଇ ଛୋଟ ଜୀବଟି କି ସୁଂଦର କରି ଦେଇଛି ତା' ଜୀବନକୁ ! ମୁନ୍ନୁ ଓ ସୁରେଶ ଚାଲିଯିବା ପରେ ଦିନ ବେଳେ ତାକୁ ଆଗରୁ ଯେଉଁ ଏକା ଏକା ଲାଗୁଥିଲା, ଘର ଖାଇ ଗୋଡ଼ାଉଥିଲା, ସେଇ ଅସହ୍ୟ ଭାବରୁ ଯେ ସେ ମୁକ୍ତି ପାଇଯାଇଛି ।

ଏଇମିତି ଚାଲିଗଲା ଗୁଡ଼ାଏ ଦିନ ।

ସେଦିନ କ'ଣ ଗୋଟିଏ ଛୁଟି। ସ୍କୁଲ, ଅଫିସ୍ ସବୁ ବନ୍ଦ। ଛୁଟି ଦିନରେ ବେଶୀ ସମୟ ପର୍ଯ୍ୟନ୍ତ ଶୋଇ ରହିବାର ଅଭ୍ୟାସ ଥିଲା ସୁରେଶର। ହେଲେ ଟାଇଗର୍ ଆସିବା ପରଠାରୁ ସେସବୁ ଇତିହାସ। ତା'ର ଛୁଟି କ'ଣ, ସ୍କୁଲ କ'ଣ, ଅଫିସ ବା କ'ଣ? ଘଡ଼ିର ଆଲାର୍ମ ବାଜିବା ଭଳି ଠିକ୍ ସାଢ଼େ ପାଞ୍ଚଟାରେ ସେମାନଙ୍କର ଶୋଇବା ଘର ଭିତରକୁ ପଶି ଆସି ସେ କହେ, ''ଭୋଉ ଭୋଉ।'' ଅର୍ଥାତ୍ - ଉଠ। ମୋର ନିତ୍ୟକର୍ମ କରିବା ବେଳ ହୋଇଗଲା। ଦିନା କେତେ କଷ୍ଟ ଲାଗୁଥିଲା। ଏବେ ଅଭ୍ୟାସରେ ପଡ଼ିଗଲାଣି। ଅଧିକାଂଶ ଦିନ ଟାଇଗର୍ ଡ଼ାକିବା ଆଗରୁ ସୁରେଶର ନିଦ ଭାଙ୍ଗିଯାଏ। ସେଦିନ ମଧ ଭାଙ୍ଗିଗଲା। କିନ୍ତୁ ବିଛଣା ଛାଡ଼ି ଉଠିବାକୁ ତା'ର ମନ ହେଲା ନାହିଁ। ଆସି ଡ଼ାକୁ ଟାଇଗର୍। ରାତିରେ ଅଦିନିଆ ବର୍ଷା ହୋଇଥିଲା। ତା'ରି ପ୍ରଭାବରୁ ବେଶ୍ ଥଣ୍ଡା। ଉଷୁମ ବିଛଣାରେ ଘୋଡ଼ି ଘାଡ଼ି ହୋଇ ଶୋଇବାକୁ ଭାରି ଭଲ ଲାଗୁଥିଲା। ଆଖି ବନ୍ଦ କରି ପଡ଼ି ରହିଥିବା ବେଳେ କେମିତି ସତରେ ନିଦ ହୋଇ ଯାଇଛି ତା'ର।

ରୁନାର ଆଗ ନିଦ ଭାଙ୍ଗିଲା। ପାଖରେ ଶୋଇ ରହିଥିବା ସୁରେଶକୁ ଦେଖି ସେ ଆଶ୍ଚର୍ଯ୍ୟ ହେଲା ଟିକିଏ। ଏତେବେଳକୁ ତ ବୁଲି ବାହାରିଯିବା କଥା। ଝରକାର ପର୍ଦ୍ଦା ଟେକି ବାହାରକୁ ଚାହିଁଲା ସେ। ବାହାରେ ଏବେ ବି ଅଂଧାର। ଆକାଶରେ ମେଘ ଘୋଡ଼ାଇଛି ନା ସକାଳ ହୋଇନାହିଁ? ଉଠିଯାଇ ଘଡ଼ି ଦେଖିଲା ସେ। ଏ ମା'!

ସୁରେଶକୁ ହଲେଇ ଉଠେଇ ଦେଲା ସେ। ''ଏଇ, ସାତଟା ବାଜିଲାଣି ଜାଣିଛ?''

''ସାତଟା। ଏତେ ଡ଼େରି!!'' ଗୋଟିଏ ଡ଼ିଆଁରେ ବିଛଣା ଛାଡ଼ିଲା ସେ।

ଦୁଇଜଣଙ୍କ ମନ ତଳେ ଖେଳୁଥିଲା ସେଇ ଗୋଟିଏ କଥା। ଟାଇଗର୍ ଆସି ବାହାରକୁ ଯିବା ପାଇଁ ସେମାନଙ୍କୁ ଉଠେଇ ନାହିଁ କେମିତି? ଏପର୍ଯ୍ୟନ୍ତ ଉଠିନି? ସେ ବି କ'ଣ ଉଷୁମ ବିଛଣାର ଲୋଭ ଛାଡ଼ି ପାରୁନି?

ରୁନା ଆଗ ଚାଲି ଆସିଲା ଦାଣ୍ଡ ଘରକୁ। ତା' ପଛେ ପଛେ ସୁରେଶ। ''ନିଶ୍ଚୟ କିଛି ବିଗିଡ଼ିଛି ତା'ର। ନହେଲେ ଏମିତି ଚୁପଚାପ ରହିବା କଥା ତ ନୁହଁ।''

ଦାଣ୍ଡ ଘରୁ ରୋଷେଇ ଘରକୁ ଯେଉଁ କବାଟ ରହିଛି, ସେଇ କବାଟ ପାଖରେ ପ୍ରାୟ ସବୁ ଦିନ ଶୁଏ ଟାଇଗର। ଆଜି ବି ଶୋଇଥିଲା, କିନ୍ତୁ କେମିତି ନିଥର ହୋଇ। ସକାଳୁ ସକାଳୁ ସେମାନଙ୍କ ଉପରେ ଡେଇଁ, ସେମାନଙ୍କୁ ଚାଟି ଯେଉଁ ଅସ୍ଥିର କରିଦିଏ, ତା'ର ସୁରାକ ହିଁ ନ ଥିଲା। ଲୁଲୁଲୁଲୁ ଆଖିରେ କେବଳ ଚାହିଁ ରହି ଲାଞ୍ଜ ଟିକିଏ ହଲେଇ ଦେଲା ସେ।

''ନିଶ୍ଚୟ ଦେହ କିଛି ହୋଇଛି ତା'ର।'' ରୁନା ବିବ୍ରତ ହୋଇ କହିଲା।

''ହଁ, ସେୟା ତ ମନେ ହେଉଛି।'' ସୁରେଶର ମୁହଁ ଗମ୍ଭୀର।

''ରୁହ, ମୁଁ ତାକୁ ଗରମ କ୍ଷୀର ଟିକିଏ ଦେଉଛି। ତାକୁ ପିଇଲେ ହୁଏତ ଭଲ ଲାଗିବ।''

ଟାଇଗର୍ କ୍ଷୀର ପିଇଲା ନାହିଁ। ପିଇଲା ନାହିଁ ନୁହଁ, ପିଇବାକୁ ଉଠି ପାରିଲା ନାହିଁ। ତା' ପେଟଟା ଜୋରରେ ଉପରକୁ ଉଠୁଥିଲା ଆଉ ପଡୁଥିଲା। ଯେମିତି ନିଶ୍ୱାସ ନେବାକୁ ତାକୁ ବହୁତ କଷ୍ଟ ହେଉଛି। ''କ'ଣ କରିବା କୁହ ତ।'' ରୁନୁ ସ୍ୱରରେ ଆତଙ୍କ।

''ଡ଼ାକ୍ତର ପାଖକୁ ନେବାକୁ ହେବ।''

''ଡ଼ାକ୍ତର ! କିନ୍ତୁ ଛୁଟି ଦିନରେ ତ ତାଙ୍କ କ୍ଲିନିକ୍‌ରେ ସେ ବସନ୍ତି ନାହିଁ।''

ସେମାନଙ୍କର ଘରଠାରୁ ଅଳ୍ପ ଦୂରରେ କ୍ଲିନିକ୍ ଖୋଲିଛନ୍ତି ଜଣେ ଭେଟେରିନାରି ଡ଼ାକ୍ତର। ତାଙ୍କରି କଥା ପଡ଼ିଥିଲା।

ସୁରେଶ ଲୁଗା ବଦଳେଇ ନେଇ ସ୍କୁଟର ଚାବି ହାତରେ ଧରିଲା। ''ମୁଁ କ୍ଲିନିକ୍ ପାଖରେ ରହୁଥିବା ଲୋକଙ୍କଠୁଁ ବୁଝି କରି ଆସୁଛି। ସେମାନେ ହୁଏତ ଜାଣିଥିବେ କେଉଁଠି ରହନ୍ତି ଡ଼ାକ୍ତର। ଦରକାର ପଡ଼ିଲେ ତାଙ୍କୁ ଘରକୁ ଆସି ଟାଇଗର୍‌କୁ ଦେଖିଯିବାକୁ କହିବା।''

ଅଳ୍ପ ସମୟ ଭିତରେ ଫେରି ଆସିଲା ସେ।

''କ'ଣ ହେଲା ?''

''ଗୁଡ଼ାଏ ବାଟ ତାଙ୍କ ଘର। ମୁଁ ଫୋନ କରିଥିଲି। ଡ଼ାକ୍ତର କହିଲେ ଯେ ଟାଇଗର୍‌କୁ ତାଙ୍କ ଘରକୁ ନେଇଆସିଲେ ଭଲ ହେବ। ଯାହା ଯେମିତି ଦରକାର ହେବ ସେ ସେଇଠି ଭଲରେ କରି ପାରିବେ। ଘରେ ତାଙ୍କର ସବୁ ଔଷଧପତ୍ର, ଇଂଜେକ୍‌ସନ୍ ରହିଛି।''

ରୁନା ବି ବାହାରିଲା ସୁରେଶ ସାଙ୍ଗରେ। ଟାଇଗରକୁ ଧରି ସ୍କୁଟର ପଛ ସିଟ୍‌ରେ ସେ ବସିବ। ମୁନୁ ସେ କାମ ପାରିବ ନାହିଁ। ତା'ଛଡ଼ା ଏମିତି ଗୋଟିଏ ସମୟରେ ଚୁପ ହୋଇ ଘରେ କେମିତି ବସିବ ସେ? ଅପେକ୍ଷା କରିବାଟା ହିଁ ବେଶୀ କଷ୍ଟ।

ମୁନୁ ଏହା ଭିତରେ ଉଠି ସାରିଥିଲା। ତାକୁ ବୁଝେଇ ପଡ଼ିଶା ଘରେ ରଖେଇ ଦେଇ ଆସିଲା ସେ। ଏଥର ଟାଇଗରକୁ ନେଇ ଯିବା କଥା। କିନ୍ତୁ ରୁନା ଭଳି ଅଠଚାଳିଶ କିଲୋ ଓଜନର ମଣିଷଟିଏ ଟାଇଗରକୁ କୋଳରେ ଧରି ସ୍କୁଟରରେ ବସିବ କେମିତି? ସେ ତ ନିହାତି ଛୋଟ କୁକୁରଟିଏ ନୁହଁ। ପୁଣି ଦେହ ଏଭଳି ବିଗିଡ଼ିଛି ଯେ ଉଠି ପାରୁନି। ଲମ୍ବ ହୋଇ ପଡ଼ି ରହୁଛି ଖାଲି। ତଥାପି କିଛି ସମୟ ଚେଷ୍ଟା କଲେ ସ୍ୱାମୀ ସ୍ତ୍ରୀ ଦୁହେଁ। ନା- ଟାଇଗରକୁ କୋଳକୁ ଉଠେଇବା ସମ୍ଭବ ନୁହଁ। ''କ'ଣ କରିବା?'' ଧଇଁସଇଁ ହୋଇ ରୁନା କହିଲା। ''ଏତେ ସକାଳୁ ଏଠି ରିକ୍ସା ବି ମିଳିବ ନାହିଁ।''

ସୁରେଶ କିଛି କହିଲା ନାହିଁ। ଚୁପଚାପ ଘରୁ ବାହାରି ଚାଲିଗଲା। କିଛି ସମୟ ପରେ ଗାଡ଼ିର ଶବ୍ଦରେ ବାହାରକୁ ଆସିଲା ରୁନା। ଏତେ ସକାଳୁ ଟ୍ୟାକ୍ସି କୋଉଠୁ ମିଳିଲା?

''ଷ୍ଟେସନ ଚାଲିଗଲି।'' ସୁରେଶ ରୁନା କିଛି ପଚାରିବା ଆଗରୁ କହିଲା।

ଷ୍ଟେସନରୁ ଟ୍ୟାକ୍ସି ଅଣା ହେଲା? ଏବେ ତ ମନ ଇଚ୍ଛା ଦର ହାଙ୍କିବ ସେ ଡ୍ରାଇଭର! ସୀମିତ ଆୟ ଭିତରେ ସେମାନଙ୍କୁ ଚଳିବାକୁ ହୁଏ। ହଠାତ୍ କରି ମାସ ଶେଷରେ ଏତେ ବଡ଼ ଗୋଟାଏ ଖର୍ଚ୍ଚ କ'ଣ ସୁରେଶ କାଂଧେଇ ପାରିବ?

ରୁନା ସ୍ୱାମୀ ମୁହଁକୁ ଚାହିଁଲା। କେବଳ କ'ଣ ତା'ର ଓ ମୁନୁର ମନ କଥା ଭାବି ସୁରେଶ ଏଇ କାମଟି କଲା? ସେତେବେଳେ ପଚାରିବାର ବେଳ ନାହିଁ। ମାନସିକତା ମଧ୍ୟ ନାହିଁ। ଦୁଇ ଜଣଯାକ କୌଣସି ମତେ ଟାଇଗରକୁ ଟେକାଟେକି କରି ଟ୍ୟାକ୍ସିରେ ବସିଲେ।

ସେମାନଙ୍କୁ ଅପେକ୍ଷା କରି ରହିଥିଲେ ଡ଼ାକ୍ତର। ତାଙ୍କ ଆଲୁମିନିୟମ ଟେବୁଲ ଉପରେ ଟାଇଗରକୁ ଚିତ୍ କରି ଶୁଆଇ ଦେଇ କ'ଣ ସବୁ ପରୀକ୍ଷା ନିରୀକ୍ଷା କରି ଦେଖିଲେ ସେ। କ'ଣ ଏତେ ଦେଖୁଛନ୍ତି? କିଛି କହୁ ନାହାନ୍ତି କାହିଁକି?

ଏଇ ଡ଼ାକ୍ତରମାନଙ୍କର ଏଇଟା ଗୋଟାଏ ବଡ଼ ବଦ୍‌ଗୁଣ। ରୋଗୀର ଆତ୍ମୀୟମାନଙ୍କର ମନ ଅବସ୍ଥା ଜମା ବୁଝି ପାରନ୍ତି ନାହିଁ। କେତେ ବ୍ୟସ୍ତ ଲାଗୁଛି ସେମାନଙ୍କୁ, ଅଥଚ ଟାଇଗରକୁ ଦେଖି ନେଇ କିଛି ନ କହି ଚୁପଚାପ ଇଞ୍ଜେକ୍‌ସନ୍ ଦେବାର ବ୍ୟବସ୍ଥା କରୁଛନ୍ତି ଡ଼ାକ୍ତର! ଆରେ କୁହ ଟିକିଏ କ'ଣ ହୋଇଛି? ଘଟଣାଟା କେତେ ସିରିୟସ?

ସୁରେଶ ମନ ଭିତରର କଥା ଯେମିତି ପଢ଼ିନେଲେ ଡ଼ାକ୍ତର। ମୁହଁ ଉପରକୁ ଟେକି କହିଲେ, ''ଆପଣ ବ୍ୟସ୍ତ ହେଉଛନ୍ତି କି? ବଦହଜମୀ ହୋଇ ଏମିତିଆ ହୋଇଛି। ଏଇ ଜାତିର କୁକୁରଙ୍କର ଏମିତି ମଝିରେ ମଝିରେ ହୁଏ। ଭୟ ପାଇବାର କିଛି ନାହିଁ। ଗୋଟିଏ ଡ଼ୋଜ୍ ଔଷଧ ଆଉ ଇଞ୍ଜେକ୍‌ସନ୍ ପଡ଼ିଲେ ସବୁ ଠିକ୍ ହୋଇଯିବ।'' ଟାଇଗରର ମୁଣ୍ଡକୁ ସାଉଁଳାଇ ନେଇ ସେ ପୁଣି କହିଲେ, ''ଦେଖିବେ, କାଲି ସକାଳକୁ ତା'ର ଆଗର ବଦମାସୀ ଆରମ୍ଭ ହୋଇଯିବ। ଆପଣ ପାଖରେ ଏଇ ଟ୍ୟାବଲେଟ କେତେଟା ରଖିଥାଆନ୍ତୁ। ଦରକାର ପଡ଼ିଲେ ଦେବେ। ତେବେ ଦରକାର ପଡ଼ିବ ନାହିଁ ବୋଲି ମୁଁ ଭାବୁଛି। ମୋତେ କାଲି ଫୋନ୍ କରି ଜଣେଇବେ ସେ କେମିତି ଅଛି।''

ରୁନାକୁ ହଠାତ୍ ବଡ଼ ହାଲୁକା ଲାଗିଲା। ଏଇ ଜମା ଏତିକି କଥା, କି ବିକଳ ଲାଗିଯାଇଥିଲା ତାକୁ! ଡ଼ାକ୍ତରଙ୍କ କଥାରେ ମନର ବୋଝ ଉଭାନ ହୋଇଗଲା। ଏଇ ଟାଇଗରଟା ଏତିକି ମାୟା ବାନ୍ଧେଇଛି! ନିଜ ପିଲା ଅସୁସ୍ଥ ହେବା ଭଳି ମନେ ମନେ ଛଟପଟ ହୋଇଯାଇଥିଲା ସେ। ଆଉ ସୁରେଶ? ଟ୍ୟାକ୍ସିର ପଛ ସିଟ୍‌ରେ ଟାଇଗରକୁ କୋଳରେ ଧରି ତା' ପାଖରେ ବସିଥିବା ସ୍ୱାମୀକୁ କଣେଇ ଚାହିଁଲା ସେ। ଏତେ ଗୁଡ଼ାଏ ଟଙ୍କା ଖର୍ଚ୍ଚ ନେଇ ଚିନ୍ତିତ ହୋଇ ପଡ଼ି ନାହିଁ ତ?

ଓଠରେ ହସ। ଖୁବ ଆସ୍ତେ ଆସ୍ତେ କୌଣସି ଅଜଣା ସଙ୍ଗୀତର ସ୍ୱର ସେଇ ଓଠଦେଇ ଝରି ପଡୁଛି। ଅବାକ ହୋଇ ଚାହିଁ ରହିଲା କେବଳ ରୁନା।

ବୋଧହୁଏ ସ୍ତ୍ରୀର ଦୃଷ୍ଟି ନିଜ ଉପରେ ଅନୁଭବ କଲା ସୁରେଶ। ସେ ବୁଲି ଚାହିଁଲା। ତାକୁ ଅପଲକ ଦୃଷ୍ଟିରେ ଦେଖୁଛି ରୁନା। ''କ'ଣ ହେଲା?''

''ନା କିଛି ନାହିଁ।'' ରୁନା ମୁହଁ ବୁଲାଇ ନେଲା। ହଠାତ୍ ପୁଣି ସ୍ୱାମୀର ଆଖିରେ ଆଖି ରଖି ଫିକ୍ କରି ହସି ଦେଲା।

"ଆରେ କୁହ କ'ଣ ହୋଇଛି? ଏମିତି ମିଷ୍ଟିଅସ୍ ହେଉଛ କାହିଁକି?"

"କହିବି? ରାଗିବନି ତ?"

ସୁରେଶ ଅପେକ୍ଷା କଲା।

ଓଠ ଚିପି ଚିପି ହସି ରୁନା କହିଲା, "ତୁମର ଗୋଟାଏ ବାଳ ପାଚିଛି।"

"ଓ, ଏଇ କଥାକୁ ଏତେ ଡ୍ରାମା!" ସୁରେଶ ନିଜ ମୁଣ୍ଡରେ ହାତ ବୁଲେଇ ଆଣିଲା, "ଆଜି ତୁମ ଆଖିରେ ମୋର ପାଚିଲା ବାଳ ପଡୁଛି? ଉପରୁ ସିନା ଜଣା ପଡୁନି, ଭିତରେ ଭିତରେ ଶହ ଶହ ପାଚିଲା ବାଳ।"

"ରଙ୍ଗ କରିବନି?"

"ରଙ୍ଗ କରିବି? କାହିଁକି? ତୁମକୁ ଲାଜ ଲାଗିବ?"

"ମୋତେ କାହିଁକି ଲାଜ ଲାଗିବ? ମୋ ପାଇଁ ତ ଏଇଟା ବହୁତ ଭଲ ଖବର। ଆଉ କୋଉ ଝିଅ ତୁମ ଆଡ଼େ ଚାହିଁବନି। ତୁମକୁ ଫସେଇବାକୁ ଚେଷ୍ଟା କରିବନି।" ରୁନା ଫିସଫିସ କରି କହିଲା।

"ଉହୁଁ, ତୁମର ଧାରଣ ଭୁଲ। ପୁରୁଷର ବୟସ ଯେତେ ବଢ଼େ, ସୁଂଦରୀ ଝିଅମାନେ ସେତେ ବେଶୀ ଆକର୍ଷିତ ହୁଅନ୍ତି। ଦୁନିଆରେ ସବୁଠୁ ବେଶୀ ଏକ୍ସ୍ଟ୍ରା ମାରିଟାଲ ଆଫେଆର୍ ମଧ୍ୟବୟସ୍କମାନଙ୍କ ଭିତରେ ଦେଖାଯାଏ। ତେଣୁ ମୋର ଚାନ୍ସ ଅଛି।"

ସୁରେଶ ଆଡ଼େ ଚାହିଁ ସେମିତି ଓଠି ଚିପିଚିପି ହସୁଥିଲା ରୁନା।

"ପୁଣି କ'ଣ ହେଲା। ଈର୍ଷା?"

"କାହାକୁ ଈର୍ଷା କରିବି? ଆସୁ ଆଗ ତୁମ ଗାର୍ଲ ଫ୍ରେଣ୍ଡ୍। ...କ'ଣ ଭାବୁଥିଲି ଜାଣିଛ? ଭାବୁଥିଲି ତୁମର ବୟସ ଯେତେବେଳେ ବହୁତ ବଢ଼ିଯିବ, ଯେତେବେଳେ ତୁମର ସବୁତକ ବାଳ ପାଚିଯିବ, ସେତେବେଳେ କେମିତି ଦେଖାଯିବ? କେମିତି କଥାବାର୍ତ୍ତା କରିବ?"

କାନ ପାଖରେ ପେଁ କରି ହର୍ନ ବଜେଇ ଟ୍ରକ୍‌ଟାଏ ଚାଲିଗଲା। ଝରକା ଦେଇ ମେଞ୍ଚାଏ କଳା ଧୂଆଁ ପଶି ଆସିଲା ଟ୍ୟାକ୍ସି ଭିତରକୁ।

ଟ୍ୟାକ୍ସିର କାଚକୁ ଉପରକୁ ଟେକୁ ଟେକୁ ସୁରେଶ କହିଲା, "ତୁମର ବୋଧହୁଏ ଭୟ ହେଉଛି। ଆଚ୍ଛା କୁହ ତ, ମୁଁ ଯେତେବେଳେ ବହୁତ ବୁଢ଼ା ହୋଇଯିବି, ଆମର ପଲେ ନାତି ନାତୁଣୀ ହୋଇଯିବେ, ସେତେବେଳେ କ'ଣ ମୁଁ ଏବେ

ଭଳି ରହିବି ?''

''ଏବେ ଭଳି ମାନେ ?''

ସୁରେଶ ନିଜର କଲର ଟିକିଏ ଉପରକୁ କରିଦେଲା । ''ମାନେ ଏବେ ଯେମିତି ତୁମର ସୁ-ପତି ହୋଇ ରହିଛି, ଆଜ୍ଞାଧୀନ ଭୃତ୍ୟ ଭଳି ହାତ ଯୋଡ଼ି ସାମ୍ନାରେ ବସି ରହୁଛି ସେତେବେଳେ ବି କ'ଣ ଏମିତି କରିବି ? ନା ତୁମ ମାମୁଁଙ୍କ ଭଳି ଚିଡ଼ିଚିଡ଼ା, ଟିଣା ବୁଢ଼ା ହୋଇଯିବି ?''

''ସେ କଥା ଏବେଠୁଁ କେମିତି କହି ପାରିବି ?'' ରୁନା ସୁରେଶ ହାତ ଉପରେ ସାମାନ୍ୟ ଚାପ ଦେଇ କହିଲା, ''ତେବେ ଗୋଟାଏ ବିଷୟରେ ମୁଁ ଏକଦମ ନିଶ୍ଚିତ ।''

''କ'ଣ ?''

''ତୁମେ ଆଉ ଯାହା ହୁଅ ନା କାହିଁକି, ବୁଢ଼ା ହେଲେ ଅତି ଭଲ କେଙ୍କେବାପାଟିଏ ନିଶ୍ଚୟ ହେବ ।'' ◻◻

# କ୍ଲାନ୍ତ ଶୈଶବ

ଅଧିକାଂଶ ଦିନ ଝିଅକୁ ସ୍କୁଲ୍‌ରୁ ଆଣିବା ବେଳେ ଶ୍ୟାମଳୀର ସୁଲେଖା ସାଙ୍ଗରେ ଦେଖା ହୋଇଯାଏ। ଆଉ ସବୁଥର ସେ ସେଇ ଗୋଟିଏ କଥା କହେ, ''ସବୁଦିନ ଏଠିକି ଆସୁଛ, ଅଥଚ ଦିନେ ବି ମୋ ଘରକୁ ଆସୁନ ?''

ଲଜ୍ଜିତ ହୋଇ ପଡ଼େ ଶ୍ୟାମଳୀ। ତା' ପୂର୍ବଥର ଦେଇଥିବା କଥା ତା' ମନକୁ ଆସି ତାକୁ ବିବ୍ରତ କରାଇ ଦିଏ। ତଥାପି ମୁହଁରେ ହସ ଫୁଟାଇ ନିଜକୁ ସାଉଁଟି ନେଇ ସେ ଆଗଭଳି ଆଉଥରେ କହେ, ''ଏହା ଭିତରେ ନିଶ୍ଚୟ ଦିନେ ଆସିବି। ବହୁତଥର ଭାବୁଛି ଆସିବା କଥା, କିନ୍ତୁ କ'ଣ କରିବି କୁହ ? ସମୟ କେମିତି ଚାଲିଯାଉଛି, ଜମା ଜାଣି ପାରୁନି !''

''ଆସିବ ତ ଠିକ୍ ?''

''ନିଶ୍ଚୟ''- ଶ୍ୟାମଳୀ ସବୁଥର ଭଳି କହେ।

ସୁଲେଖାକୁ ଆଡ଼େଇଦେବା ପାଇଁ ଯେ ସେ ଏଇମିତି କହି ଦେଉଥିଲା, ତା' ନୁହଁ; ସତରେ ସଂସାର ଝାମେଲାରେ ବାନ୍ଧିହୋଇ ରହୁଥିଲା ସେ। ଶାଶୁ, ଶ୍ୱଶୁର, ନଣନ୍ଦ - ସମସ୍ତେ ରହନ୍ତି ତା' ପାଖରେ। ମଣିଷ ହିସାବରେ ସେମାନଙ୍କର ତୁଳନା ହୁଏ ନାହିଁ, କିନ୍ତୁ ଯେତେ ଯାହା ହେଲେ ତ ଘର ଦାୟିତ୍ୱଟା ଶ୍ୟାମଳୀର। ଫଳରେ ଅଧିକ କାମ ଟିକିଏ ପଡ଼େ ତା' ଉପରେ।

ଘରେ ଥିଲେ ସ୍ୱାମୀ ବିପ୍ଳବ ସବୁ ରକମର ସାହାଯ୍ୟ କରନ୍ତି। ହେଲେ ଘରେ ରହିଲେ ତ ? ତାଙ୍କର ଯେ ଟୁରିଂ ଚାକିରି। ମାସର ପନ୍ଦରଦିନ ତାଙ୍କର ବାହାରେ ବାହାରେ କଟେ। ତେଣୁ ହାଟ ବଜାରଠାରୁ ଆରମ୍ଭ କରି ଘରଭଡ଼ା

ଦେବା, ପାଣି ବିଲ୍ ଦେବା - ସବୁ ବୋଝେଇ ହୋଇଯାଏ ଶ୍ୟାମଳୀ ମୁଣ୍ଡରେ। ବିପ୍ଳବ ବହୁତ ଥର ତାକୁ କହିଛନ୍ତି, ''ଘରେ ଲୋକଟାଏ ରଖ, ଶ୍ୟାମଳୀ! କିଛି ନ ହେଲେ ପରିବାପତ୍ର କଟାକଟି, ବାସନ ରଖାଥୁଆରେ ତ ସାହାଯ୍ୟ କରିବ।''

ଶ୍ୟାମଳୀ ରାଜି ହୋଇନି। ଦୁଇ ବେଡ୍‌ରୁମ୍‌ର ଛୋଟିଆ ଫ୍ଲାଟ୍, ସେଠି ପୁଣି ଆଉ ଗୋଟିଏ ମଣିଷ ଚଳପ୍ରଚଳ କରିବ! ଅଶାନ୍ତି ଲାଗିବ ନାହିଁ?

''ତାହେଲେ ଝିଅଟାଏ ରଖ। ସକାଳୁ ଆସି ସଂଧ୍ୟାବେଳକୁ ଚାଲିଯିବ,'' ବିପ୍ଳବ କହିଥିଲେ।

ଉପଦେଶଟା ମନ୍ଦ ନୁହଁ। ହେଲେ ଏମିତି କହିଦେଲେ କ'ଣ ସବୁ ହୋଇଯାଏ? ମିଳିଲେ ତ ଝିଅ! ଦୁଇଚାରିଜଣଙ୍କୁ କୁହା ହୋଇଥିଲା। ଶେଷରେ ଦିନେ ବିପ୍ଳବଙ୍କ ଅଫିସ୍ ପିଅନ ବାସୁ ପିଲାଟିଏକୁ ଧରି ଆସିଥିଲା। ତା' ଗାଁ ପିଲା, ରହେ ଏଠି ତା' ମାମୁଁ ପାଖରେ। ବାଉଁଶକାଠି ଚେହେରା। ଉଚ୍ଚତା ସାଢ଼େ ଚାରିଫୁଟ ହେବ କି ନ ହେବ।

''ପାଗଳ ହେଲ ବାସୁ, ଏ ଛୁଆ ଏଠି କି କାମ କରିବ?''

''ମା', ଛୁଆ କାହାକୁ କହୁଛନ୍ତି? ଏ ରାଧୁଆକୁ ପରା ଚଉଦ ପୂରି ସାରିଛି। ଘରେ ଖାଇବାକୁ ନ ପାଇ ଏମିତି ଶୁକୁଟିଆ ଚେହେରା ନା! ସେଥିପାଇଁ ପରା ତା' ମାମୁଁ ତାକୁ ଏଠିକି ନେଇ ଆସିଲା। ଏଠି କୋଉଠି ହେଲେ କାହା ଘରେ ରଖାଇ ଦେବ।''

''ନାଇଁ ବାସୁ, ଆମ ଘରେ ରହିବା ପାଇଁ ଜାଗା କାହିଁ? ମୁଁ ତ ସେଥିପାଇଁ ଝିଅଟିଏ ଖୋଜୁଥିଲି ଯିଏ ସକାଳୁ ଆସି ସଂଧ୍ୟାକୁ ଚାଲିଯିବ।''

ବାସୁ ଟିକିଏ ଭାବି ହେଲା, ''ଏ ନ ହେଲେ ସେୟା କରିବ। ମୁଁ ତା' ମାମୁଁକୁ କହିଦେବି। ସେ ତ ସରକାରୀ ଅଫିସରେ ପିଅନ। ଅଫିସରୁ ଫେରିବା ବାଟରେ ରାଧୁଆକୁ ସାଙ୍ଗରେ ନେଇଯିବ। ପୁଣି ସକାଳୁ ଛାଡ଼ିଦେଇ ଅଫିସ ଯିବ।''

ଏତିକିରେ ସମସ୍ୟାର ସମାଧାନ ହୋଇଯିବା କଥା। କିନ୍ତୁ ହେଲା ନାହିଁ। କାହିଁକି କେଜାଣି ସାନ ପିଲାଟିଏକୁ ଘରେ ରଖାଇ କାମ କରିବାକୁ ଶ୍ୟାମଳୀର ଇଚ୍ଛା ହେଲା ନାହିଁ। ଫଳରେ ବାସୁ ରାଧୁଆକୁ ନେଇ ଫେରିଗଲା। ଆଉ

କାମର ପାହାଡ଼ ଆଗଭଳି ଲଦି ହୋଇ ରହିଲା ଶ୍ୟାମଳୀ ମୁଣ୍ଡରେ ।

ତା' ଶାଶୂ ବେଳେବେଳେ କହନ୍ତି, ''ଏମିତି କବିତା ଲେଖା ମନ ନେଇ କ'ଣ ଘର ସଂସାର କରିହୁଏ ମା'? ନିଜକୁ ଟିକିଏ କଠିନ କରିବାକୁ ହେବ । କେଇଟା ବିଷୟ ପ୍ରତି ଆଖି ବୁଜିଦେବାକୁ ହେବ । ନ ହେଲେ ତ ତୋତେ ଭୂତ ଖଟଣି ଖଟିବାକୁ ହେବ । ମୁଁ ଅବା କୋଉ କାମର ହୋଇଥାଆନ୍ତି... ।''

ଶାଶୂ ବେଶୀ ଚଲାବୁଲା କରିପାରନ୍ତି ନାହିଁ । ସବୁବେଳେ ବାତ ନେଇ ଅସ୍ଥିର । କାମରେ ସାହାଯ୍ୟ କରିବେ କେମିତି? ନଣନ୍ଦ ରୁନି ମେଡ଼ିକାଲ୍ ପଢ଼େ । ବିଚାରୀ ନିଜ ପଢ଼ା ବୋଝରେ ଏମିତି ଦରମରା ହୋଇଥାଏ ଯେ ତାକୁ କିଛି କହିବାକୁ ବାଧେ । ପ୍ରଥମେ ପ୍ରଥମେ ତା' ଶ୍ୱଶୁର ବାହାର କାମ କରି ଦେଉଥିଲେ । କ୍ଷୀର ଆଣିବାଠାରୁ ବଜାର ସଉଦା କରିବା, ଲିପିକୁ ସ୍କୁଲରେ ଛାଡ଼ିବା, ପୁଣି ଆଣିବା ସବୁ କରୁଥିଲେ ସେ । କିନ୍ତୁ ଏବେ ତାଙ୍କର ଆଖି ବେମାରୀ ବାହାରିଛି । ଭଲ ଦେଖାଯାଉନି ତାଙ୍କୁ । ଏଇତ ସେଦିନ ରାସ୍ତା କଡ଼ରେ ପଡ଼ିଥିବା ବଡ଼ ପଥରକୁ ଦେଖି ନ ପାରି ଝୁଣ୍ଟି ପଡ଼ିଲେ । ଆଣ୍ଠୁଠିରେ କି ଅବସ୍ଥା ! ଲହୁଲୁହାଣ ହୋଇ ଘରକୁ ଫେରିଥିଲେ ସେ । ଏଭଳି ଜଣଙ୍କୁ କ'ଣ ଆଉ ବାହାର କାମ କରିବାକୁ ଛାଡ଼ି ହୁଏ ?

ଶ୍ୟାମଳୀ କାହାକୁ କିଛି ନ କହି ଚୁପ୍‌ଚାପ୍ ନିଜ ଆଡ଼କୁ ସବୁ ଦାୟିତ୍ୱ ଟାଣି ନେଇଥିଲା । ଖାଲି ଘରକାମ ବା କବିତା ଲେଖାପଢ଼ା କାମ ହୋଇଥିଲେ, ତଥାପି ତା' ଜୀବନଟା ମୋଟାମୋଟି ସୁରୁଖୁରୁରେ ଚାଲିଥାଆନ୍ତା । କିନ୍ତୁ ସେ ଯେ ଅନ୍ୟ ଗୋଟିଏ ଧନ୍ଦା ମୁଣ୍ଡାଇ ବସିଛି ! ଦୁଇବର୍ଷ ତଳୁ ସେ ଗୋଟିଏ ଛୋଟ ସ୍କୁଲରେ କାମ କରିବା ଆରମ୍ଭ କରି ଦେଇଛି ।

ତା'ର ଅତି ଭଲ ସାଙ୍ଗ ଚିତ୍ରାର ପ୍ଲେ ସ୍କୁଲ । ବୁଝେଇ ଶୁଝେଇ କୁନି କୁନି ପିଲାଙ୍କୁ 'ଏ,ବି,ସି' ପଢ଼େଇବା କାମ । ଚିତ୍ରା କେବେ ଠାରୁ କହି ଚାଲିଥିଲା, କିନ୍ତୁ ଶ୍ୟାମଳୀ ଆଦୌ ଜୋର୍ ଦେଇ ନ ଥିଲା ପ୍ରସ୍ତାବଟା ଉପରେ । ଏତିକି ଅଳ୍ପ ଦରମା ପାଇଁ ନିଜର ତିନିଚାରିଘଣ୍ଟା ସମୟ ବରବାଦ କରିବା କ'ଣ ତା'ପକ୍ଷରେ ସମ୍ଭବ? ହେଲେ ତା' ଝିଅ ଲିପି ସ୍କୁଲ ଯିବା ଆରମ୍ଭ କରିବା ପରେ ସବୁ କେମିତି ବଦଳି ଗଲା । ଖାଲି ଘରଟା ଖାଇ ଗୋଡ଼ାଇଲା ଶ୍ୟାମଳୀକୁ । ସେ ଗୋଟିଏ ହୋସ୍‌ରେ ଚିତ୍ରାର ପ୍ରସ୍ତାବକୁ ଗ୍ରହଣ କରିନେଲା । ଥରେ ଲିପିର

ସ୍କୁଲ ଯିବାଟା ଦେହସୁହା ହୋଇଯିବା ପରେ ଶ୍ୟାମଳୀର ଚାକିରି ଛାଡ଼ିଦେବା କଥା। କିନ୍ତୁ ତା' ଆଉ ହୋଇ ପାରିନାହିଁ। ଚିତ୍ରା ଏହି ଦୁଇବର୍ଷ ଭିତରେ ତା' ଉପରେ ଏତେ ବେଶୀ ନିର୍ଭରଶୀଳ ହୋଇପଡ଼ିଛି ଯେ ଚାକିରି ଛାଡ଼ିବା କଥା ଚିନ୍ତା କଲେ ତାକୁ ଦୋଷୀ ଦୋଷୀ ଲାଗେ। ନିଜ ହାତରେ ବେଢ଼ି ପିନ୍ଧାଇଛି ସେ, ଇଚ୍ଛା କରିବା ମାତ୍ରକେ କ'ଣ କୋହଳ କରି ହୁଏ ?

ରକ୍ଷା ହୋଇଛି ଯେ ସ୍କୁଲଟା ସାରା ଦିନ ପାଇଁ ନୁହଁ। ସକାଳ ନଅଟାରୁ ବାରଟା ପର୍ଯ୍ୟନ୍ତ। ସାଢ଼େବାରଟାରେ ସେଠୁ ଫେରି ଦୁଇପହରର ଖିଆପିଆ ଶେଷ କରିବା ପରେ ଆଉ ଶକ୍ତି ଥାଏ ସାହି ବୁଲିବାକୁ ? ଶ୍ୟାମଳୀ ପତ୍ରିକା ଖଣ୍ଡିଏ ଧରି ବିଛଣାରେ ପଡ଼ିଯାଏ। ହେଲେ ପତ୍ରିକାର ଗୋଟିଏ ପୃଷ୍ଠା ମଧ୍ୟ ପଢ଼ା ହୁଏ ନାହିଁ। ଦୁନିଆ ଯାକର ନିଦ ମାଡ଼ି ଆସେ ତା' ଆଖିକୁ।

ତା' ବି ବେଶୀ ସମୟ ପାଇଁ ନୁହଁ। ତିନିଟା ବେଳେ ପୁଣି ଉଠି ଲିପି ସ୍କୁଲକୁ ଦୌଡ଼ିବାକୁ ହୁଏ। ସାଢ଼େ ତିନିଟାରେ ତା' ସ୍କୁଲ ଛୁଟି। ସେମିତି ତ ବେଶୀ ବାଟ ନୁହଁ, ତେଣୁ ଅଯଥାରେ ପଇସା ଖର୍ଚ୍ଚ କରି ସେ ବସ୍, ଭ୍ୟାନ ବ୍ୟବସ୍ଥା କରିଥାଆନ୍ତା କାହିଁକି ? ନିଜେ ଯାଇ ନେଇ ଆସେ। ଆଉ ସେଇଠି ହିଁ ସୁଲେଖା ସାଙ୍ଗରେ ଦେଖା ଓ ଚିହ୍ନା ପରିଚୟ। ଏମିତି ତ ସ୍କୁଲରେ ଅନେକଙ୍କ ସାଙ୍ଗରେ ପରିଚୟ ହୁଏ। କିନ୍ତୁ ଅଧିକାଂଶ ପରିଚୟ 'କେମିତି ଅଛ,' 'ସବୁ ଖବର ଭଲ ତ ?' -କେବଳ ଏତିକିରେ ହିଁ ରହିଯାଏ। ସୁଲେଖା ସାଙ୍ଗରେ ଏଇ ସରହଦ ଟପି ଆଉ ଟିକିଏ ଅଧିକ ବନ୍ଧୁତ୍ୱ ହେବାର କାରଣଟିଏ ରହିଛି। କାରଣ ହେଲା ପାମେଲା। ସୁଲେଖାର ଝିଅ ପାମେଲା। ଭାରି ଭଲ ଝିଅଟିଏ। ପାଠରେ ଭଲ, ଖେଳକୁଦରେ ଭଲ। ବଡ଼ କଥା, ଲିପିର ହେଉଛି ସେ ଅତି ଅନ୍ତରଙ୍ଗ ସାଙ୍ଗ। ବେଷ୍ଟ ଫ୍ରେଣ୍ଡ।

ପାମେଲା ମଝିରେ ମଝିରେ ଶ୍ୟାମଳୀ ଘରକୁ ଆସେ। ଲିପି ମଧ୍ୟ ଛୁଟିଦିନରେ ବା କୌଣସି ଉତ୍ସବରେ ତାଙ୍କ ଘରକୁ ଯାଇ ଦିନଟା କଟାଇ ଆସେ। ପାମେଲାକୁ ନେବା ଆଣିବା କରିବା ଭିତରେ ସୁଲେଖା ମଧ୍ୟ ଦି' ଚାରିଥର ତାଙ୍କ ଘରୁ ବୁଲି ଗଲାଣି। କେବଳ ଶ୍ୟାମଳୀର ଯିବାଟା ହୁଏ ନାହିଁ।

ସମୟର ଅଭାବ ଯେ ଏକମାତ୍ର କାରଣ ତା' ଠିକ୍ ନୁହଁ, ଆଉ ଗୋଟିଏ କାରଣ ମଧ୍ୟ ରହିଛି। ଶ୍ୟାମଳୀ ସେ ବିଷୟରେ କାହାକୁ କହେ ନାହିଁ। ଏମିତିକି

ନିଜ ପାଖରେ ବେଳେ ବେଳେ ଲୁଚାଇ ରଖେ କଥାଟାକୁ। ଅକାରଣେ ମନ ଭିତରକୁ ଉଙ୍କି ମାରି ଆସୁଥିବା ଅସ୍ୱସ୍ତିକର ଭାବନାକୁ ମନ ଭିତରେ ହିଁ ଚାପିଦିଏ ସେ। ଭାବି ଦେଖିଲେ, ସେମିତି କିଛି ନୁହଁ। କିନ୍ତୁ କାହିଁକି ଯେ ଏମିତି ହୁଏ, ସେ କଥା କିଏ କହି ପାରିବ? ସୁଲେଖାକୁ ଦେଖିଲେ, ତା' ସାଙ୍ଗରେ ବେଶୀ କଥାବାର୍ତ୍ତା କଲେ, ଶ୍ୟାମଳୀ ଭିତରେ କେମିତି ଏକ ଦବିଯିବା ଭାବ ଆସିଯାଏ। ତା'ର ମନେ ହୁଏ ସେ ନିଜେ ଯେମିତି ଏ ପୃଥିବୀର ବିଶେଷତ୍ୱହୀନ ମଣିଷଟିଏ; କିଛି କରିବାର କ୍ଷମତା ଯାହାର ନାହିଁ। ସ୍ତ୍ରୀ ହିସାବରେ, ଗୃହିଣୀ ହିସାବରେ ସେ ଯାହା ଯେମିତି ହେଉ, ମା' ହିସାବରେ ସେ ଅତି ନଗଣ୍ୟ। ସେ ଠିକ୍ ଭାବରେ ନିଜର କର୍ତ୍ତବ୍ୟ ତୁଲାଇ ପାରେ ନାହିଁ। ତୁଲାଇବାର ଶକ୍ତି ମଧ୍ୟ ତା'ର ନାହିଁ। କେବଳ ଖୁଆଇ ପିଆଇ ପିଲାକୁ ସ୍କୁଲ ପଠେଇଦେଲେ କ'ଣ ଜଣେ ମା'ର କର୍ତ୍ତବ୍ୟ ଶେଷ? ଶ୍ୟାମଳୀ ରାତିରେ ଲିପିର ହୋମୱାର୍କ ଦେଖେ। ତା'ର ସ୍କୁଲ ଡ୍ରେସ, ଜୋତା, ବ୍ୟାଗ୍ ସବୁ ଠିକ୍ ଅଛି କି ନାହିଁ ତା' ମଧ୍ୟ ଦେଖେ। କିନ୍ତୁ ଏହାଠାରୁ ଅଧିକ କିଛି କରିବା ତା' ପକ୍ଷରେ ସମ୍ଭବ ହୁଏ ନାହିଁ।

ସୁଲେଖା କଥା ଅଲଗା। ସେ ପ୍ରତି ଶୁକ୍ରବାର ପାମେଲାର କ୍ଲାସ ଟିଚରଙ୍କ ସହିତ ଦେଖା କରେ। ପାମେଲା କେଉଁ କେଉଁ ବିଷୟରେ ଭଲ କରୁଛି, କେଉଁ ବିଷୟରେ ସେ ଦୁର୍ବଳ - ସେ କଥା ପଚାରି ବୁଝେ। କେବଳ ସେତିକି ନୁହଁ, ଖୁବ୍ ନିୟମିତ ଭାବରେ ସେ ପି.ଟି.ଏ ମିଟିଙ୍ଗମାନଙ୍କରେ ଯୋଗ ଦିଏ। ନୀରବ ଭାବରେ ନ ବସି ଆଲୋଚନାରେ ଭାଗ ନିଏ। ପିଲାଙ୍କର ମାନସିକ ଅଭିବୃଦ୍ଧି ପାଇଁ ପି.ଟି.ଏ. କ'ଣ କ'ଣ କରିବା ଉଚିତ - ସେ ସଂପର୍କରେ ସ୍ପଷ୍ଟ ଭାବରେ ନିଜ ମତ ଦିଏ। ହେଲେ ଶ୍ୟାମଳୀର ଏତେ ସବୁ କରିବା ହୁଏ ନାହିଁ। ନିହାତି ଦରକାର ନ ପଡ଼ିଲେ ସେ ସ୍କୁଲ ଗେଟ୍ ଟପି ଭିତରକୁ ଯାଏ ନାହିଁ। ସେଥିପାଇଁ ସୁଲେଖା ଭାଷାରେ ନ କହିଲେ ବି ଶ୍ୟାମଳୀକୁ ଲାଗେ ସେ ଯେମିତି ତା'କୁ ଦୋଷ ଦେଉଛି। ମନେ ମନେ ଯେମିତି ଭାବୁଛି - ଏ କେମିତିକା ନିର୍ବିକାର ମା'? ପିଲାର ପାଠପଢ଼ାରେ ଟିକିଏ ଆଗ୍ରହ ନାହିଁ!

ଶ୍ୟାମଳୀ ଯେମିତି ସ୍କୁଲର ବିଭିନ୍ନ କାର୍ଯ୍ୟକ୍ରମରେ ଭାଗ ନେଇ ପାରେ ନାହିଁ, ଠିକ୍ ସେମିତି ସ୍କୁଲକୁ ଚାନ୍ଦା ଫାନ୍ଦା ଦେବା ବ୍ୟାପାରରେ ବିପ୍ଳବ ବିଶେଷ

ଆଗ୍ରହ ଦେଖାଇ ପାରନ୍ତି ନାହିଁ। ମଧ୍ୟବିତ୍ତ ପରିବାରର ଝିଅଟିକୁ ଯେ କାଟଛାଣ୍ଡ ଦରମା ଭିତରେ ଦାମୀ ସ୍କୁଲକୁ ପଠାଉଛନ୍ତି, ସେଇଟା ହିଁ ବଡ଼ କଥା। ତା' ଉପରେ ପୁଣି ଆଜି ନୂଆ ଲାଇବ୍ରେରୀ ପାଇଁ ଡ଼ୋନେସନ୍, କାଲି ସ୍କୁଲର ସର୍ବାଙ୍ଗୀନ ଉନ୍ନତି ପାଇଁ ଶହ ଶହ ଟଙ୍କାର ଚେକ୍ - ଏ ସବୁ ସେ କରିବେ କେମିତି ? ଶ୍ୟାମଳୀର ମନେ ହୁଏ, ସୁଲେଖା ଯେମିତି ସେମାନଙ୍କର ଏଇ ଅକ୍ଷମତାକୁ କାର୍ପଣ୍ୟ ବୋଲି ଭାବେ। ନ ଭାବିବ ବା କାହିଁକି ? ତା' ବର ବ୍ୟବସାୟୀ ଲୋକ। ବ୍ୟବସାୟ ପୁଣି ଭଲ ଚାଲେ। ତେଣୁ କଥା କଥାକେ ପ୍ରିନ୍ସିପାଲଙ୍କୁ ଟଙ୍କା ଧରେଇଦେବା ତାଙ୍କ ପାଇଁ ଅତି ସାମାନ୍ୟ ଜିନିଷ। ସେଥିପାଇଁ ଟିଚର ମହଲରେ ସୁଲେଖାର ଖାତିର ଅଛି। ଅଥଚ ଶ୍ୟାମଳୀକୁ ଜାଣେ କିଏ ? ଏଥିପାଇଁ ତା' ମନ ଭିତରେ ଟିକିଏ ହୀନମନ୍ୟତା ରହିଯାଇଛି। ବୋଧହୁଏ ସେଥିପାଇଁ ସମୟର ଅଭାବକୁ ସେ ଅଧିକ କରି ଦେଖାଏ। ସୁଲେଖା ଘରକୁ ଯିବାର କଥା ମନକୁ ଆସିଲେ, ସବୁତକ କାମ ମନେ ପଡ଼ିଯାଏ କିମ୍ୱା ଅଳସୁଆମୀ ମାଡ଼ିବସେ ତାକୁ।

କିନ୍ତୁ ଏଇଟା କ'ଣ ଉଚିତ ? ତାକୁ ତ କେବେହେଲେ ଖରାପ କରି ବା ଛୋଟ ଲାଗିବା ଭଳି କଥା କହିନି ସୁଲେଖା ? ତା'ହେଲେ ସେ ଏମିତି ଅଯଥା ଆଶଙ୍କା କରୁଛି କାହିଁକି ?

ଶ୍ୟାମଳୀ ଅନ୍ୟମନସ୍କ ହୋଇପଡ଼ିଲା। ସେଦିନ ସେ ବେଶ୍ ଗୋଟିଏ ଫିଲୋସୋଫିକାଲ ମୁଡ୍‌ରେ ଥିଲା। ନ ହେଲେ କେବେ ମନ ଭିତରକୁ ଆଣୁ ନ ଥିବା କଥାଗୁଡ଼ିକ ଏମିତି ତନେଇ କରି ଦେଖି ନ ଥାଆନ୍ତା ସେ।

ସେ କୁନି କୁନି ପିଲାଙ୍କୁ ଏତେ ଭଲ କଥା ଶିଖାଉଛି। ସତ୍ୟର ମୁହାଁମୁହିଁ ହେବାକୁ ବୁଝାଉଛି, ଅଥଚ ନିଜେ ହିଁ ନିଜ ପାଖରୁ ଲୁଚୁଛି ? ନା- ନିଜ ମନକୁ ନିୟନ୍ତ୍ରଣରେ ରଖିବାକୁ ପଡ଼ିବ ତାକୁ। ସେ ସୁଲେଖା ସହିତ ଅଧିକ ସମୟ କଟାଇ ଦେଖିବ କ'ଣ ହେଉଛି। ଯଦି ମନ ମିଳିଗଲା, ତା'ହେଲେ ଯେ ତାକୁ ଭଲ ବନ୍ଧୁଟିଏ ମିଳିଯିବ; ଆଉ ଯଦି ସେମିତି ସହି ନ ହେବା ଭଳି କଥା ହୁଏ, ତେବେ ପରେ ଅଧିକ ଘନିଷ୍ଠ ହେବାର ଆବଶ୍ୟକତା ଆଉ ରହିବ କାହିଁକି ?

ଥରେ ଏଇ ଧାରଣା ଆସିବା ପରେ ବଡ଼ ହାଲୁକା ଲାଗିଲା ଶ୍ୟାମଳୀକୁ।

ସେ ସ୍ଥିର କରିନେଲା ଯେ ଯା' ଭିତରେ ସୁଲେଖା ଘରକୁ ଯିବ ନିଶ୍ଚୟ।

ସେଦିନ କୌଣସି କାରଣରୁ ଶ୍ୟାମଳୀର ସ୍କୁଲ ଛୁଟି ଥିଲା। ଶୀଘ୍ର ଶୀଘ୍ର ଘରକାମ ଶେଷ କରିଦେଇ ସେ ବାହାରି ପଡ଼ିଲା। ଆଜି ସେ ସୁଲେଖା ଘରକୁ ଯିବ। ସେଇଠି କିଛି ସମୟ ବସି ଲିପିକୁ ସ୍କୁଲରୁ ନେଇ ଘରକୁ ଫେରିବ।

ସ୍କୁଲ ପଛପାଖରେ ପ୍ରାୟ ପାଚିରିକୁ ଲାଗି ସୁଲେଖାର ଘର। ଯେଉଁଠି ସୂଚ୍ୟଗ୍ର ଜମିର ଆକାଶଛୁଆଁ ଦାମ, ସେଇଠି ଗ୍ୟାରେଜ୍, ଲନ୍, ଫୁଲ ବଗିଚା ସମେତ ତିନି ହଜାର ସ୍କ୍ୱାୟାର ଫିଟ୍‌ର ଘରଟିଏ ସେମାନଙ୍କର।

ଶ୍ୟାମଳୀ ଗେଟ୍ ଖୋଲି ବାରଣ୍ଡା ଉପରକୁ ଉଠି କଲିଂବେଲ୍‌ରେ ହାତଦେଲା। କିଛି ସମୟ ପରେ କବାଟ ଖୋଲିଲା ଛୋଟ ଝିଅଟିଏ। ଆଖିରୁ ଝରି ପଡୁଛି ସରଳତା। ଦେଖିଲେ ମୁଣ୍ଡରେ ହାତ ବୁଲେଇ ଦେବାକୁ ଇଚ୍ଛା ହୁଏ। ଟିକିଏ ଗେହ୍ଲା କରିଦେବାକୁ ମନ କରେ। ବଡ଼ ଗୁଲୁଗୁଲିଆ ଝିଅଟି। କିଏ ଏ ? ପାମେଲା ତ ତା' ମା' ବାପାଙ୍କର ଗୋଟିଏ ବୋଲି ଝିଅ ! ନିଶ୍ଚୟ ସେମାନଙ୍କର କୌଣସି ଆତ୍ମୀୟ। କିଛିଦିନ ପାଇଁ ହୁଏତ ବୁଲି ଆସିଛି। ଝିଅଟିର ଲୁଗାପଟା ପରିଷ୍କାର, କିନ୍ତୁ ପୁରୁଣା। ଏଇ ଯେଉଁ ଫ୍ରକ୍‌ଟା ସେ ପିନ୍ଧିଛି, ସେଇଟା ଗତବର୍ଷ ପାମେଲାର ଥିଲା କି ? କେମିତି ଦେଖିବା ଭଳି ଲାଗୁଛି ଶ୍ୟାମଳୀକୁ। ହୁଏତ ଛୋଟ ହୋଇଯାଇଛି ବୋଲି ସୁଲେଖା ଏଇ ଝିଅଟିକୁ ଦେଇଦେଇଛି। ଏମିତି କ'ଣ ଘରେ ଘରେ ହୁଏ ନାହିଁ? ବଡ଼ ଭଉଣୀର ଲୁଗା କ'ଣ ସାନଭଉଣୀ ପିନ୍ଧେ ନାହିଁ?

ତେବେ ହାତରେ ଯେଉଁ ତାଳି ପଡ଼ିଛି, ସେଇଟା ହିଁ ଟିକିଏ ଅସ୍ୱାଭାବିକ ଲାଗୁଛି। ଏମିତି ତାଳିପକା ଲୁଗା କ'ଣ କିଏ ନିଜ ଆତ୍ମୀୟକୁ ଦିଏ ?

ଧେତ୍- ଶ୍ୟାମଳୀ ନିଜ ଉପରେ ନିଜେ ରାଗିଗଲା। ଏଇ ଅଭ୍ୟାସ ତା'ର ଗଲା ନାହିଁ। ସବୁ କଥାକୁ ଫେଣେଇ ଗୋଳେଇ ଭାବିବାର କ'ଣ ଦରକାର ? କାହିଁକି-ସେ ଅଯଥାରେ ସୁଲେଖାର ଘର କଥାରେ ନାକ ଗୁଞ୍ଜୁଛି ?

"ସୁଲେଖା ଅଛନ୍ତି ?"

"ଆପଣ ?..."

"ମୁଁ ଶ୍ୟାମଳୀ। ପାମେଲାର ସାଙ୍ଗ ଲିପିର ମା'।"

"ଆପଣ ବସନ୍ତୁ। ମୁଁ ଡ଼ାକି ଦେଉଛି ଆଣ୍ଟିଙ୍କୁ।"

ଶ୍ୟାମଳୀ ତା'ହେଲେ ଠିକ୍ ଭାବିଥିଲା। ସୁଲେଖାର ଲେଖାଯୋଖାରେ ଝିଆରୀ

ନିଶ୍ଚୟ।

ନିଦ ମଳମଳ ଆଖିରେ ଡ୍ରଇଂରୁମ୍ ଭିତରକୁ ପଶି ଆସିଲା ସୁଲେଖା। ଇସ୍ ନିଦରୁ ତାକୁ ଉଠେଇ ଦେଲା? ଶ୍ୟାମଳୀକୁ ବଡ଼ ମାଡ଼ି ମାଡ଼ି ପଡୁଥିଲା। ଏମିତି ଅଖାଡୁଆ ସମୟରେ ତା' ଘରକୁ ଆସିବା ଆଦୌ ଉଚିତ ହୋଇନି।

''ଶ୍ୟାମଳୀ! ବିଶ୍ୱାସ ହେଉନି! ଶେଷରେ ଆମଘରକୁ ଆସିବାକୁ ତୁମର ସମୟ ହେଲା?''

''ଦେଖ, ତୁମକୁ ନିଦରୁ ଉଠେଇ ଦେଲି!''

''ଆରେ ନା..। ମୋର ଶୋଇବାର ଅଭ୍ୟାସ ନାହିଁ। ଆଜି କ୍ରିକେଟ ମ୍ୟାଚ ଦେଖୁ ଦେଖୁ ଆଖିଟା କେମିତି ଲାଗିଗଲା। ଉଃ- ଯାହା ଖେଳୁଛନ୍ତି ନା ଭାରତୀୟ ଟିମ୍! ଲାଜରେ ମୁଣ୍ଡ କଟିଯିବ। ଭଲ ହୋଇଛି ତୁମେ ଦେଖୁନ। ଜାଣି ଜାଣି କିଏ ନିଜ ବ୍ଲଡ୍‌ପ୍ରେସର ବଢ଼ାଏ? ଆଜି ବଡ଼ ବୋର୍ ଲାଗୁଥିଲା ବୋଲି ଟି.ଭି.ଟା ଖୋଲିଥିଲି। ହେଲେ...। ଛାଡ଼ ସେ କଥା। ମତେ କୁହ କେମିତି ରାସ୍ତା ଭୁଲିଗଲ ଆଜି।''

''କେବେଠୁଁ ଭାବୁଛି ତୁମ ଘରକୁ ଆସିବା କଥା, କିନ୍ତୁ ସବୁଦିନ କିଛି ନା କିଛି କାମ ରହିଯାଉଛି। ଆଜି ମୋ ସ୍କୁଲ ଛୁଟି ଅଛି ବୋଲି ବେଳ ହେଲା। ଆଉ ତୁମର ଖବର କ'ଣ?''

''ମୋର ପୁଣି କି ଖବର? ଚାଲୁଛି ସବୁ ଏକରକମ। ତୁମଭଳି ହେଲେ ଚାକିରିବାକିରି କରୁଥାଆନ୍ତି କି କବିତା ଲେଖୁଥାଆନ୍ତି, ତା'ହେଲେ କହିବା ଭଳି କେତେ କଥା ଥାଆନ୍ତା। ମୋର ତ ବୋରିଙ୍ଗ ରୁଟିନ ବନ୍ଧା ଜୀବନ, କୌଣସି ମତେ ସମୟ କଟାଇବା କଥା। ଆଚ୍ଛା.. ଚାହା ପିଇବ?''

ଏମିତିରେ ଶ୍ୟାମଳୀର ଚାହା ପିଇବାର ଅଭ୍ୟାସ ନାହିଁ। କିନ୍ତୁ ଶୀତଦିନିଆ ଦିପହର, ପୁଣି ଶୋଇବାଟା ହୋଇନାହିଁ। ଚାହା ପିଇଲେ ମନ୍ଦ ହୁଅନ୍ତା ନାହିଁ। ହସିଦେଇ ସେ କହିଲା, ''ତୁମେ ଯଦି ପିଇବ, ତା'ହେଲେ କର। କେବଳ ମୋ ପାଇଁ ଚାହା କରିବା ଦରକାର ନାହିଁ। ଏଇଟା ତ ଠିକ୍ ଚାହା ପିଇବାର ସମୟ ନୁହଁ।''

''ଚାହା ପିଇବାର ପୁଣି ସମୟ ଅଛି ନା କ'ଣ? ମୋ ଥିଓରି ହେଲା- ଏନି ଟାଇମ୍ ଇଜ୍ ଟି ଟାଇମ୍।'' ଜୋରରେ ହସିଲା ସୁଲେଖା। ''ଲତା...

ଏ ଲତା, ଚାହା ଟିକିଏ କର।''

ସେପାଖରୁ କୌଣସି ଉତ୍ତର ଆସିଲା ନାହିଁ। ଯେଉଁ ଲତାକୁ ଉଦ୍ଦେଶ୍ୟ କରି ସେ କଥାଟି କହିଲା, ସେ କ'ଣ ଘରେ ନାହିଁ ନା ଶୋଇପଡ଼ିଛି ?

ସୁଲେଖା ବୋଧହୁଏ ସେୟା ଭାବିନେଲା। ବିରକ୍ତିର ସହିତ କହିଲା, ''ଏ ଲତାକୁ ଆଉ ପାରି ହେଲା ନାହିଁ। ଟିକିଏ ସୁବିଧା ପାଇଲେ ସେ ଯାଇ ଫୁଲ ବଗିଚା ପାଖରେ ପହଞ୍ଚିଯିବ। ସେଇଠି ଘଣ୍ଟା ଘଣ୍ଟା କଟିଯିବ ତା'ର। ଆଜିକାଲିକାର ମଣିଷମାନେ କି ଯେ ଫାଙ୍କିବାଜ୍ !''

ଶ୍ୟାମଳୀ ମନେ ମନେ ହସିଲା। ଏଠି ବି ତା'ହେଲେ କାମ କରିବା ଲୋକ ହଇରାଣ କରେ ?

ଝର୍କା ପାଖକୁ ଉଠିଗଲା ସୁଲେଖା, ''ଲତା.. ଏ ଲତା।'' ଧଇଁସଇଁ ହୋଇ ପର୍ଦ୍ଦା ଠେଲି ଭିତରକୁ ପଶି ଆସିଲା ଲତା।

ଏଇ ଲତା ??

ଶ୍ୟାମଳୀ ଅବାକ୍ ହୋଇ ଦେଖୁଥିଲା। ଯେଉଁ ଛୋଟ ଝିଅଟି ତାକୁ କବାଟ ଖୋଲି ଘର ଭିତରେ ବସାଇଥିଲା, ସେ ଯେ ମୁଣ୍ଡ ତଳକୁ ପୋତି ଠିଆ ହୋଇଛି ସୁଲେଖା ସାମ୍ନାରେ ! ସେ ପୁଣି କାମରେ ଫାଙ୍କିଦେଇ ଫୁଲ ବଗିଚାରେ ତନ୍ମୟ ହୋଇଯାଉଛି ବୋଲି ସୁଲେଖା କିଛି ସମୟ ଆଗରୁ ବିରକ୍ତ ହେଉଥିଲା ?

''ମତେ ଡ଼ାକିଲେ ଆଣ୍ଟି ?''

''କ'ଣ କରୁଥିଲୁ ? ସେତେବେଳଠୁଁ ଡ଼ାକି ଚାଲିଛି। ...ମସଲା ବାଟି ସାରିଲୁଣି ?''

ସରୁ ଗଳାରେ ଲତା ଉତ୍ତର ଦେଲା, ''ମସଲା ବାଟି ଆଳୁରୁ ଚୋପା ଛଡ଼େଇ ଦେଇଛି।''

''ହଉ। ଶୀଘ୍ର ଯାଇ ଦୁଇ କପ୍ ଚାହା କର।'' ସୁଲେଖା ଗମ୍ଭୀର ସ୍ୱରରେ କହିଲା। ''ଆଉ ହଁ, ସକାଳ ଭଳି ଏତେ ଚିନି ଦେବୁନି। ସକାଳେ ଏକଦମ୍ ସିରା କରି ଦେଇଥିଲୁ।''

ଚୁପ୍‌ଚାପ୍ ଲତା ଭିତରକୁ ଚାଲିଗଲା।

ଏଇ କୁନି ଝିଅଟି ଚାହା କରିବ ? ଶ୍ୟାମଳୀର ଭିତରେ ଭିତରେ ଅସ୍ଥିରତା ଭରିଯାଉଥିଲା। ସୁଲେଖାର ସେ କ'ଣ ହୁଏ ? ଏଠି ଅଛି କାହିଁକି ?

ପ୍ରଶ୍ନଟି ତା' ଅଜାଣତରେ ଓଠକୁ ଚାଲିଆସିଥିଲା। ସୁଲେଖାର ଭ୍ରୂ କୁଞ୍ଚେଇ

ଯାଇଥିଲା, ''କିଏ ଲତା ? ...ସାତମାସ ହେଲାଣି ଏଠି ଅଛି। ଅଥଚ କୌଣସି ବୁଦ୍ଧିସୁଦ୍ଧି ହେଲା ନାହିଁ।''

ଆଠ ନଅ ବର୍ଷର ପିଲାଟିଏର ଅଧିକ ବୁଦ୍ଧିସୁଦ୍ଧି ହେବା କ'ଣ ନିହାତି ଆବଶ୍ୟକ? ନା- ଶ୍ୟାମଳୀ ପଚାରି ପାରିଲା ନାହିଁ। ତା' ଓଠ ପାଖକୁ ଆସି ପ୍ରଶ୍ନଟା ଭିତରକୁ ଫେରିଗଲା।

ହେଲେ ସୁଲେଖାର କଥା ସରି ନ ଥିଲା। ''ମୋ ବାପଘର ପାଖରେ ତା' ଘର। ଗତ ବର୍ଷ ତା' ମା' ମରିଗଲା। ବାପା ଏଠିସେଠି ପୂଜା କରି ଚଳେ। ଘରେ ଝିଅର ଖବର ବୁଝିବାକୁ କେହି ନାହିଁ। ଦିନ ସାରା ସେ ଏକା ଏକା ଘରେ ବସି ରହେ। ଏଣେ ତାଙ୍କ ପଡ଼ାଟା ଭଲ ନୁହଁ। କାହାର କ'ଣ ମତିଗତି କିଏ ଜାଣେ ? ପୁଣି ଝିଅଟି ବି ଦେଖିବାକୁ ଖରାପ ନୁହଁ। ସେତିକି ବେଳେ ମୁଁ ବାପା ମା'ଙ୍କ ପାଖକୁ ଯାଇଥିଲି। ଦିନେ ଲତାର ବାପା ସୁଦର୍ଶନ ଆସି ମତେ କହିଲା - ନାନୀ, ତୁମେ ଲତାକୁ ସାଙ୍ଗରେ ନେଇଯାଅ। ଦିନକୁ ଦି'ମୁଠା ଖାଇ ପଡ଼ି ରହିବ। ବୋଲହାକ କରିବ। ...ମୁଁ ଠିକ୍ ମନା କରିପାରିଲିନି। ନେଇ ଆସିଲି ସାଙ୍ଗରେ। ସେଇ ଦିନଠୁଁ ଅଛି ଏଇଠି।''

ବଡ଼ ଧରଣର ସମାଜସେବାଟିଏ କରିଥିବା ଭଳି ସନ୍ତୋଷ ଛାପି ହୋଇ ରହିଥିଲା ସୁଲେଖାର ମୁହଁ ଉପରେ।

ଶ୍ୟାମଳୀ କେବଳ ଚୁପ୍ ହୋଇ ବସି ରହିଥିଲା। ଏଇ ଝିଅ ଯାହାର ବୟସ ତା' ଲିପିଠୁଁ କମ୍ ହେବ, ସେ ପୁଣି ଏମାନଙ୍କ ଘରେ କାମ କରେ ? ଖରାପ ଲାଗେନି ଏମାନଙ୍କୁ ? ଫୁଲାଫାଙ୍କିଆ ଭାବରେ ତାଙ୍କ ନିଜ ଝିଅଟା ଯେଉଁଠି ବଢୁଛି, ସେଇଠି ଆଉ ଗୋଟିଏ ତା'ଠାରୁ ଛୋଟ ଝିଅ ମସଲା ବାଟେ ? ଆଳୁରୁ ଚୋପା ଛଡ଼ାଏ ? ଚାହା କରେ ?

''ଆଣ୍ଟି, ଚାହା।''

କେଡ଼େ ସୁନ୍ଦର ଟ୍ରେରେ ଚାହା ଆଣି ଶ୍ୟାମଳୀ ସାମ୍ନାରେ ରଖିଦେଲା ଲତା।

''ଚିନି କମ୍ ଦେଇଛୁ ତ ?'' ଧମକେଇବା ସ୍ୱରରେ କହି ପକେଇଲା ସୁଲେଖା। ମୁଣ୍ଡ ଟୁଙ୍ଗାରି ଭିତରକୁ ଚାଲିଗଲା ଲତା।

''ନିଅ ଶ୍ୟାମଳୀ, ଚାହା ପିଇ ନିଅ।'' ପୁଣି ଆଗ ଭଳି ସୁଲେଖାର

ଗମ୍ଭୀର ମୁହଁଟା ହସ ହସ ହୋଇଗଲା । ‘‘ଏ ଲତାଟା ଚାହା ଭଲ କରେ । ହେଲେ ମଝିରେ ମଝିରେ ଡାଗିଦା ନ କଲେ ଭଲ କରି ଚିନି ଛାଡ଼ିଦିଏ । ଗରିବ ଘର ଝିଅ ତ । ସବୁବେଳେ ବାପକୁ ଗୁଡ଼ମିଶା ଚାହା ପିଇବାର ଦେଖିଛି । ଏଠି ଆମ ଘର କାରବାର ଦେଖି ଅବାକ୍ ହୋଇଯାଏ । ଅଭାବ ନାହିଁ, ଅଥଚ ଚାହାରେ ଏତେ କମ୍ ଚିନି !’’ ଜୋରରେ ହସିବାକୁ ଲାଗିଲା ସୁଲେଖା ।

ତା’ ସାଙ୍ଗରେ ତାଳଦେଇ ଶ୍ୟାମଳୀ ଆଦୌ ହସିପାରିଲା ନାହିଁ । ସେ କେବଳ ନୀରବ ଭାବରେ ସାମ୍ନାରେ ରହିଥିବା ଚାହା କପ୍‌ଟିକୁ ଦେଖୁଥିଲା । ଉଠେଇ ଆଣି ଓଠରେ ଲଗେଇବାକୁ ହାତ ଯାଉ ନ ଥିଲା । ଗୋଟିଏ ଶିକ୍ଷିତ ପରିବାରରେ ଏମିତି ଘଟଣାଟିଏ ଦେଖି ତା’ ମନ ବିକ୍ଷେଇ ଉଠୁଥିଲା ।

ଲତାର ବାପା କହିଲା ବୋଲି ଛୋଟ ଝିଅଟାକୁ ସାଙ୍ଗରେ ନେଇ ଆସିଲା ସୁଲେଖା ! ସତରେ ଯଦି ତା’ ହୃଦୟରେ ଏ ମା’ଛେଉଣ୍ଡ ଝିଅଟି ପାଇଁ ଏତେ ଦୟା, ତା’ହେଲେ ତା’ର କାଣିଚାଏ ମୁହଁ ଉପରେ ଫୁଟେଇଲେ କ’ଣ ଅସୁବିଧା ହୋଇ ଯାଆନ୍ତା ? ଏମିତି ଗମ୍ଭୀର ଗଳା, ଧମକାଇବା ସ୍ୱର କାହିଁକି ? ଯିଏ ପିଲାଙ୍କ ମାନସିକତାର ଉନ୍ନତି ପାଇଁ ପି.ଟି.ଏ. ମିଟିଙ୍ଗମାନଙ୍କରେ ଯୁକ୍ତି କରେ, ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପାଇଁ ୱାର୍କସପ୍ କରାଇବାର ବ୍ୟବସ୍ଥା କରେ, ସେ ତା’ ଘର ଭିତରେ ରହିଥିବା ପିଲାଟି କଥା କେମିତି ଭାବି ପାରେ ନାହିଁ ? ଦିନବେଳେ ସେ ତା’କୁ ସ୍କୁଲ ପଠାଇପାରନ୍ତା ନାହିଁ ? ପାମେଲା ଯାଉଥିବା ପ୍ରାଇଭେଟ୍ ସ୍କୁଲ୍ କଥା କିଏ କହୁଛି ? ବିନା ଦରମାର ସ୍କୁଲର ତ ଅଭାବ ନାହିଁ ଏ ସହରରେ । ସ୍କୁଲ ଯାଇ ନିଜ ପଢ଼ାଶୁଣା କରି ବାକୀ ସମୟରେ ବୋଲହାକ କରିପାରନ୍ତା ! କୁନି କୁନି ହାତରେ ମସଲା ବଟାଇବା, ଚୁଲି ଜାଳି ଚାହା କରାଇବା କି ଦରକାର ? ସୁଲେଖା ନିଜେ ନ କରିବ ତ ନ କରୁ, ସେ କ’ଣ ସତରେ ତିନି ଚାରିଶହ ଟଙ୍କା ଦରମା ଦେଇ ଆଉ ଗୋଟିଏ ଲୋକ ରଖିପାରିବନି ?

ଶ୍ୟାମଳୀ ମୁହଁର ଭାବ ବଦଳି ଯାଉଥିଲା । ଛାତି ଉପରେ ହଠାତ୍ ଲଦି ହୋଇଯାଇଥିବା ଅଶାନ୍ତିତକ ସମ୍ଭବତଃ ତା’ ମୁହଁ ଉପରେ ଲେସି ହୋଇଯାଇଥିଲା । ତା’ର ଭାବାନ୍ତର ନିଶ୍ଚୟ ଆଉ ଟିକକରେ ସୁଲେଖା ଆଖିରେ ପଡ଼ିଥାଆନ୍ତା । କିନ୍ତୁ ତା’ର କ’ଣ ଯେମିତି ମନେ ପଡ଼ିଗଲା ।

‘‘ଲତା... ଏ ଲତା ।’’

ପୁଣି ଆଗ ଭଳି କବାଟ ପାଖରେ ଆସି ମୁହଁ ଦେଖାଇଲା ଲତା ।

"କ'ଣ କରୁଛୁ ?"

"କିଛି ନାହିଁ ।"

"କିଛି ନାହିଁ ? ନିଶ୍ଚୟ ଯାଇ ଟି.ଭି ସାମ୍ନାରେ ବସିଥିଲୁ । ହଁ କି ନା ?"

"ହଁ ।" -ସରୁ ଗଳାରେ ଉତ୍ତର ଦେଲା ଲତା ।

ଘରେ ଏତେ କାମ କରିବା ପରେ ଟିକିଏ ଟି.ଭି ଦେଖି ପାରିବନି ପିଲାଟି ? ଏମିତି ହିଟ୍‌ଲରୀ ଶାସନ ନିଜ ଝିଅ ଉପରେ ଲାଗୁ କରିପାରେ ସୁଲେଖା ?

"ଯା ଶୀଘ୍ର ଯାଇ ଖାତାଟା ନେଇ ଆ ।"

ଭିତରୁ ଯାଇ ଗୋଟିଏ ସରୁ ଖାତା ନେଇ ଆସିଲା ଝିଅଟି । କେଡ଼େ ସୁନ୍ଦର ମଲାଟଟିଏ ତା'ର ଉପରେ । "ଓହୋ, ପେନ୍ କାହିଁ ?" -ଅଧୈର୍ଯ୍ୟ ଭାବରେ ସୁଲେଖା ପଚାରିଲା ।

"ସ୍କୁଲ ଗଲାବେଳେ ମୋଠୁ ମାଗି ପାମେଲାନାନୀ ନେଇଗଲେ । ତାଙ୍କ ପେନ୍‌ଟା ପାଇଲେନି ତ !"

"ହଉ ଯା ପେନ୍‌ସିଲ୍‌ଟେ ନେଇ ଆ ।"

ଶ୍ୟାମଳୀ ଅବାକ୍ ହୋଇ ସେମାନଙ୍କର କଥାବାର୍ତ୍ତା ଶୁଣୁଥିଲା । ଖାତା ? ପେନ୍ ??

ଇସ୍- କି ଧାରଣା ନେଇ ବସିଥିଲା ସେ ! ସୁଲେଖା ଉପରେ, ତା'ର ଶିକ୍ଷିତ ପରିବାର ଉପରେ କେତେ ସହଜରେ ଗୋଟିଏ ଭୁଲ ଧାରଣା ତା'ର ହୋଇଯାଇଥିଲା ! ସ୍କୁଲ ସିନା ଝିଅଟାକୁ ପଠାଉନି ସୁଲେଖା, କିନ୍ତୁ ଘରେ ତ ଟିକିଏ ଟିକିଏ ପାଠ ପଢ଼ାଉଛି ! ଲତାର ବାପା ଏତିକି ମଧ୍ୟ କରି ନ ଥାଆନ୍ତା । ସତ କଥା, ଘର କାମ ସରିଲା । ଏଥର ପାଠ ନ ପଢ଼ି ଟି.ଭି କାହିଁକି ଦେଖିବ ପିଲାଟା ? ରକ୍ଷା ହୋଇଛି, ଶ୍ୟାମଳୀ ଯାଡୁସ୍ୟାଡୁ କିଛି କହିପକେଇନି । ନ ହେଲେ ତା'ର ଯେମିତି ଅସ୍ୱସ୍ତି ହୋଇଥିଲା ନା... ।

ସେ ନିଶ୍ଚିତ ମନରେ ଚାହା କପ୍‌ଟିକୁ ଉଠେଇ ମୁହଁରେ ଲଗାଇଲା । ସତ କହୁଥିଲା ସୁଲେଖା, କେତେ ସୁନ୍ଦର ଚାହା କରିଛି ପିଲାଟି !

"ଓହୋ, ପେନ୍‌ସିଲ୍ ପାଇଁ ଯାଇ ସେଠି ଶୋଇପଡ଼ିଲୁ ନା କ'ଣ ?"

"ମୁନ ଭାଙ୍ଗି ଯାଇଥିଲା । ବ୍ଲେଡ୍‌ରେ ମୁନ କରି ଆଣୁଛି ।" କୋଠରୀ

ଭିତରକୁ ଆସୁ ଆସୁ କହି ପକେଇଲା ଲତା। ତା' ପାଦ ଚାଲି ଆହୁରି ଧୀର ହୋଇ ଯାଇଥିଲା। ଶ୍ୟାମଳୀ ଓଠରେ ହସ ଖେଳିଗଲା। ସଂସାର ଯାକ ପିଲା ଏକାରକମ। ପାଠ ପଢ଼ିବାକୁ ଡ଼ାକିଲେ ଖାତା ମିଳିବନି। ପେନ୍‌ସିଲ୍‌ର ମୁନ ଭାଙ୍ଗି ଯାଇଥିବ। ନ ହେଲେ ବାରମ୍ବାର ଶୋଷ କରିବ। ଲିପି କମ୍ ହଇରାଣ କରେ ଶ୍ୟାମଳୀକୁ ?

ଲତାଠୁଁ ଖାତା ନେଇ କ'ଣ ସବୁ ଲେଖୁଛି ସୁଲେଖା। ଶ୍ୟାମଳୀ ଟିକିଏ ଆଗକୁ ଉହୁଁକି ପଡ଼ିଲା। କ'ଣ ଲେଖା ଶିଖାଉଛି ସେ ? ଇଂଲିଶ୍ ନା ଓଡ଼ିଆ ?

ହସ୍ତାକ୍ଷର ? ଆଶ୍ଚର୍ଯ୍ୟ ! ହସ୍ତାକ୍ଷର କ'ଣ ଏମିତି ତଳକୁ ତଳ ଲେଖି ଦିଆହୁଏ ? ଏପାଖ ସୋଫାରୁ ଠିକ୍ ଜାଣି ହେଉନାହିଁ। ଶ୍ୟାମଳୀ ଆଉ ଟିକିଏ ମୁଣ୍ଡ ବଙ୍କେଇ ନେଲା। କ'ଣ ଏସବୁ ଲେଖୁଛି ସେ ? ହରଡ଼ ଡ଼ାଲି ଅଧ କିଲୋ, ସୋରିଷ ତେଲ - ଏକ ଲିଟର, ଲୁଗାକଚା ସାବୁନ୍ ଗୋଟାଏ।

ଅଙ୍କ ଦେଉଛି ଲତାକୁ ? କିନ୍ତୁ ଏମିତି ଏକକ ସଂଖ୍ୟା ସହିତ ଲିଟର, କିଲୋଗ୍ରାମର ମିଶାଣ କ'ଣ ଗଣିତରେ ହୁଏ ? ଶ୍ୟାମଳୀ ସୁଲେଖାକୁ ପଚାରିବା କଥା ଭାବୁଥିଲା। ହେଲେ ନା - କିଛି ପଚାରିବାର ଆବଶ୍ୟକତା ପଡ଼ିଲା ନାହିଁ। ବେଶ୍ ପରିଷ୍କାର ସ୍ୱରରେ ସୁଲେଖା କହିଲା, ''ଭବାନୀ ଷ୍ଟୋରକୁ ଚାଲିଯା। ଯାହା ଯାହା ଦରକାର ମୁଁ ଏଇଠି ଲେଖି ଦେଇଛି। ହଁ, ଓଜନଟା ଭଲକରି ଦେଖିବୁ। ନହେଲେ ସୁବିଧା ପାଇଲେ ପଚାଶ ଶହେ ଗ୍ରାମ କମ୍ ଦେଇଦେବ ଲୋକଟା !'' ସୁଲେଖା ହାତରୁ ଖାତା ନେଇ ଲତା ଚାଲିଗଲା।

ପେନ୍‌ସିଲ୍‌କୁ ସେଇଠି କାଚ ଟେବୁଲ ଉପରେ ଗଡ଼େଇଦେଇ ସେତେବେଳକୁ ସୋଫା ଉପରୁ ଉଠିଯାଇ ସାରିଛି ସୁଲେଖା। ''ଗଜଲ ଶୁଣିବ ?'' ମୁହୂର୍ତ୍ତକ ପରେ ଗୁଲାମ ଅଲ୍ଲୀଙ୍କ ଦର୍ଦ୍ଦଭରା ସ୍ୱର କୋଠରୀରେ ଭରିଗଲା।

ଶ୍ୟାମଳୀ କିଛି ନ କହି ଚୁପ୍‌ଚାପ୍ ଚାହା କପ୍‌ଟିକୁ ସାମ୍ନା ଟେବୁଲରେ ଥୋଇଦେଲା। ଚାହାଟା ହଠାତ୍ ଏତେ ପିତା କେମିତି ହୋଇଗଲା ? ▫▫

# ନିଜ ଘର

ଯେତେବେଳେ ମନ୍ମଥ ଘରର ପରିବେଶ ଅତ୍ୟନ୍ତ ଦୁଃସହ ହୋଇଯାଏ, ସେତେବେଳେ ସେ ଚାଲିଯାଏ ରାଜିନ୍ଦର ଆହୁଜା ଘରକୁ। କିଛି ନ ହେଲେ ଚାହା କି କଫି ସହିତ ଦୁଇ ପଦ ମିଠା କଥା ତ ଶୁଣିବାକୁ ମିଳେ ସେଠି। ସେତିକି ଯେ ତା' ନିଜ ଘରେ ଦୁର୍ଲଭ।

ଦଶହରା ପରର ପ୍ରଥମ ରବିବାର ଦିନ ସେମିତି ଗୋଟାଏ ଘଟଣା ଘଟିଥିଲା ତା' ଘରେ। ରୂପଶ୍ରୀ ବର୍ଷି ଯାଇଥିଲା ଏକଦମ୍। ରୂପଶ୍ରୀ ମନ୍ମଥର ସ୍ତ୍ରୀ। ନା ଅଛି ରୂପ ନା ଅଛି ଶ୍ରୀ। କିନ୍ତୁ ଅଂଧ ପିଲାଟିର ନାମ କମଳଲୋଚନ ହେବା ଭଳି ତା' ନାଁ ବାପା ମା' ବାଛି ବାଛି ଦେଇଥିଲେ ରୂପଶ୍ରୀ। ନୂଆ ନୂଆ ସ୍ତ୍ରୀକୁ ମଂଦ ଲାଗୁ ନ ଥିଲା ମନ୍ମଥର। କିନ୍ତୁ ନୂଆ ବୋହୂରୁ ଗୃହିଣୀ ହୋଇଯିବା ପରେ ରୂପଶ୍ରୀର ପ୍ରକୃତ ସ୍ୱରୂପ ଯେମିତି ବାହାରି ପଡ଼ିଲା। କଥା କଥାକେ ଅଣ୍ଟାରେ ଲୁଗା ଭିଡ଼ି କଳି କରିବାକୁ ପ୍ରସ୍ତୁତ ହୋଇଯାଉଥିଲା ସେ।

ସେଦିନର ଘଟଣା ଘଟିବା ପଛରେ କିଛି ନୂଆ କାରଣ ନ ଥିଲା। ସେଇ ଚିରାଚରିତ ପଇସାପତ୍ର ନେଇ ଯୁକ୍ତିତର୍କ। ସେଇଥିରୁ ତିକ୍ତତା। କଥା କଟାକଟି। ପରସ୍ପରକୁ ଦୋଷ ଦିଆଦିଇ।

ଏଇମିତି ଜୀବନ ସେମାନଙ୍କ ପାଇଁ ସ୍ୱାଭାବିକ। କିନ୍ତୁ ଦୁଇ ମାସ ତଳେ ପ୍ରମୋସନ୍ ହୋଇ ଦରମାର ପରିମାଣ ପୂର୍ବାପେକ୍ଷା ସୁଦୃଶ୍ୟ ହୋଇଯିବା ପରେ ମନ୍ମଥ ଆଉ ରୂପଶ୍ରୀଙ୍କର ଗାର୍ହସ୍ଥ୍ୟ ଜୀବନ ଟିକିଏ ଭଲ ଚାଲିଥିଲା। ତେଣୁ

ହଠାତ୍ ଏମିତି କିଛି ହୋଇଯିବ ବୋଲି ସେ ଭାବି ପାରିନି। ଅସଲରେ ଶନିବାର ଦିନ ଭାଉଜଙ୍କ ପାଖରୁ ଆସିଥିବା ଚିଠିଟା ମନ୍ମଥର ଶତ ସାବଧାନତା ସତ୍ତ୍ୱେ ରୂପଶ୍ରୀ ହାତରେ ପଡ଼ି ଯାଇଥିଲା। ଭୁଲଟା ତା'ର। ଚିଠିଟା ଘରକୁ ହିଁ ଆଣିବା ଉଚିତ ନ ଥିଲା। କିନ୍ତୁ ପ୍ରତି ପଦକ୍ଷେପରେ କେତେ ଜଗି ରଖି ଚଳିବ ମଣିଷ? ଅନ୍ୟମନସ୍କ ଭାବରେ ପ୍ୟାଣ୍ଟ ପକେଟରେ ଗୁଞ୍ଜି ଦେଇଥିଲା ଚିଠିଟା। ଆଉ ଲୁଗା ସଫା କରିବା ବେଳେ ରୂପଶ୍ରୀ ହାତରେ ପଡ଼ିଯାଇଥିଲା ସେଇଟି। ଠିକଣା ଉପରେ ଆଖି ବୁଲେଇ ଆଣି ସେ ନିହାତି ଛୋଟଲୋକ ଭଳି ପାଟି କରି ଉଠିଥିଲା, "ଓହୋ, ଆଜିକାଲି ତାହେଲେ ମୋଠୁଁ ଲୁଚିଛପି ଏ ଘରେ କାମ ହେଲାଣି। ଛି ଛି - ଏମିତି ନିର୍ଲଜ ମାଇକିନା ମୁଁ ସଂସାରରେ ଦେଖିନାହିଁ। ଘର ଠିକଣାରେ ଚିଠି ଦେଲେ କାଳେ ମୁଁ ଚିଠି ଲୁଚେଇ ଦେବି, ତୁମକୁ ଦେଖାଇବିନି, ସେଥିପାଇଁ ଚିଠି ଦିଆ ହୋଇଛି ଅଫିସ୍ ଠିକଣାରେ।"

ବାସ୍ତବରେ ଏମିତି ଘଟଣାଟିଏ ଘଟିଥିଲା କିଛି ମାସ ଆଗରୁ। ସେଥିପାଇଁ ମନ୍ମଥ ହିଁ ଭାଉଜଙ୍କୁ ଅଫିସ ଠିକଣାରେ ଚିଠି ଦେବାକୁ କହି ଦେଇଥିଲା। ଏବେ ସେଟାକୁ ଧରି ବସି ଭାଉଜଙ୍କ ମୁଣ୍ଡରେ ଦୋଷ ଲଦି ଦେବ ତା'ର କଳିହୁଡ଼ୀ ସ୍ତ୍ରୀ। ତରବର ହୋଇ ମନ୍ମଥ କହି ପକାଇଲା, "ଘର ଠିକଣା ହଜେଇ ଦେଇଥିବେ ବୋଧହୁଏ। ସେଥିପାଇଁ...।"

"ସତେ? ଆଉ ଏତେ ଭାଉଜ ପଟିଆ ହୁଅନି ମ। ଏତେ ଦିନ ଧରି ମାସକୁ ତିନି ଚାରି ଖଣ୍ଡ ଚିଠି ଆସୁଥିଲା, କ'ଣ ନା ଖାଲି ଦିଅ ଦିଅ, ଏବେ ଏତେ ସହଜରେ ଭୁଲିଗଲେ? ଯେଉଁ ଘରୁ ମାଗୁଣୁ ନ ମାଗୁଣୁ ଭିକ ମିଳିଯାଏ ସେ ଘରକୁ ଭିକାରୀମାନେ ଏତେ ସହଜରେ ଭୁଲନ୍ତି ନାହିଁ।"

ମନ୍ମଥର ରକ୍ତ ତାତି ଉଠିଲା। କାହାକୁ ଭିକାରୀ କହୁଛି ଏ ରୂପଶ୍ରୀ? ମା' ଭଳି ଯିଏ ତାକୁ ମଣିଷ କରିଛି ସେଇ ଭାଉଜଙ୍କୁ? ଆଜି ଭାଇ ନାହିଁ ବୋଲି ସେ ସେମାନଙ୍କୁ ଭସେଇ ଦେବ? "ଚୁପ କର। ଛୋଟ ଲୋକଙ୍କ ଭଳି ପାଟିତୁଣ୍ଡ କର ନାହିଁ। କାହାକୁ କ'ଣ କହୁଛ ହେତୁ ଅଛି?"

"ମୁଁ ଛୋଟଲୋକ? ଯିଏ କଥା ଦେଇ କଥା ରଖି ପାରେ ନାହିଁ ସେ ଛୋଟଲୋକ।" ମନ୍ମଥଠୁଁ ଆହୁରି ଅଧିକ ଉଚ୍ଚ ସ୍ୱରରେ ପାଟି କରି ଉଠିଲା ରୂପଶ୍ରୀ।

ଏଥର ମନ୍ମଥର ଚୁପ ରହିଯିବାର ପାଳି। ରୂପଶ୍ରୀ ଏଇ ଖୁଣ୍ଟା ଦେବା ଆରମ୍ଭ କଲେ ସେ ସବୁବେଳେ ଚୁପ୍ ହିଁ ହୋଇଯାଏ। ନିଜ ନିପାରିଲା ପଣକୁ ନୀଳକଣ୍ଠ ଭଳି ଉଦରସ୍ଥ କରିଦିଏ। କ'ଣ ଆଉ କରିବ ସେ? କଥା ତ ସତରେ ଦେଇଥିଲା। ନୂଆ ନୂଆ ବାହାଘର ଦିନ ପରେ। ସେତେବେଳେ ନିହାତି ଗୋଟାଏ ବୋକା ମୂର୍ଖ ଲୋକ ଭଳି ପ୍ରେମରେ ବିଗଳିତ ହୋଇ ସେ ତା'ର ନୂଆ ସ୍ତ୍ରୀକୁ କହିଥିଲା ଯେ ସେ ତା' ପାଇଁ ଗୋଟିଏ ଘର ଗଢ଼ି ଦେବ। କେବଳ ତା' ପାଇଁ। ସାମ୍ନାରେ ବଗିଚା ଥିବ। ବଗିଚାରେ ଫୁଟିଥିବ କେତେ ରକମର ଫୁଲ। ସେଇଠି ବସି ସେ ଚାହା ପିଇବ। ଫୁଲ, ଭଅଁରର ଖେଳ ଦେଖିବ।

ମନ୍ମଥ ତା' କଥା ରଖି ପାରିନି। ଆଉ ରଖି ପାରିବ ବୋଲି ମନେ ମଧ ହୁଏ ନାହିଁ। ତେଣୁ ସୁବିଧା ପାଇଲେ ରୂପଶ୍ରୀ ତାକୁ ଖୁଣ୍ଟା ଦିଏ। ଆଉ ମନ୍ମଥ ଚୁପଚାପ ସହିଯାଏ ଆଜି ଭଳି।

ରୂପଶ୍ରୀର କଥା କିନ୍ତୁ ସରି ନ ଥିଲା। ଚିଠିଟାକୁ ସ୍ୱାମୀ ନାକ ସାମ୍ନାରେ ଦୁଇ ଥର ହଲେଇ ଦେଇ ପଚାରିଲା, ''କ'ଣ କରିବ ବୋଲି ଭାବିଛ, ଶୁଣେ। ଦଶ ହଜାର ଟଙ୍କା କ'ଣ କାଢ଼ି ଦେବ?''

''ଦେବାକୁ ତ ପଡ଼ିବ। ଭାଉଜ ଏତେ କରି ଲେଖିଛନ୍ତି ଯେତେବେଳେ। ଥରେ ବୁନୁର ବ୍ୟବସାୟ ଚାଲିଲେ ସେ ଫେରାଇ ଦେବନି?''

''ଆହା, କିଏ ଫେରାଏ ମ ଟଙ୍କା? ବିନା ସୁଧ, ବିନା ଲେଖା ପଢ଼ାରେ ଯେଉଁ ଟଙ୍କା ଆସେ ତାକୁ ଆଜିଯାଏ କିଏ ଫେରାଇଛି ନା ଫେରାଇବ? ଗତ କେଇ ବର୍ଷ ଭିତରେ ଯେତେକ ଟଙ୍କା ତୁମେ ସେଇଆଡ଼େ ଚାଲାଣ କରିଲଣି ନା ସେତକ ଥିଲେ ଆମର ଗୋଟାଏ ନୁହଁ ଦି ଦିଟା ଘର ହୋଇ ସାରନ୍ତାଣି। ..ଏତେ ଗୁଡ଼ାଏ ଟଙ୍କା ଆଣିବ କୋଉଠୁ? ବ୍ୟାଙ୍କରେ ତ ଫଟା ପାହୁଲାଟାଏ ନାହିଁ।''

''କୋଉଠୁ ଆଉ ଆଣିବି? ପି.ଏଫ୍.ରୁ...''

''ପ୍ରଭିଡେଣ୍ଟ ଫଣ୍ଡରୁ??'' ରୂପଶ୍ରୀ ଏତେ ବେଶୀ ରାଗିଗଲା ଯେ ଅଧିକ ପାଟିତୁଣ୍ଡ କରିବାକୁ ଭୁଲିଗଲା। ସେଇଠି ବସି କ'ଣ ଗୋଟାଏ ପାଇଁ ଜିଦି କରୁଥିବା ସାନ ପୁଅ ପିଠିରେ ଦୁଇ ଚାରିଟା ବିଧା କଚି ଦେଇ ଦୁମୁଦୁମୁ

ହୋଇ ରୋଷେଇ ଘରେ ପଶିଗଲା ସେ। ତା'ପରେ ଭାସିଆସିଲା ଦୁଇ ଚାରିଟା ବାସନ କଚିବାର ଶବ୍ଦ। ଆଉ ମନ୍ମଥ ସେଇ ଫାଙ୍କରେ ସ୍କୁଟରଟା ଧରି ଚାଲି ଆସିଲା ରାଜିନ୍ଦର ଆହୁଜା ଘରକୁ।

ରାଜିନ୍ଦର ତା'ର କଲିଗ୍। ଏକା ଅଫିସରେ କାମ କରେ, ପାଖାପାଖି କ୍ୟାବିନ। ଦୁଇ ଜଣଙ୍କ ମଧ୍ୟରେ କିଛିଟା ସହୃଦୟତା ଅଛି। ବାସ୍ - ସେଇଠି ହିଁ ମେଳ ଶେଷ। ମନ୍ମଥ ପାଇଁ ଏଇ ଚାକିରିଟା ଈଶ୍ୱରଙ୍କ ବରଦାନ। ଦୁଇ ପରିବାରର ନଅ ପ୍ରାଣୀ କୁଟୁମ୍ବଙ୍କ ଆଶ୍ରାବାଡ଼ି। ଅଠର ବର୍ଷ ତଳେ କମ୍ପାନୀର ସବୁଠାରୁ ତଳ ପାହାଚରେ ସେ ଏଇ ଯାତ୍ରା ଆରମ୍ଭ କରିଥିଲା। ଏବେ ଉଠି ଉଠି ଦୁଇ ବର୍ଷ ତଳେ ଅଫିସର୍ ପାହ୍ୟାରେ ପହଞ୍ଚି ପାରିଛି। ଆଉ ସତେଇଶ ବର୍ଷ ବୟସ୍କ ରାଜିନ୍ଦରର ଚାକିରି ହିଁ ଆରମ୍ଭ ସେଇ ଅଫିସରର ପାହ୍ୟାରୁ। ତାଛଡ଼ା ଚାକିରିଟା ତା' ପାଇଁ ନିହାତି ଗୋଟିଏ ସଉକ। ନହେଲେ ସେ ଯେଉଁ ପରିବାରର ପିଲା, ସେ କ'ଣ କେଇଟା ଟଙ୍କା ପାଇଁ ବେଠି ଖଟନ୍ତା। ଚେନ୍ନାଇରେ ତା' ବାପାଙ୍କର ବିରାଟ ବ୍ୟବସାୟ। କିନ୍ତୁ ରାଜିନ୍ଦରର ବ୍ୟବସାୟରେ କୌଣସି ଆଗ୍ରହ ନାହିଁ। ସେଥିପାଇଁ ବସି ବସି ଖାଇବା ଅପେକ୍ଷା ଏଇ ଚାକିରିଟାକୁ ଗ୍ରହଣ କରି ନେଇଛି।

''ଆରେ ଆସନ୍ତୁ ମିଶ୍ର ବାବୁ। କ'ଣ ଶ୍ରୀମତୀଙ୍କ ସାଙ୍ଗରେ ସକାଳୁ ବେଶ୍ ଲାଗି ଯାଇଛି ନା କ'ଣ? ମୁହଁଟା ବଡ଼ ଫଣଫଣ ଦିଶୁଛି।'' କବାଟ ଖୋଲି ରାଜିନ୍ଦର କହିଲା।

ମନ୍ମଥ ହସିଲା। କହିଲା, ''ଏ କୋଉ ନୂଆ କଥା।''

''ଭଲ କଲେ ଏଠିକି ଚାଲି ଆସିଲେ। ବଶୀର୍ ବଢ଼ିଆ କୋବି ପକୁଡ଼ି କରୁଛି।...ହଁ, ଆପଣଙ୍କ ଓଡ଼ିଶାର ଲୋକ ଜଣେ ଆସିଛନ୍ତି ଆମ ଘରକୁ।''

ଓଡ଼ିଆ ଲୋକ!

ସତରେ, ଅଠର ବର୍ଷ ତଳ କଥା ହୋଇଥିଲେ, ଏତିକି ଶୁଣି ତା' ଛାତି ପୂରି ଯାଇଥାଆନ୍ତା, ମନ ଉଦ୍‌ବେଳିତ ହୋଇଯାଇଥାଆନ୍ତା। କିନ୍ତୁ ଆଜିକାଲି ଆଉ ସେସବୁ ହୁଏ ନାହିଁ। ଅଯଥା ଭାବପ୍ରବଣତା ପାଇଁ ଶରୀରରେ ସ୍ଥାନ ଥିଲେ ତ? ତା'ଛଡ଼ା ବାଙ୍ଗାଲୋରରେ କମ୍ ଓଡ଼ିଆ ନ· କ'ଣ?

ଡ୍ରଇଙ୍ଗ୍ ରୁମ୍‌ରେ ଅତି ଦାମୀ ଲୁଗାପଟା ପିଂଧିଥିବା ଜଣେ ପତଳା, ଗେଡ଼ା

ମଣିଷ ରାଜିନ୍ଦର ସ୍ତ୍ରୀ ମଲ୍ଲିକା ସାଙ୍ଗରେ କଥା କହୁଥିଲେ। ତାଙ୍କ ସାଙ୍ଗରେ ପରିଚୟ କରାଇଦେଲା ରାଜିନ୍ଦର। "ବିକ୍ରମ ଆଚାର୍ଯ୍ୟ। ବିକ୍ରମ, ୟେ ମୋ କଲିଗ୍ ମନ୍ମଥ ମିଶ୍ର।"

ନମସ୍କାର ପର୍ବ ପରେ ବିକ୍ରମ ପୁଣି ମଲ୍ଲିକା ସାଙ୍ଗରେ ତା' ଆଲୋଚନା ଚାଲୁ କରିଦେଲା। ନୀରବ ଭାବରେ ତାକୁ ଖାଲି ଦେଖୁଥିଲା ମନ୍ମଥ। ତା'ଠାରୁ ପାଞ୍ଚ ସାତ ବର୍ଷ ଛୋଟ ହେବ। କିନ୍ତୁ ପତଳା ଚେହେରା ଯୋଗୁଁ ବୟସ ମନେ ହୁଏ ଆହୁରି କମ୍। ମୁହଁରେ ଝଲମଲ କରୁଥିଲା ଆତ୍ମପ୍ରତ୍ୟୟ। ମଲ୍ଲିକା ସାଙ୍ଗରେ ତା'ର ଗୋଟାଏ କିଛି ଗୁରୁତର ଶାଢ଼ି ଆଲୋଚନା ଚାଲିଥିଲା। ମଲ୍ଲିକାର ଗୋଟିଏ ଶାଢ଼ି ବୁଟିକ ଅଛି। ଦେଶର ବିଭିନ୍ନ ପ୍ରାନ୍ତରୁ ଶାଢ଼ି ଅଣେଇ ସେଠି ରଖେ ସେ। ମୋଟାମୋଟି ଭଲ ଚାଲେ। ବୋଧହୁଏ ସେଇ ସଂକ୍ରାନ୍ତରେ ଆସିଛି ଏ ବିକ୍ରମ।

ହଠାତ୍ ଚାହା ଆଣିବାକୁ ଭିତରକୁ ଉଠିଗଲା ମଲ୍ଲିକା। ଝର୍କା ପାଖରେ ଠିଆ ହୋଇ କର୍ଡ଼ଲେସ୍ ଫୋନ୍‌ରେ ରାଜିନ୍ଦର କାହା ସାଙ୍ଗରେ କଥା କହୁଛି।

ମନ୍ମଥ ଭଦ୍ରାମୀ ଖାତିରରେ ମୁହଁ ବୁଲାଇ ଚାହିଁଲା ବିକ୍ରମକୁ। "କ'ଣ କରନ୍ତି ଆପଣ ?"

"ମୁଁ ବୁଟିକମାନଙ୍କୁ ଓଡ଼ିଶାର ଶାଢ଼ି ସପ୍ଲାଇ କରେ। ଦିଲ୍ଲୀ, ମୁମ୍ବାଇ, କଲିକତା - ସବୁଆଡ଼େ ମୋ ଶାଢ଼ି ଯାଏ। ଏତେଦିନ ବାଙ୍ଗାଲୋର କଥା ଭାବି ପାରି ନ ଥିଲି ମୁଁ। ଏବେ ମ୍ୟାଡ଼ମ୍‌ଙ୍କ ସାଙ୍ଗରେ କଥା ହୋଇ ସ୍ଥିର ହେଲା ଯେ ତାଙ୍କ ବୁଟିକ୍‌କୁ ଶାଢ଼ି ପଠେଇବି।"

"ଆଚ୍ଛା। ଆଚ୍ଛା। ଭଲ କଥା। ଏଇ କ'ଣ ଆପଣଙ୍କର ପ୍ରଥମ ବାଙ୍ଗାଲୋର ଟ୍ରିପ୍ ?"

"ହଁ।"

"କେମିତି ଲାଗୁଛି ?"

"କେମିତି ଲାଗୁଛି ?" ହଠାତ୍ ଉତ୍ସାହିତ ହୋଇ ପଡ଼ିଲା ସେ। "ଏତେ ବେଶୀ ଭଲ ଲାଗୁଛି ଯେ ମୁଁ ଭାବୁଛି ଏଇଠି ବସବାସ କରି ରହିଯିବି।"

ରାଜିନ୍ଦରର ଫୋନ୍‌ରେ କଥା ସରିଛି। ବଶୀର୍ ହାତରେ ଚାହା, ପକୁଡ଼ି ପଠେଇ ଦେଇ ମଲ୍ଲିକା ମଧ୍ୟ ଆସିଲାଣି। କ'ଣ ସେମାନଙ୍କୁ ଭରସା ଦେବା

ପାଇଁ ବିକ୍ରମର ଏମିତି ଚାଟୁକାରୀ କଥା ?

ମନ୍ମଥ ବଙ୍କା ହସଟିଏ ହସିଲା, ''ଆପଣଙ୍କ ବ୍ୟବସାୟ ଓଡ଼ିଶାର ଖାଦ୍ଧି ନେଇ। ବାଙ୍ଗାଲୋରରେ ରହିଲେ ବ୍ୟବସାୟ ଚଳେଇବେ କେମିତି ?''

''ଆଜିକାଲି ଯୁଗରେ ସେଇଟା କ'ଣ କିଛି ପ୍ରବ୍ଲେମ୍ ନା କ'ଣ ? ମୁଁ ତ ମାସରେ କୋଡ଼ିଏ ଦିନ ବାହାରେ କଟାଏ। ବାକୀ ଦଶଟା ଦିନ ଘରେ। ହେଲା ଏବେ, ବାଙ୍ଗାଲୋରଟା ଘର ହୋଇଯିବ। ଆଉ ଟୁର୍‌ରେ ଯିବି ଓଡ଼ିଶା।''

ବାଃ, ଭଲ କଥା କହିପାରେ ତ ଏଇ ବିକ୍ରମ।

''ଆଚ୍ଛା ମିଶ୍ର ବାବୁ, ଆପଣ ଏଠି ଘରଦ୍ୱାର କରିସାରିଲେଣି ନା କ'ଣ ?''

ମନ୍ମଥ ରାଜିନ୍ଦର ମୁହଁକୁ ଚାହିଁ ହସିଲା। ଯୋଉ ମଣିଷର ମାସଟାଏ ଚଳେଇବାକୁ ଟାଣଟୁଣ ପଡ଼ିଯାଏ, ସେ ପୁଣି ଏ ସହରରେ ଘର କରିବ ?

ଯାହିତାହି ହେଉ, ଘରଟାଏ ଅଛି ଭୁବନେଶ୍ୱରରେ। ସେଇଟା ମନ୍ମଥର ଗୋଟିଏ ବଡ଼ ଆଶ୍ୱାସନା। ତା' ବାପା ତାଙ୍କ ଜୀବନ କାଳରେ କରିଯାଇଥିଲେ। ଘର ପ୍ଲାନିଙ୍ଗ ଭଲ ନୁହଁ, ସେଇ ଆଗ କାଳରେ ଯାହା ଯେମିତି ହେଉଥିଲା। କିନ୍ତୁ ଘରଟି ବେଶ ବଡ଼। ଦୋତାଲା। ଉପର ମହଲାଟା ତା' ବଡ଼ ଭାଇନା ପାଇଁ। ତଳ ମହଲାଟା ତା'ର। ବାପା ବୋଉ ଚାଲିଯିବା ପରେ ଘରଟା ଦୁଇ ଜଣଙ୍କୁ ଭଡ଼ା ଦିଆଯାଇଥିଲା। ଉପରମହଲାର ଭଡ଼ାଟିଆ ଭାଇନା ପାଖକୁ ଟଙ୍କା ପଠେଇ ଦେଉଥିଲେ। ଆଉ ତଳଟାର ଟଙ୍କା ଆସୁଥିଲା ମନ୍ମଥ ପାଖକୁ। ବେଶ୍ ଭଲ ହିଁ ସବୁ ଚାଲିଥିଲା। ଦରମା ସହିତ ଘରଭଡ଼ା ମିଶି ଆମଦାନୀ ନିହାତି କମ୍ ହେଉ ନ ଥିଲା। ବାଙ୍ଗାଲୋର ସହରଠୁଁ ଅଳ୍ପ ଦୂରରେ ତିଆରି ହେଉଥିବା ଫ୍ଲାଟ୍‌ଟିଏ କିସ୍ତିରେ କିଣିବା କଥା ସେ ଭାବିବା ଆରମ୍ଭ କରି ଦେଇଥିଲା। ରୂପଶ୍ରୀ ମଧ୍ୟ ଭାବି ନେଇଥିଲା ଯେ ମନ୍ମଥ ତା'ର କଥା ରଖିବାକୁ ଏବେ ପ୍ରସ୍ତୁତ।

ଆଉ ସେତିକିବେଳେ ଏଇ ବିପର୍ଯ୍ୟୟ। ଆକ୍ସିଡ଼େଣ୍ଟରେ ତା' ଭାଇନାର ମୃତ୍ୟୁ ହୋଇଗଲା। ତିନିଟା ପିଲା ଧରି ଭାଉଜ ଚାଲି ଆସିଲେ ଭୁବନେଶ୍ୱର। ଉପର ମହଲା ଘରକୁ। କିଛି କିଛି ପେନ୍‌ସନ୍ ମିଳୁଥିଲା ତାଙ୍କୁ। କିନ୍ତୁ ସେ ତ ସମୁଦ୍ରକୁ ଶଙ୍ଖେ ପାଣି ! ବେଳ ଅବେଳରେ ମନ୍ମଥକୁ ଟଙ୍କା ମାଗୁଥିଲେ ସେ। ଯେଉଁ ଭାଇନାଙ୍କ ହାତରେ ସେ ମଣିଷ, ସେଇ ଭାଇନା ନାହିଁ ବୋଲି

ତା' ସ୍ତ୍ରୀକୁ କେମିତି ହତାଦାର କରିଥାଆନ୍ତା ମନ୍ମଥ? ଏବଂ ସେଇଥିରୁ ହିଁ ତା' ବିବାହିତ ଜୀବନରେ ଅଶାନ୍ତିର ଆରମ୍ଭ। ଏବେ ଫ୍ଲାଟ୍ କିଣିବା କଥା ସେ ମନକୁ ଆଣେ ନାହିଁ। ଯେଉଁଠି ସୁରୁଖୁରୁରେ ଜୀବନ କଟିବା ଅସମ୍ଭବ ହୋଇପଡ଼ିଛି, ସେଠି ପୁଣି ଚନ୍ଦ୍ରକୁ କରାୟତ କରିବାର ଆଶା!

"ନା - ଏଠି ଘର ନାହିଁ। ଭଡ଼ା ଘରେ ରହେ।"

ଭାଗ୍ୟ ଭଲ, ତା' କଥାକୁ ବେଶୀ ଉଖାଡ଼ିଲା ନାହିଁ ସେ। କେବଳ କହିଲା, "ତାହେଲେ ଚାଲନ୍ତୁ ମୋ ସାଙ୍ଗରେ। ଦୁଇ ଜଣଯାକ ଏକାଠି ଯାଇ କିଛି ବ୍ୟବସ୍ଥା କରିବା। ଆପଣ ତ ଏଠିକାର ପୁରୁଣା ଲୋକ। ସାଙ୍ଗରେ ଥିଲେ ଭରସା ପାଇବି।"

ଏମିତିଆ ଚାଲାକ ଚତୁର ପାରିବାର ଲୋକ କ'ଣ ଭରସା ଖୋଜନ୍ତି? ରାଜିନ୍ଦରର କଲିଗ୍ ରୂପେ ଏତିକି ଖାତିର। ମନ୍ମଥ କହିଲା, "ଦେଖନ୍ତୁ, ମୁଁ ଏସବୁ ମାମଲାରେ ନିହାତି ଅନାଡ଼ି ଲୋକ। ଯଦି ଫ୍ଲାଟ୍ କିଣିବାର କଥା ହୁଏ, ତେବେ କାହା କାହାଠାରୁ ବୁଝି..."

ତା' କଥା ପୂରା ହେବାକୁ ଦେଲା ନାହିଁ ବିକ୍ରମ। ଶିହରି ଉଠିବା ଭଳି କହିଲା, "ଫ୍ଲାଟ୍! ଛିଃ ଛିଃ ସେ ପାରାଭାଡ଼ିରେ ରହିବ କିଏ? ଖୋପ ଖୋପ ଘର। ନା ଆଲୁଅ ଆସିବ ନା ପବନ ପଶିବ। ସେଥିରେ ପୁଣି ଯା ଘରେ ଡ଼ାଲିରେ ଛୁଙ୍କ ଦେଲେ, ତା' ଘର ତରକାରୀରୁ ଛୁଙ୍କ ବାସ୍ନା ଆସିବ। ଏମିତି ମଣିଷ ରହନ୍ତି?"

ମନ୍ମଥ କିଛି କହିଲା ନାହିଁ। ଅଦା ବେପାରୀର ଜାହାଜ ମୂଲ କରି ଲାଭ କ'ଣ? ଚୁପଚାପ ଆଡ଼େଇ ହୋଇ ରହିଗଲେ ହେଲା।

ବିକ୍ରମ କିନ୍ତୁ ନଛୋଡ଼ବଂଧା। "ସେୟା ତାହେଲେ କଥା ରହିଲା, ମିଶ୍ର ବାବୁ। ମୁଁ ଜମିର ଖୋଜ ନେଇ ଆପଣଙ୍କ ଅଫିସକୁ ଫୋନ୍ କରିବି।"

ଖାଲି କହିବା କଥା। ଯେଉଁଠି ଦୁଇ ପଇସାର ମୁନାଫା ନାହିଁ, ସେଠି କ'ଣ ପୋଖତ ବ୍ୟବସାୟୀମାନେ ସମୟ ନଷ୍ଟ କରନ୍ତି? ମନ୍ମଥ ଭାବିଥିଲା ଆଉ ବୋଧହୁଏ ଏଇ ବିକ୍ରମର ଦେଖା ଦର୍ଶନ ମିଳିବ ନାହିଁ। କିନ୍ତୁ ଆଶ୍ଚର୍ଯ୍ୟ, କେଇଟା ଦିନ ପରେ ଫୋନ କରି ହଠାତ୍ ଆସି ଅଫିସରେ ପହଞ୍ଚିଗଲା ସେ। "ବୁଝିଲେ ମିଶ୍ର ବାବୁ, ଗତ କେଇ ଦିନ ଭିତରେ ମୁଁ ସବୁ ଇନ୍‌ଫରମେସନ୍

ଯୋଗାଡ଼ କରିଛି । ଭାଗ୍ୟକୁ ଭଲ ବ୍ରୋକରଟାଏ ମିଳିଗଲା ।''

''ବ୍ରୋକର୍ !! ଅଜଣା ଅଶୁଣା ବ୍ରୋକର୍‌କୁ ବିଶ୍ୱାସ କରି ହୁଏ ?''

ଜୋରରେ ହସିବାକୁ ଲାଗିଲା ବିକ୍ରମ, ''ଭଲ କଥା କହିଲେ ଆପଣ । ମୁଁ ତେବେ କ'ଣ ? ମୁଁ ବି ତ ବ୍ରୋକର୍ । ମୋତେ ତ ପୁଣି ବିଶ୍ୱାସ କରୁଛନ୍ତି ମିସେସ ଆହୁଜା । ଆଜ୍ଞା, କିଏ ଶାଢ଼ିର ଦଲାଲି କରେ, କିଏ ଜମିର । କିନ୍ତୁ ପେଶା ତ ସେଇ ଏକ । ନିଜ ପେଶାର ଲୋକଙ୍କୁ କ'ଣ ଅବିଶ୍ୱାସ କରାଯାଏ ?''

ସେ କରୁ ବିଶ୍ୱାସ । ଖଟେଇ ଦେଉ ନିଜର ସବୁ ପଇସା । ମନ୍ମଥର ସେଥିରେ କ'ଣ ଅଛି ? ଓଡ଼ିଆ ଲୋକ ବୋଲି ଯଦି ଟିକିଏ ତା' ପାଖରେ ଆସି ଦୁଇ ପଦ ସୁଖଦୁଃଖ ହେବ, ତେବେ ସେଥିରେ ସେ କାର୍ପଣ୍ୟ କାହିଁକି କରିବ ?

ମଝିରେ ମଝିରେ ବିକ୍ରମ ଆସେ । କୋଉଠି ଜମି ଦେଖିଛି, ସେ ଖବର କହେ । ବିଭିନ୍ନ ଜାଗା ଉପରେ ମନ୍ମଥର ମତାମତ ନିଏ । ତା' ବ୍ରୋକର୍‌ର ବହୁତ ପ୍ରଶଂସା କରେ । ଏସବୁ ଆଲୋଚନା ସବୁବେଳେ ଶୁଣି ଶୁଣି ଗୁଡ଼େଇ ତୁଡ଼େଇ ହୁଏ ମନ୍ମଥର ମନ । ସେ ତ ଆଉ ଇନ୍ଦ୍ରିୟଜୟୀ ମହାପୁରୁଷ ନୁହଁ; ରକ୍ତ ମାଂସର ସାଧାରଣ ମଣିଷଟିଏ । ଆକାଂକ୍ଷାର ସରୁ ବୀଜଟିଏ ମୁଣ୍ଡ ଟେକେ ତା' ଭିତରୁ । ଘର ନ ହେଲା ନାହିଁ, ଜମି ଖଣ୍ଡିଏ ଏଠି କୋଉଠି ପକେଇ ପାରନ୍ତା ନାହିଁ ସେ ତା' ପିଲାଙ୍କ ପାଇଁ । ସେମାନେ ପଛକେ ଚାକିରି ବାକିରି କରିଲେ ମନ ପସନ୍ଦର' ଘର କରନ୍ତେ ।

ଏମିତି ହେଉ ହେଉ ଦିନେ ଆଉ ରହି ପାରିଲା ନାହିଁ ସେ । ତା' ମନ ତଳେ ଜୁଆର ସୃଷ୍ଟି କରୁଥିବା କଥାଟାକୁ ସେ ବିକ୍ରମକୁ କହିଦେଲା । ବିକ୍ରମ ନୀରବ । ନିଜର ଅତି ପାରିବାର ମଗଜ ଖଟେଇ ସେ କେଇଟା ମୁହୂର୍ତ୍ତ ପାଇଁ କ'ଣ ଭାବି ହେଲା । ତା'ପରେ କହିଲା, ''ଆଚ୍ଛା ମିଶ୍ର ବାବୁ, ଆପଣଙ୍କର ପରା ଘରଟାଏ ଅଛି ଭୁବନେଶ୍ୱରରେ । ସେଇଟା ବିକ୍ରି କରି ଦେଇ ଏଠି ଜମି ବ୍ୟବସ୍ଥା କରୁ ନାହାନ୍ତି ।''

ଖରା, ବର୍ଷାରେ ଠିଆ ହୋଇ ବାପା ତିଆରି କରିଥିବା ଘରକୁ ସେ ବିକ୍ରି କରିଦେବ ! ଏଇ ଘର ପାଇଁ ପରା ମା' ଦିନେ ତା' ଦେହରୁ ସବୁ ଗହଣା ଖୋଲି ଦେଇଥିଲା । ଆଉ ବାପା ଲୋନ୍ ସୁଝିବାକୁ ସଂଧ୍ୟା ପରେ

ଦିଲଟା ଟିଉସନ୍ ଧରିଥିଲେ। ବେଶୀ ପରିଶ୍ରମ କରି ତାଙ୍କର ଯେଉଁ ଦେହ ବିଗିଡ଼ିଥିଲା ସେତିକିବେଳେ, ଶେଷରେ ସେଇଥିରେ ହିଁ ସେ ଚାଲିଗଲେ। ଆଉ ମା'? ତା'ର ଖାଲି ଗଳା ବା କାଚ ଚୁଡ଼ି ପିଂଧା ହାତକୁ ଦେଖାଇ ସାଇ ପଡ଼ିଶାରେ କେହି କିଛି କହିଲେ, ସେ ହସିଦେଇ ଉତ୍ତର ଦେଉଥିଲା, ''ପିଲାଙ୍କ ପାଇଁ ଘର କରି ମୁଁ ରଖିଗଲି। ସେଇ ପିଲାଏ ବଡ଼ ହେଲେ ହାତକୁ ଗଳାକୁ କରି ଦେବେନି କି?''

ହେଲେ, ଆଉ କି ଗଢ଼େଇ ହେଲା ସେସବୁ?

''ସେ ତ ବାପାଙ୍କ ଅମଳର ଘର।'' ମନ୍ମଥ ସ୍ୱରରେ ଇତସ୍ତତଃ ଭାବ।

ବିକ୍ରମ ସଳଖି ବସିଲା। ''କିଛି ମନେକରିବେନି ଆଜ୍ଞା। କିନ୍ତୁ ଏସବୁ ସେଣ୍ଟିମେଣ୍ଟାଲିଟି ଭିତରେ ପଶିଲେ ସମ୍ପତ୍ତି ବାଡ଼ି ଆଉ ହେବ ନାହିଁ।''

ମନ୍ମଥ ତରବର ହୋଇ କହିପକେଇଲା, ''ନା ନା - ସେକଥା ନୁହଁ ଯେ... କଥା କ'ଣ କି, ପୂରା ଘରଟା ମୋର ନୁହଁ, କେବଳ ତଳ ମହଲାଟା। ଉପର ମହଲାଟା ବଡ଼ ଭାଇଙ୍କର ନାଁରେ ଅଛି। ସେଠି ଏବେ ତା' ପିଲାଛୁଆ ରହନ୍ତି। ଘର ବିକ୍ରି ହେବ କେମିତି?''

''କାଇଁ, କେବଳ ତଳ ମହଲାଟା ବିକ୍ରି ହେବ। ଉପରେ ରହନ୍ତୁ ଆପଣଙ୍କର ଭାଉଜଙ୍କର ପରିବାର। ଫ୍ଲାଟ ଘରେ ଏମିତି ଉପର ତଳ ହୋଇ ଭିନ୍ନ ଭିନ୍ନ ଲୋକ ରହୁନାହାନ୍ତି? ଆଜିକାଲି ଏସବୁ ଚଳିଲାଣି। ତା'ଛଡ଼ା ଆଉ ଗୋଟାଏ କଥା ଭାବି ଦେଖନ୍ତୁ। ବାଙ୍ଗାଲୋରରେ ଘର, ଜମିର ଦାମ ଯେମିତି ହୁ ହୁ ହୋଇ ବଢ଼ୁଛି, ସେଇ ତୁଳନାରେ କ'ଣ ଭୁବନେଶ୍ୱରରେ ସମ୍ପତ୍ତି ବାଡ଼ି ମୂଲ୍ୟ ବଢ଼ୁଛି? ରିଟାୟାର କରିବା ପରେ ଯଦି ଆପଣ ସ୍ଥିର କରିବେ ଯେ ଏଠି ନ ରହି ନିଜ ସହରକୁ ଫେରିଯିବେ, ତେବେ ଏଠିକା ଘର ବିକ୍ରି କରି ଯାହା ପାଇବେ, ସେଥିରେ ଅତି ସୁନ୍ଦର ଘରଟାଏ ସେଠି କରି ପାରିବେ।''

ଲୋକଟାର ବିଷୟବୁଦ୍ଧି ଅଛି। ବିକ୍ରମ ଚାଲିଯିବା ପରେ ମନ୍ମଥ ଭାବି ହେଉଥିଲା। କିଛି ଭୁଲ ଉପଦେଶ ଦେଇନି ସେ। କେବଳ ଜଣେ ବୁଦ୍ଧିମାନ ବ୍ୟବସାୟୀ ଲୋକ ହିଁ ଏଭଳି ଉପଦେଶ ଦେଇପାରେ। ନହେଲେ କ'ଣ ତା' ନିଜ ମଗଜକୁ ଏମିତି କଥାଟିଏ ଆସିଥାଆନ୍ତା। କେବଳ ସମ୍ପତ୍ତି ମୂଲ୍ୟ ବଢ଼ିବା କଥା ନୁହଁ, ଅନ୍ୟ ଗୋଟିଏ କାରଣରୁ ବିକ୍ରମର ପ୍ରସ୍ତାବଟା ତା'ର ବହୁତ

ପସନ୍ଦ ହୋଇଯାଇଥିଲା । ଧର, ଅବସର ନେବା ପରେ ସେ ଭୁବନେଶ୍ୱର ଫେରିଯାଇ ବାପାଙ୍କଠୁଁ ପାଇଥିବା ଘରେ ବସବାସ କରି ରହିଯାଏ, ତେବେ ତା' ଅବସ୍ଥା କି ଶୋଚନୀୟ ହୋଇ ପଡ଼ିବ, ସେ କଥା କ'ଣ କିଏ ଭାବି ଦେଖିଛି ? ଏଠି ଏତେ ଦୂରରେ ରହି ମଧ୍ୟ ରୂପଶ୍ରୀ ଜଳୁଛି ସବୁବେଳେ । ମନ୍ମଥର ଭାଉଜ ଓ ପିଲାଙ୍କ ପ୍ରତି ତା'ର ନାହିଁ ନଥିବା ବିତୃଷ୍ଣା । ଆଉ ସେଠି ଉପର ତଳ ହୋଇ ରହିଲେ କି ଅବସ୍ଥା ହେବ ? ସେଠି ଯେ ସବୁଦିନ ନିଆଁ ଲାଗିବ । ଏବଂ ସେଇ ନିଆଁରେ ନିତି ଆହୁତି ପଡ଼ିବ ମନ୍ମଥ ।

ମନ୍ମଥ ବିକ୍ରମ ପ୍ରସ୍ତାବରେ ରାଜି ହୋଇଗଲା । ତା'ର ସେଇ ରାମସ୍ୱାମୀ ବ୍ରୋକରକୁ କହି ଜମି ଦେଖା ଦେଖି ମଧ୍ୟ ଆରମ୍ଭ କରିଦେଲା । ତେବେ ଅସୁବିଧା ଥିଲା ଗୋଟିଏ । ସମୟ କରି ଭୁବନେଶ୍ୱର ଯାଇ ଘରଟା ବିକ୍ରି ନ କଲେ ତା' ପକ୍ଷରେ ପାଦେ ଆଗେଇବା ଅସମ୍ଭବ । ହାତରେ ଛୁଟି ଥିଲା ଯେ, ହେଲେ ଗୋଟାଏ ବିରାଟ କାମ ଆସି ପହଞ୍ଚି ଯାଇଥିଲା ଅଫିସରେ । ସେଇଟା ଏମିତି ଛାଡ଼ିଛୁଡ଼ି ଦେଇ ହଠାତ୍ କରି ଚାଲିଯିବାଟା ଉଚିତ ହୋଇ ନ ଥାଆନ୍ତା । ଶେଷରେ ମନ୍ମଥ ସ୍ଥିର କଲା ଯେ ମାର୍ଚ୍ଚ ମାସରେ ବର୍ଷ ଶେଷରେ କାମ ସରିଲେ ସେ ଭୁବନେଶ୍ୱର ଯିବ । ସେଇଠି ରହି ଏକା ସାଙ୍ଗରେ ବିକ୍ରି କାମ ସାରି ହାତରେ ପଇସା ଧରି ବାଙ୍ଗାଲୋର ଫେରିବ ।

ବିକ୍ରମର ତ ଆଉ ପଇସା ପାଇଁ ଅପେକ୍ଷା କରିବାର ଝଂଝଟ ନାହିଁ । ସେ ତା' କାମ ଜୋରସୋରରେ ଚଳେଇଥିଲା । ଦିନେ ଆସି ଖବର ମଧ୍ୟ ଦେଇଗଲା ଯେ ଜମି ବ୍ୟବସ୍ଥା ହୋଇଯାଇଛି । "ଆଃ, ଏକ୍ସଲେଣ୍ଟ ଲୋକେସନ୍ । ସେ ଜମି ପାଇଁ ରାମସ୍ୱାମୀ ପଛରେ ପଡ଼ିଛନ୍ତି ଅନେକ । କିନ୍ତୁ ମୁଁ ଜବାବ ଦେଇ ଦେଇଛି । କାଲି ତାକୁ ପଚାଶ ହଜାରର ଆଡ୍‌ଭାନ୍ସ ଚେକ୍‌ଟା ବି ଧରେଇ ଦେବି । ନହେଲେ କି ଭରସା ?"

ମନ୍ମଥର ମୁଣ୍ଡ ଟୁଙ୍ଗାରିବା ଛଡ଼ା କରିବାର କିଛି ନାହିଁ ।

"ତେବେ ଅସୁବିଧା ଗୋଟିଏ ରହିଛି, ମିଶ୍ର ବାବୁ । ଜମିଟା ଟିକିଏ ବଡ଼ ହୋଇଗଲା । ଆମେ ଜମା ତିନି ପ୍ରାଣୀ ମଣିଷ । ଅତି ବଡ଼ ଘର କରିବାର ଇଚ୍ଛା ନାହିଁ । ସ୍ତ୍ରୀର ଟିକିଏ ବଗିଚା ଫଗିଚାର ସଉକ ରହିଛି । ହେଲେ ସେଥିପାଇଁ ପାଞ୍ଚ ହଜାର ସ୍କୋୟାର ଫିଟ୍‌ର ଜମି କ'ଣ ହେବ ? ଆପଣ ବରଂ ଗୋଟାଏ

କାମ କରନ୍ତୁ, ଏଇ ଜମିରୁ ବାର ଶହ ସ୍କୋୟାର ଫିଟ୍‌ ଜମି ନେଇ ନିଅନ୍ତୁ। ସବୁ ଆଡୁ ସବୁ ସମସ୍ୟାର ସମାଧାନ ହୋଇଯିବ। ଉପରନ୍ତୁ ଆପଣଙ୍କ ଭଳି ପଡ଼ୋଶୀଟିଏ ମିଳିବ ଆମକୁ।''

''ମୋ ଉପରେ କି ଭରସା! ଦେଖନ୍ତୁ ଆଗ ଭୁବନେଶ୍ୱର ଘରର କିଛି ବ୍ୟବସ୍ଥା ହୋଇ ପାରୁଛି କି ନାହିଁ। ସେଇଟା ବିକ୍ରି ନ ହେବା ପର୍ଯ୍ୟନ୍ତ କ'ଣ ମୁଁ ଆପଣଙ୍କ ସାଙ୍ଗରେ ହାତ ମିଳେଇ ପାରିବି ?''

''ହୋଇଯିବ। ହୋଇଯିବ। ସବୁ ହୋଇଯିବ। ମନରେ ଜୋର ରଖନ୍ତୁ। ନିଜ ଉପରେ ଆସ୍ଥା ରଖନ୍ତୁ। ମୁଁ ଜମି ପାଇଁ ଆଡ୍‌ଭାନ୍ସ କାଲି ଦେଇଦଉଛି। ପରେ ଆପଣଙ୍କର ମୋର ହିସାବ ନିକାସ କରିନେବା।''

ମନରେ ଟିକିଏ କୁଣ୍ଠା ଥିଲେ ମଧ୍ୟ ମନ୍ମଥ ରାଜି ହୋଇଗଲା। ବିକ୍ରମର ଲାଙ୍ଗୁଡ଼ ଧରି ଆଗେଇ ଗଲେ ଆଉ ଯାହା ହେଉ ନ ହେଉ ଶସ୍ତାରେ ଭଲ ଜମିଟିଏ ମିଳିଯିବ। ପୁଣି ଯଦି ଏ ଅଣଓଡ଼ିଆ ରାଜ୍ୟରେ ଓଡ଼ିଆ ପଡ଼ୋଶୀଟିଏ ମିଳିଯାଏ ତାହେଲେ ତାଠୁ ବଳି ବଡ଼ କଥା କ'ଣ ଅଛି! ତା'ଛଡ଼ା ସେ ତ ଆଉ ତାକୁ ହଇରାଣରେ ପକାଉ ନାହିଁ। ନିହାତି ଯଦି ସେ ଜମି କିଣି ନ ପାରେ ତେବେ ଜମି କିଣିନେବାକୁ ପୁଣି ମଣିଷ ମିଳିବେ ନାହିଁ ଏ ବାଙ୍ଗାଲୋରରେ!

ହଠାତ୍‌ ନିଜ ଉପରେ ରାଗ ହେଲା ମନ୍ମଥର। ସେ ଏତେ ବେଶୀ ନେଗେଟିଭ୍‌ ଚିନ୍ତା କରୁଛି କାହିଁକି? ଆତ୍ମବିଶ୍ୱାସ ରଖିବା କଥା। ନହେଲେ ଯେ କିଛି ହୋଇ ପାରିବ ନାହିଁ। ଭୁବନେଶ୍ୱର ଘର ବିକ୍ରି ହେବ। ହେବ। ହେବ। ଆଉ ଏଠି ଦିନେ ତା' ନିଜ ପସଂଦର ଘର ହେବ। ହେବ। ହେବ।

ଏଥର କେବଳ ମାର୍ଚ୍ଚ ମାସ ସରିବା ପର୍ଯ୍ୟନ୍ତ ଅପେକ୍ଷା କରି ରହିବା କଥା। ତା'ର ଟ୍ରେନ୍‌ର ଟିକେଟ ହୋଇ ସାରିଥିଲା। ରୂପଶ୍ରୀ ତା' ଜିନିଷ ମଧ୍ୟ ବହୁତ ଉତ୍ସାହରେ ସଜାଡ଼ି ସାରିଥିଲା।

ଭୁବନେଶ୍ୱର ଯିବାର ଦୁଇ ଦିନ ଆଗ କଥା। ସେଦିନ ସେକେଣ୍ଡ ସଟର୍‌ଡ଼େ। ଅଫିସ୍‌ ଛୁଟି। ସକାଳ ଡ଼େରି ଯାଏ ମନ୍ମଥ ଶୋଇ ରହିଥିଲା। ହଠାତ୍‌ ରୂପଶ୍ରୀ ଆସି ତାକୁ ହଲେଇ ଦେଲା ଜୋରରେ। ଅଧା ନିଦରେ ଚମକି ଉଠିଲା ମନ୍ମଥ। ଅବାକ ହେବାର କଥା। ରୂପଶ୍ରୀ ଆଉ ଯାହା କରୁ ନା କାହିଁକି ସେ ଶୋଇଥିବା ବେଳେ ତାକୁ ଅନ୍ତତଃ ଦୁମଦାମ ଉଠେଇ ଦିଏ ନାହିଁ। କିଏ

ଜାଣ ତାକୁ କହିଥିଲା ଯେ ଏମିତି ହଠାତ୍ କରି ଠେଲି ମଣିଷକୁ ଉଠେଇ ଦେଲେ ତା'ର ହାର୍ଟ ଆଟାକ ହୋଇ ମରିଯିବାର ଆଶଙ୍କା ଥାଏ। ଆଉ ମନ୍ମଥ ମରିଗଲେ ତ ସମ୍ପୂର୍ଣ୍ଣ ଭାବରେ ଭାସିଯିବ ସେ। ତେଣୁ ଏସବୁ ମାମଲାରେ ସେ ଟିକିଏ ସାବଧାନ। ସେଥିପାଇଁ ସେଦିନ ଠେଲା ଖାଇ କିଛି ସମୟ ଅବାକ୍ ହୋଇ ତାକୁ ଦେଖିବା ପରେ ଅଘଟଣର ଆଶଙ୍କା କରି ମନ୍ମଥ ଏକା ଡ଼ିଆଁରେ ଉଠି ବସିଲା।

"କ'ଣ ହୋଇଛି?"

"ଆରେ, ତୁମ ଅଫିସରେ କାମ କରୁଥିବା ସେ ଟାଟା ସିଏରା ଲୋକଟି ଆସିଛି।"

ଟାଟା ସିଏରା ଲୋକ! ଆହୁଜା?

"ହଁ ସେଇ ଆହୁଜା।"

ରାଜିନ୍ଦର ଏଠିକି ଆସିଛି? କାହିଁକି? ଆଗରୁ ଥରେ ଦୁଇ ଥର ନିହାତି ଦରକାରୀ ଅଫିସ କାମରେ ସେ ମନ୍ମଥ ଘରକୁ ଆସିଛି। କିନ୍ତୁ ଏମିତି ଛୁଟି ଦିନଟାରେ...। ଗେଞ୍ଜି ଉପରେ ସାର୍ଟଟାଏ ଗଳେଇ ଦେଇ ମନ୍ମଥ ବାହାରକୁ ଚାଲି ଆସିଲା। ରାଜିନ୍ଦର ବାରଣ୍ଡାରେ ପଡ଼ିଥିବା ବେତ ଚୌକି ଉପରେ ବସି ନ ଥିଲା। ବରଂ ବଡ଼ ବ୍ୟତିବ୍ୟସ୍ତ ଭାବରେ ଏପାଖରୁ ସେପାଖ ଘୂରାଘୂରି କରୁଥିଲା।

"ହଠାତ୍ ଏମିତି ସକାଳୁ? କ'ଣ ହୋଇଛି?"

"ମିଶ୍ର ବାବୁ, କାଲି ରାତିରେ ମୁଁ ଗୋଟାଏ ଖବର ଶୁଣିଲି। ତା' ପରଠାରୁ ଏତେ ଅପ୍‌ସେଟ୍ ଲାଗୁଛି। ଜାଣିନି ଆପଣଙ୍କୁ କେମିତି ଏଇ ଖବର ଦେବି।"

ମନ୍ମଥର ଛାତି ଧଡ଼ ଧଡ଼ ହୋଇଗଲା। କାହାର ପୁଣି କ'ଣ ହେଲା? "କିଏ ଅସୁସ୍ଥ ନା କ'ଣ?" ସେ ସାମାନ୍ୟ ବିବ୍ରତ ଭାବରେ ପଚାରିଲା।

"ନା ନା ସେକଥା ନୁହଁ। ଆପଣଙ୍କର ଜମି କଥା।"

ମନ୍ମଥର ପୁଣି କି ଜମି? ମୂଳରୁ ମାଇପ ନାହିଁ...

"ସେଇ ଯୋଉ ବ୍ରୋକରକୁ ଧରିଥିଲା ବିକ୍ରମ, ସେ ଚିଟା କାଟିଛି। ଦଶ ବାର ଲୋକଙ୍କୁ ସେଇ ଏକା ଜମି ଦେଖାଇ ସମସ୍ତଙ୍କଠୁଁ ଆଡ୍‌ଭାନ୍ସ ଟଙ୍କା ଆଦାୟ କରି କୁଆଡ଼େ ପଳେଇଛି। ହି ଇଜ୍ ଆବ୍‌ସକଣ୍ଡିଙ୍ଗ୍। ଖବରଟା କାଲି

ରାତି ଡେରିରେ ଜଣେ ସାଙ୍ଗ ଘରେ ମୁଁ ଶୁଣିଲି। ଶୁଣିବା ପରଠୁଁ ତ...''

ଜିନିଷଟା ବୁଝିବାକୁ ମନ୍ମଥକୁ ଟିକିଏ ସମୟ ଲାଗିଲା। ସବୁଟା ମଗଜ ଭିତରେ ପଶିବାକ୍ଷଣି ଦେହଟା କେମିତି ଗୋଳେଇ ହୋଇଗଲା ତା'ର। ସେଇଠି ବାରଣ୍ଡାର ପାହାଚ ଉପରେ ଧପ୍ କରି ବସି ପଡ଼ିଲା ସେ।

ରାଜିନ୍ଦର କହି ଚାଲିଥିଲା, ''ଆପଣଙ୍କର କଥା ମୁଁ ସବୁ ଜାଣେ। ଏମିତି ଗୋଟାଏ କ୍ଷତି...। ଆଚ୍ଛା କୁହନ୍ତୁ ତ ମିଶ୍ର ବାବୁ, କେତେ ଟଙ୍କା ତାକୁ ଆପଣ ଦେଇଥିଲେ ?''

ଟଙ୍କା ? ତା' ଭଳି ଫକଡ଼ ଲୋକ ପୁଣି ଟଙ୍କା କୋଉଠୁ ଆଣିବ ? ଭୁବନେଶ୍ୱର ଘର ତ ଏପର୍ଯ୍ୟନ୍ତ ବିକ୍ରି ହୋଇନାହିଁ।

''ଥ୍ୟାଙ୍କ୍ ଗଡ୍। ମୁଁ ତ ସତରେ ବ୍ୟସ୍ତ ହୋଇ ପଡ଼ିଥିଲି ଆପଣଙ୍କ ପାଇଁ।.. ହେଲେ ଗୁଡ଼ାଏ ପଇସା ଗଲା ସେ ବିକ୍ରମର। ସେ ତ କେଇଦିନ ତଳେ ମୋତେ କହୁଥିଲା ଯେ ଜମିଟା ପାଇଁ ପଚାଶ ହଜାର ଦେଇ ଦେଇଛି। ...ଛାଡ଼।'' ଦୁଃଖିତ ଭାବରେ କଥାଟା କହି ରାଜିନ୍ଦର ଉଠିଲା।

ଗାଡ଼ି ପାଖରେ ପହଞ୍ଚିବା ପୂର୍ବରୁ ତା' ପାଦ ଦିଇଟା ହଠାତ୍ ସ୍ଥିର ହୋଇଗଲା। ଦୃଷ୍ଟି ଲମ୍ବିଯାଇଥିଲା ବାଁ ପଟକୁ। ସେଇ ଆଡ଼କୁ ଚାହିଁ ଦେଇ ଦେହଟା କମ୍ପି ଉଠିଲା ମନ୍ମଥର। ଆରେ, ଏ ଯେ ବିକ୍ରମ! ଭଡ଼ା କରିଥିବା ଧଳା ଆମ୍ବାସାଡ଼ରରୁ ଓହ୍ଲେଇ ନିଶ୍ଚିତ ପାଦ ପକେଇ ଆଗେଇ ଆସୁଛି ସେ। ମୁହଁରେ ଲହରୀ ଖେଳୁଛି ସବୁଦିନିଆ ଦଲାଲୀ ହସ ଖଣ୍ଡକ। ଖବର ଶୁଣିବା ପରେ କେତେ ସମୟ ଏମିତି ହସିବା ମୁହଁ ନେଇ ରହି ପାରିବ ? ବିକ୍ରମ ରାଜିନ୍ଦର ପାଖରେ ପହଞ୍ଚି ସାରିଥିଲା।

''ଆପଣଙ୍କ ଘରକୁ ଯାଇଥିଲି, ମିଷ୍ଟର ଆହୁଜା। ମ୍ୟାଡ଼ମ୍ କହିଲେ ଆପଣ ମିଶ୍ର ବାବୁଙ୍କ ଘରକୁ ଆସିଛନ୍ତି। ସେଥିପାଇଁ ଏଠିକି ଚାଲି ଆସିଲି। ବହୁତ ଦିନ ହେଲା ଆପଣଙ୍କ ସାଙ୍ଗରେ ଦେଖା ହୋଇନି।''

ନା- ବୋଧହୁଏ ଏପର୍ଯ୍ୟନ୍ତ କିଛି ଜାଣିନି ବିକ୍ରମ। ମନ୍ମଥ ରାଜିନ୍ଦର ମୁହଁକୁ ଚାହିଁଲା। ଅର୍ଥାତ୍, ଏକଥା ମୁଁ କହି ପାରିବିନି, ତୁମେ କୁହ। ଗଳା ଝାଡ଼ିଲା ରାଜିନ୍ଦର, ''ବିକ୍ରମ, ରାମସ୍ୱାମୀ କି କାଣ୍ଡ କରିଛି ଜାଣିଛ ?''

''ରାମସ୍ୱାମୀ ? କୋଉ ରାମସ୍ୱାମୀ ? ବ୍ରୋକର ?'' ବିକ୍ରମ ସ୍ୱରରେ ଉଦ୍‌ବିଗ୍ନତା

ନ ଥିଲା ।

"ହଁ ।"

"କ'ଣ କରିଛି ? ଓ, ଚା' ଭାଗିଯିବା କଥା କହୁଛନ୍ତି ତ ।"

ମନ୍ମଥ ଚମକି ଉଠିଲା । ତାହେଲେ ଏ ଖବର ଜାଣିଛି ବିକ୍ରମ ? ହେଲେ ସେ ଏମିତି ନିଶ୍ଚିନ୍ତ କେମିତି ? ଏତେଗୁଡ଼ାଏ ଟଙ୍କା ପାଣିରେ ପଡ଼ିଯିବା ପରେ ଜଣେ କ'ଣ ବିନା ପ୍ରତିକ୍ରିୟାରେ ପକେଟରୁ ଦାମୀ ସିଗାରେଟର ପ୍ୟାକେଟ କାଢ଼ି ଆରାମରେ ଧୂଆଁ ଟାଣିବାର ଆୟୋଜନ କରିପାରେ ?

ସେ ଆଉ ରହି ପାରିଲା ନାହିଁ। କହି ଉଠିଲା, "ତୁମେ ପରା ତାକୁ ପଚାଶ ହଜାର ଟଙ୍କାର ଚେକ୍ ଦେଇଥିଲ । ସେଇଟା ଯେ ଗଲା ।"

"କିଛି ଗଲା ନାହିଁ, ଆଜ୍ଞା । ଏମିତି ସହଜରେ ଯଦି ଟଙ୍କା ଚାଲି ଯାଉଥାଆନ୍ତା, ତାହେଲେ କ'ଣ ମୁଁ ଏଇ ବ୍ୟବସାୟରେ ତିଷ୍ଠି ପାରିଥାଆନ୍ତି ?"

"ମାନେ ?" ରାଜିନ୍ଦର ମଧ୍ୟ ଅବାକ ।

"ମୁଁ ପରା ଏଇମାନଙ୍କର ନାଡ଼ି ନକ୍ଷତ୍ର ଚିହ୍ନିଛି। ସେ କହିଲା ବୋଲି' ପଚାଶ ହଜାର ଟଙ୍କା ଧରେଇ ଦେଇ ଥାଆନ୍ତି ନା କ'ଣ ? ମୁଁ ଯେଉଁ ଆକାଉଣ୍ଟର ଚେକ ଦେଇଛି, ସେଇ ଆକାଉଣ୍ଟ୍ ହିଁ ଆଉ ନାହିଁ। କେବେଠାରୁ ବନ୍ଦ କରି ଦେଇଛି । ଅଚଳ ଚେକ୍ ଧରି କରିବ କ'ଣ ସେ ?"

"ଏଇଟା ଫୋର୍ଜରି ହେଲା ନାହିଁ ?"

"କି ଫୋର୍ଜରି, ଆଜ୍ଞା । ଯେଉଁ ଲୋକ ଦଶ ବାର ଜଣଙ୍କଠୁଁ ଟଙ୍କା ନେଇ ପଳେଇଛି, ସେ ପୁଣି ମୋ ବିରୁଦ୍ଧରେ ଫୋର୍ଜରି କେଶ୍ କରିବ ?"

"ଆଉ ଯଦି ସେ ଜେନୁଇନ୍ ମଣିଷ ହୋଇ ଥାଆନ୍ତା । ଯଦି ଜମିଟା କେବଳ ତୁମକୁ ବିକ୍ରି କରିବା ପାଇଁ ଭାବି ଥାଆନ୍ତା । ଏବଂ ଚେକ୍‌ଟା ଭଙ୍ଗେଇବା ପାଇଁ ବ୍ୟାଙ୍କ୍‌କୁ ଯାଇଥାଆନ୍ତା । ତା'ହେଲେ କ'ଣ କରିଥାଆନ୍ତ ? ଜେଲରେ ପଶିବାକୁ ହୋଇ ଥାଆନ୍ତା ଯେ ।"

ଏଥର ବିକ୍ରମ ଜୋରରେ ହସିବାକୁ ଲାଗିଲା । କହିଲା, "ଆପଣ ମିଶ୍ର ବାବୁ, ବଡ଼ ସରଳ ମଣିଷ । ସେଥିପାଇଁ ଏତେ ଦିନ ଏଠି ନିଜର ଖଣ୍ଡିଏ ଘର କରି ପାରିନାହାନ୍ତି । ଚେକ୍ ବାଉନ୍ସ କରିବା ଘଟଣାରେ କେତେ ଜଣ ଜେଲ୍‌ରେ ପଶନ୍ତି ? ହେଇ ହେଇ ଏୟା ହୋଇଥାଆନ୍ତା, ଲୋକଟା ମୋ ପାଖକୁ

ଆସି ପାଟିତୁଣ୍ଡ କରିଥାଆନ୍ତା। ବାସ୍ - ମୁଁ ମାଫି ମାଗି ନେଇ ସତ ଚେକ୍ ବା କ୍ୟାସ୍ ଧରେଇଦେଇଥଆନ୍ତି ତାକୁ।'' ଓଠରେ ସିଗାରେଟ ଧରି ଲାଇଟର୍ ଛୁଆଁଇଲା ସେ।

ମନ୍ମଥ ଅବାକ ହୋଇ ବିକ୍ରମର କଥା ଶୁଣୁଥିଲା ଆଉ ହାବଭାବ ଦେଖୁଥିଲା।

''ଆପଣ ଚିନ୍ତା କରନ୍ତୁ ନାହିଁ, ମିଶ୍ର ବାବୁ। ମୋର ଆଉ ଜଣେ ବ୍ୟବସାୟୀ ସାଙ୍ଗ ଗୋଟିଏ ଭଲ ବ୍ରୋକର୍‌ର ଠିକଣା ଦେବ କହିଛି।''

ଏ କଥାର କିଛି ଉତ୍ତର ଦେଲା ନାହିଁ ମନ୍ମଥ। ବିକ୍ରମ ଓ ରାଜିନ୍ଦର ଚାଲିଯିବାର ବହୁତ ସମୟ ପରେ ମଧ୍ୟ ସେଇଠି ବାହାର ବାରଣ୍ଡାରେ ବସି ସେ କେବଳ ଭାବି ହେଉ ଥିଲା। କେତେବେଳକୁ ଉଠି ଗୋଟାଏ ହୋସ୍‌ରେ ସ୍କୁଟର୍ ନେଇ ଷ୍ଟେସନ୍‌ରେ ପହଞ୍ଚିଗଲା ସେ। ଭୁବନେଶ୍ୱରର ଟ୍ରେନ୍ ଟିକେଟ କ୍ୟାନ୍‌ସଲ୍ କରିବା ବେଳେ ବଡ଼ ହାଲୁକା ଲାଗୁଥିଲା ତାକୁ।

ବିକ୍ରମ ଠିକ୍ କହୁଥିଲା। ସେ ସରଳିଆ ମଣିଷ। ବର୍ତ୍ତମାନର ପୃଥିବୀରେ ନିହାତି ମିସ୍‌ଫିଟ୍। ବିଲେଇ ମୂଷାଙ୍କର ଛକା ପଞ୍ଜା ଖେଳରେ ପଶିବାର ମାନସିକତା କାହିଁ? ଶିକାରୀ ବନିବା ନିଶାରେ ପାଗଳ ହେଲେ ମନ୍ମଥ ନିଜେ ଶିକାର ହୋଇଯିବା ଅସମ୍ଭବ ନୁହଁ। ବରଂ ଚାଲୁ ଯାହା ଯେମିତି ଚାଲିଛି। ନ ହେଉ ନିଜ ଘର। ତା'ର ଏଇ ଅପାରଗପଣିଆ ନେଇ ରୂପଶ୍ରୀ କଟା କଟା କଥା କହି ହାଡ଼ ଜଳେଇ ଦେବ। କିନ୍ତୁ କାଙ୍ଗାଳ କରି ରାସ୍ତା କଡ଼ରେ ତ ବସେଇ ଦେବ ନାହିଁ। □□

# ପ୍ରଳୟ ପରେ

ରାତିଯାକ ନିଦ ନାହିଁ। ଖାଲି କଡ଼ ଲେଉଟାଇ, ଲୁହଧାରରେ ତକିଆ ଭିଜେଇ ଅଳକା ରାତିଟା କଟାଇ ଦେଲେ। ପେଟ ଭିତର ମନ୍ଥି ହୋଇ କୋହ ଉଠୁଛି। ତା' ଉପରେ ପୁଣି ଅନାହୃତ ଆଶଙ୍କା।

ସମସ୍ତେ ଚାଲିଗଲେ। ସମସ୍ତେ। ତାଙ୍କ ଭାଇଭଉଣୀଙ୍କ ଭିତରେ ସେ ଏବେ ଏକା। କେଜାଣି କେତେଦିନ ଏମିତି ଏକା ଏକା ବଞ୍ଚି ରହିବାକୁ ହେବ!

ନା- ଆଉ ଏ ସହର, ଏ ପରିବେଶ ଭଲ ଲାଗୁ ନାହିଁ। ଇଚ୍ଛା ହେଉଛି ଗାଁକୁ ଫେରିଯିବାକୁ। ନିଜ ଜଗତକୁ।

ହେଲେ ସେମିତି କ'ଣ କରି ହୁଏ? ଏଠି ସବୁ କାମ ନ ଛିଣ୍ଡିଲେ କିଏ କ'ଣ ଏମିତି ଚାଲି ଯାଇ ପାରେ?

କିନ୍ତୁ... କିନ୍ତୁ...

ଆଉ ଶକ୍ତି ନାହିଁ। ଆଉ ବାରୁଦ ବହ୍ନିର ସାମ୍ନା କରିବାକୁ ଅଳକାଙ୍କ ଶରୀରରେ କ୍ଷମତା ନାହିଁ।

ପୁଣି ଥରେ କଡ଼ ଲେଉଟାଇ କାନ୍ଥ ଆଡ଼କୁ ମୁହଁ କଲେ ଅଳକା। କେତେ ବେଶୀ ଗତାନୁଗତିକ ହୋଇଗଲା ତାଙ୍କର ଜୀବନଟା! ନିତିଦିନିଆ ଜୀବନରେ ତ ଥିଲା ଏକ ରକମ ରୁଟିନ୍; ଦୁଃଖ ଶୋକରେ ବି ସେଇଟା ସାମିଲ୍ ହୋଇଗଲା? ସେଇ ଏକା ଗତ, ସେଇ ଏକା ଛନ୍ଦ।

ସେ କ'ଣ ବା ଅଧିକ ଚାହିଁଥିଲେ? ସାମାନ୍ୟ, ଅତି ସାମାନ୍ୟ ବ୍ୟତିକ୍ରମ। ସେତିକ ମଧ୍ୟ ଦୁର୍ଲଭ? ଠାକୁର ଯେମିତି ରାଗୀ ସଙ୍ଗୀତ ଶିକ୍ଷକ ଭଳି ଆଖି

ଲାଲ ଲାଲ କରି ସାମ୍ନାରେ ବସି ରହିଛନ୍ତି। ତାଳରୁ ବେତାଳ ହେବାର ଛୁ ନାହିଁ। ଆରୋହ ଅବରୋହର ସପ୍ତକରୁ ବିଚ୍ୟୁତ ହେବାର ଅନୁମତି ନାହିଁ।

ଦୀର୍ଘ ନିଶ୍ୱାସ ନେଇ ବିଛଣାରୁ ଉଠି ପଡ଼ିଲେ ଅଳକା। ଆଉ ଶୋଇ ଲାଭ କ'ଣ ? ସିନ୍ଦୁରା ଫାଟି ଆସିଲାଣି। ଏଥର ଉଠି ନିଜର କାମ ଦାମ କରିଲେ ହୁଏ। କିନ୍ତୁ ଗତରାତିଠୁଁ ଅଶାନ୍ତିର ଆଶଙ୍କାରେ ଛାତି ଯେଉଁ ଧଡ଼ଧଡ଼ ହେବା ଆରମ୍ଭ ହୋଇଥିଲା, ସେଇଟା ଯେ ତାଙ୍କର ପାଦକୁ ନିଥର କରି ଦେଉଛି। ଅବସନ୍ନ ହୋଇଯାଉଛି ଶରୀର।

ଗୋଟିଏ ଅଜଣା ଭୟ ଅଳକାଙ୍କର ହୃଦୟ, ଫୁସଫୁସ, ଅନ୍ତନାଡ଼ୀ - ସବୁକୁ କେମିତି ରୁନ୍ଧି ପକାଉଥିଲା। ଏଇ ବୋଧହୁଏ। ଏଇ ମାତ୍ର ବୋଧହୁଏ ଆରମ୍ଭ ହୋଇଯିବ। ଗୋଟାଏ ବିରାଟ ବିସ୍ଫୋରଣରେ ଘର ଦ୍ୱାର ସବୁ ଭାଙ୍ଗି ଛିନ୍‌ଛତର ହୋଇଯିବ। ସବୁ ଥର ଭଳି।

ଥଣ୍ଡା ପାଣି ମୁଣ୍ଡରେ ଢ଼ାଳୁ ଢ଼ାଳୁ ଅଳକାଙ୍କର ଓଠ ଥରିଗଲା। ଆହୁରି କେତେ ଦେଖିବାକୁ ହେବ ତାଙ୍କୁ ? ଏହା ଆଗରୁ ଅନିଚ୍ଛା ସତ୍ତ୍ୱେ ସେ ଜଡ଼େଇ ହୋଇ ଯାଇଛନ୍ତି ତିନି ତିନିଟା ବିସ୍ଫୋରଣ ସହିତ। ଏଇ ଯେଉଁଟା ହେବ ହେବ ବୋଲି ରହିଛି, ସେଇଟାକୁ ମିଶାଇଲେ ସଂଖ୍ୟା ହେବ ଚାରି।

ବୋଧହୁଏ ଏଇ ଶେଷ। ଅନ୍ତତଃ ତାଙ୍କ ଜୀବନରେ।

ଗାମୁଛାରେ ବାଳ ଭଲ ଭାବରେ ଝାଡ଼ି, ପୋଛି ମଠା ଶାଢ଼ି ପିନ୍ଧିନେଲେ ଅଳକା। ଆଜି ପୂଜାପୂଜି କରିବାର କଥା ନାହିଁ। ତଥାପି ପ୍ରାଣାୟମ ନ କଲେ ନ ଚଳେ। ସେଇ ପ୍ରାଣାୟାମ ଜୋରରେ ଷାଠିଏ ବର୍ଷ ବୟସରେ ମଧ୍ୟ ତାଙ୍କ ଶରୀରଟା ସୁସ୍ଥ, ନିରୋଗ ରହିଛି। ଦିନଟାଏ ପାଇଁ ବି କ'ଣ ତାକୁ ଛାଡ଼ି ପାରିବେ ?

କୋଠରୀର ପ୍ରାୟ ମଝିଆ ମଝି ସେ ପୂଜା କମ୍ବଳଟାକୁ ଚାରି ଭାଙ୍ଗ କରି ବିଛାଇଲେ। ତା'ପରେ ପୂର୍ବକୁ ମୁହଁ କରି ପଦ୍ମାସନରେ ବସୁ ବସୁ କଥାବାର୍ତ୍ତାର ଚୁପଚାପ ଶବ୍ଦ ଆସି କାନରେ ପଡ଼ିଲା ତାଙ୍କର।

ଏଇଭଳି ତ ଆରମ୍ଭ ହୁଏ। ଏହା ହିଁ ତ ବିସ୍ଫୋରଣର ପ୍ରଥମ ଲକ୍ଷଣ। ଶାନ୍ତ, ଚୁପଚାପ କଥାବାର୍ତ୍ତା। ସେଇଥିରୁ ଧୀରେ ଧୀରେ ଗଳାର ସ୍ୱର ଉଚ୍ଚ ହୋଇଯାଏ। ସାଧାରଣ କଥାବାର୍ତ୍ତା ବଦଳିଯାଏ ଯୁକ୍ତିତର୍କରେ। ତା'ପରେ ଆରମ୍ଭ

ହୋଇଯାଏ ରୀତିମତ ଚିତ୍କାର । ବାହାରୁ ଆସିଥିବା ଆତ୍ମୀୟ ସ୍ୱଜନ, ପାଖ ପଡ଼ୋଶୀ ସମସ୍ତଙ୍କୁ ବେଖାତିର କରି ଚିତ୍କାର । ଯେଉଁଥିରେ ଝଲମଲ କରୁଥାଏ ଲାଳସା । ସବୁ ଗୋଳେଇ ହୋଇଯାଇ ନିହାତି ମୁଣ୍ଡ କଟିଯିବା ଭଳି ପରିସ୍ଥିତି ।

ଅଳକା ଆଗରୁ ଦେଖିଛନ୍ତି, ସହିଛନ୍ତି । ତଥାପି ଆଶଙ୍କାରେ ମ୍ରିୟମାଣ ହୋଇପଡୁଛନ୍ତି ସେ ।

ଅସହ୍ୟ । ନିହାତି ଅସହ୍ୟ ।

ଏଇମିତି ପ୍ରଥମ ହୋଇଥିଲା ପନ୍ଦର ବର୍ଷ ତଳେ । ଯେତେବେଳେ ଆକ୍ସିଡ଼େଣ୍ଟ୍‌ରେ ହଠାତ୍ କରି ତାଙ୍କ ସ୍ୱାମୀ ରାଧାନାଥ ଚାଲିଗଲେ, ସେତେବେଳେ ଏମିତି ଗୋଟିଏ ପରିସ୍ଥିତି ଘଟିଥିଲା ତାଙ୍କ ଶ୍ୱଶୁର ଘରେ । ଅଳକାଙ୍କ ଜୀବନରେ ।

ରାଧାନାଥଙ୍କ ଶ୍ରାଦ୍ଧର ଧୂପ ଗନ୍ଧ ହଜିଯିବା ପୂର୍ବରୁ ଆରମ୍ଭ ହୋଇଯାଇଥିଲା ତୁମୁଳ ଯୁକ୍ତିତର୍କ । ଅଳକାଙ୍କର ତିନି ଦିଅର, ଚାରି ନଣନ୍ଦ ନଣନ୍ଦେଇ ଏକାଠି ହୋଇ ଏ ଯୁକ୍ତିତର୍କ । କାନ ନ ପାତି ମଧ ଭିତର ଘରୁ ସେ ସବୁ ଶୁଣି ପାରିଥିଲେ । ଆଶ୍ଚର୍ଯ୍ୟ, ଯୁକ୍ତିତର୍କ ପୁଣି ତାଙ୍କ ସ୍ୱାମୀଙ୍କ ସଂପତ୍ତି ନେଇ !! ନିଜ ପରିଶ୍ରମରେ ରାଧାନାଥ ଠିଆ କରାଇଥିବା ବ୍ୟବସାୟକୁ କେଉଁ ଅଧିକାରରେ ସେମାନେ ଅକ୍ତିଆର କରିବାର ଆଶା କରୁଛନ୍ତି ? ବାଣ୍ଟିକୁଣ୍ଟି ନେବାର ଯୋଜନା କରୁଛନ୍ତି ? ତାଙ୍କର ପିଲାଛୁଆ ନ ଥାଇପାରେ, କିନ୍ତୁ ସେ ତ ଏ ପର୍ଯ୍ୟନ୍ତ ବଞ୍ଚି ରହିଛନ୍ତି !

ବଡ଼ ମଝିଆଁ ନଣନ୍ଦେଇ କଟକରେ ନାଁ କରା ଓକିଲ । ସେ ହିଁ ବୁଝେଇ ଦେଇଥିଲେ । ବ୍ୟବସାୟଟା କୁଆଡ଼େ ରାଧାନାଥଙ୍କ ନାଁରେ ନ ଥିଲା । ଥିଲା ତାଙ୍କ ବାପାଙ୍କ ନାଁରେ । ସେଇ ସୂତ୍ରରେ ଶ୍ୱଶୁରଙ୍କର ମୃତ୍ୟୁ ପରେ ସବୁ ଭାଇ ଭଉଣୀଙ୍କର ସମାନ ଅଧିକାର । ଏତେଦିନ କେହି କିଛି କହି ନ ଥିଲେ । କିନ୍ତୁ ରାଧାନାଥଙ୍କ ଅନ୍ତେ ବ୍ୟବସାୟ ବିକ୍ରି ହୋଇଯିବାର ସମ୍ଭାବନା ଯେଉଁଠି ଅଛି ସେଠି ହକ୍ ଛାଡ଼ି ଦେବାର ପ୍ରଶ୍ନ କାହିଁ? ଅଥଚ ଦେଖ, ଭାଇମାନେ କହୁଛନ୍ତି ଯେ ଭଉଣୀମାନଙ୍କୁ କିଛି ଦେବେ ନାହିଁ । ଦେଶରୁ ଆଇନ୍ ଉଠିଗଲା ନା କ'ଣ ? ପୁଅ ଯାହା, ଝିଅ ସେୟା ।

ଅବାକ୍ ଅଳକା ତାଙ୍କୁ କେବଳ ଦେଖୁଥିଲେ । ଚାହିଁଥିଲେ ସେ ମଧ ଏହି ଟଣା ଓଟରାରେ ସାମିଲ୍ ହୋଇ ପାରିଥାଆନ୍ତେ । କୋର୍ଟ କଚେରୀ କରି ସବୁ

ନ ହେଲେ ମଧ ବେଶ୍ କିଛିଟା ସଂପତ୍ତି ପାଇ ପାରିଥାଆନ୍ତେ। କିନ୍ତୁ ନା-ପାରିଲେ ନାହିଁ ସେ। ନିଜ ଭିତରୁ ଗୋଟାଏ ନିରାସକ୍ତ ଭାବ ବାହାରି ଆସି ତାଙ୍କୁ ବେଢ଼ାଇ ଧରିଥିଲା। ଗୋଟାଏ ବିରାଟ ଧକ୍କାରେ ମାଟିରେ ଭୁଷୁଡ଼ି ପଡ଼ିଥିବା ଅଳକା ଆଉ କୌଣସି ଅଶାନ୍ତିରେ ଜଡ଼ିତ ହେବାକୁ ଚାହିଁଲେ ନାହିଁ। କରନ୍ତୁ ସେମାନେ ନିଜ ନିଜ ଭିତରେ କାମୁଡ଼ା କାମୁଡ଼ି।

ସେଦିନ ତାଙ୍କୁ କୋଳେଇ ମୁଣ୍ଡେଇ ନେଇ ଆସିଥିଲେ ତାଙ୍କର ତିନି ବଡ଼ ଭାଇ। କିଛି ଦିନ ନିଜ ନିଜ ଘରେ ତାଙ୍କୁ ରଖିବା ପରେ ଦିନେ ପୁଣି ଗାଁର ଘର ଜମି ସବୁ ସାନଭଉଣୀ ନାଁରେ କରିଦେଇ ସେଇଠି ଅଳକାଙ୍କୁ ଛାଡ଼ି ଦେଇ ଆସିଲେ।

ସେମିତି ଗୁଡ଼ାଏ ସଂପତ୍ତି ନୁହଁ। କିନ୍ତୁ ଜଣେ ମଣିଷ ଚଳିବା ପାଇଁ କେତେ ବା ଦରକାର? ଅଳକା ପୂଜାପୂଜି ଆଉ ଘରେ ଆରମ୍ଭ କରିଥିବା ଗାଁ ସ୍ତ୍ରୀ ଲୋକଙ୍କ ପାଇଁ ସିଲେଇ ସ୍କୁଲ୍ ନେଇ ଭଲରେ ଚଳିଯାଉଥିଲେ। ଜମିରୁ ଯାହା ଆସୁଥିଲା, ସେତିକି ବର୍ଷଟାଏ ଚଳିବାକୁ ଥିଲା ଯଥେଷ୍ଟ।

ଏତିକିବେଳେ ତାଙ୍କ ମୁଣ୍ଡରେ ଆସି ପଡ଼ିଲା ଦ୍ୱିତୀୟ ଆଘାତ। ବଡ଼ ଭାଇନା ଚାଲିଗଲେ।

ସମସ୍ତେ ଜାଣିଥିଲେ ତାଙ୍କର ଆଉ ବେଶୀ ଦିନ ନାହିଁ। କ୍ୟାନ୍‌ସରରେ ଭୋଗି ଭୋଗି ଯାହା ଅବସ୍ଥା ହୋଇଥିଲା, ସେଥିରେ କ'ଣ ବେଶୀ ଦିନ ବଂଚି ହୁଏ? ତଥାପି ସହି ହୁଏ ନାହିଁ। ଜୀବନର ଅନ୍ତିମ ସତ୍ୟକୁ ସହଜେ ମାନି ନେଇ ହୁଏ ନାହିଁ।

ଖବର ପାଇ ଅଳକା ପାଗଳୀଙ୍କ ଭଳି ଧାଇଁ ଆସିଥିଲେ। ସେତେବେଳକୁ ଭାଇନା ଘରକୁ ଆସି ସାରିଥିଲେ ତାଙ୍କର ସବୁ ପୁଅ, ଝିଅ, ବୋହୂ ଜ୍ୱାଇଁ ଓ ନାତିନାତୁଣୀମାନେ। ତାଙ୍କୁ ଦେଖି ବିକଳ ହୋଇ କାନ୍ଦି ଉଠିଥିଲା ସୁରେଶ। ବଡ଼ଭାଇନାଙ୍କ ବଡ଼ ପୁଅ।

''ଆମେ ଏତେଦିନ ମା'କୁ ହରେଇ ବଞ୍ଚିଥିଲୁ। ଏବେ ଅନାଥ ହୋଇଗଲୁ, ନାନୀ।''

''ନାରେ ବାପା, ଏତେ କାନ୍ଦନି। ତୁ ଏମିତି ହେଲେ ଅନ୍ୟମାନଙ୍କୁ ଦେଖିବ କିଏ?'' ନିଜ ଦୁଃଖକୁ ଭିତରେ ଚାପି ରଖି ଅଳକା ତାକୁ ବୁଝେଇଥିଲେ।

ମୁଣ୍ଡରେ, ପିଠିରେ ହାତ ବୁଲେଇ ଦେଇଥିଲେ।

ଆହାରେ।

ବଡ଼ ଭାଇନାଙ୍କର କେଇଟା ଫ୍ୟାକ୍ଟ୍ରି ରହିଥିଲା ଏଠିସେଠି। ରୋଗରେ ପଡ଼ିବା ପରେ ପରେ ହିଁ ସେ ସବୁ କିଛି ବାଣ୍ଟି ଦେଇଥିଲେ ଦୁଇ ଝିଅ ଓ ତିନି ପୁଅଙ୍କ ଭିତରେ। ରହିଥିଲା କେବଳ ରାଜପ୍ରାସାଦ ଭଳି ବିରାଟ ଘର।

ସେଇଠି ହିଁ ମହା ଆଡ଼ମ୍ବରରେ ଶ୍ରାଦ୍ଧ ହୋଇଗଲା। ଏଥର ଯେ ଯାହାର କର୍ମ ସ୍ଥାନକୁ ଫେରିଯିବା କଥା। ଅଳକା ମଧ୍ୟ ଗାଁକୁ ଫେରିଯିବା ପାଇଁ ନିଜ ବ୍ୟାଗ ସଜାଡ଼ିବା ଆରମ୍ଭ କରିଦେଇଥିଲେ। କିନ୍ତୁ କେଉଁଠି ଯେମିତି ସୁରଟି ବେସୁରା ହୋଇଯାଇଥିଲା। ଶୋକରେ ଝାଉଁଳି ପଡ଼ିଥିବା ମୁହଁ ଗୁଡ଼ିକ ଏତେ ଗମ୍ଭୀର କାହିଁକି? ଝଡ଼ ଆରମ୍ଭ ପୂର୍ବର ନିସ୍ତବ୍ଧତା ନୁହଁ ତ? ଅଳକା ଆବାକାବା ହୋଇ ସମସ୍ତଙ୍କୁ କେବଳ ଲକ୍ଷ୍ୟ କରୁଥିଲେ।

ନା- ତାଙ୍କ ଅନୁମାନ ଭୁଲ ନ ଥିଲା। କିଛି ସମୟ ମଧ୍ୟରେ ହିଁ ବାରୁଦରେ ଅଗ୍ନି ସଂଚାର ହୋଇ ଯାଇଥିଲା। ଏବଂ ସେଥିରେ ଦୋହଲିଯାଇଥିଲା ବଡ଼ ଭାଇନା ଘରର ସୁଦୃଢ଼ ନିଅଁ।

ସୁରେଶ ଗର୍ଜନ କରି ଉଠିଥିଲା, "ଏତେ ଦିନ ଏଠି ରହି ସବୁ କଲି ମୁଁ। ଘର ରଙ୍ଗଠୁଁ ଆରମ୍ଭ କରି ବଗିଚା ଗଛ ତଦାରଖ - ସବୁ। ଏବେ ସମସ୍ତେ ଆସି ଲାଳ ଗଡ଼ାଉଛ? ବାପା ରୋଗରେ ଛଟପଟ ହେବାବେଳେ କୁଆଡ଼େ ଥିଲ ତୁମେମାନେ? ହସ୍‌ପିଟାଲ୍‌ରେ ରାତି ଅନିଦ୍ରା ରହିଛ? କେମୋଥେରାପି କରେଇଛ? ଡ଼ାକ୍ତରମାନଙ୍କ ପାଖକୁ ଦଉଡ଼ା ଦଉଡ଼ି କରିଛ? ଏବେ କ'ଣ ନା ଭାଗ ଦିଅ!! କହିଦଉଛି... ଏ ଘର ମୋର। ଏଠି କେହି ପାଦ ପକେଇ ପାରିବନି କି ଏଠୁ ଇଟା ଖଣ୍ଡିଏ ନେଇ ପାରିବନି।"

ସ୍ତବ୍ଧ ଦେହି ଚାହାଣୀରେ ଚାହିଁ ରହିଥିଲେ ଅନ୍ୟମାନେ। ଭାଇନାର ବଡ଼ ଝିଅ ବୁଲ୍ଗୀ ନିଜ ଦରପାଚିଲା ବାଳର ଗଣ୍ଠିକୁ ଆଉ ଟିକିଏ ଶକ୍ତ କରିନେଇ କହିଥିଲା, "ଭାଇନା, ସେସବୁ ଟାଣ ଏବେ ଚଳିବନି। ତୁ ଯଦି ବାପାଙ୍କ ପାଇଁ କରିଛୁ, ତେବେ ଫାଇଦା ବି କିଛି କମ୍ ଉଠେଇନୁ। ଭଡ଼ା ଘରେ ନ ରହି ବାପାଙ୍କ ପାଖରେ ରହିଛୁ। ମାସକୁ ମାସ ତୁ ଆଉ ତୋ ପରିବାର ବାପାଙ୍କ ପଇସାରେ ଗୋଗ୍ରାସ ପକେଇଛ। ତାଙ୍କ ଦେଖା ଚାହାଁ କଲୁ ତ

କ'ଣ ଏମିତି ପୃଥିବୀ ଓଲଟେଇ ଦେଲୁ ?''

ଇସ୍ - ଏସବୁ କି ଛୋଟଲୋକୀ କଥା ! ଅଳକା ସ୍ଥାଣୁ ପାଲଟି ଯାଇଥିଲେ ।

''ଭାଇନା, ଆପଣ ବୋଧହୁଏ ଜାଣନ୍ତିନି ।'' ଛିଗୁଲାଇବା ଭଳି ଅଳ୍ପ ହସି ବୁଢ଼ୀର ସ୍ୱାମୀ ଅରୁଣ କହିଥିଲା, ''ଆଜିକାଲି ଆଇନ୍ ହୋଇଯାଇଛି ଯେ ବାପା ମା'ଙ୍କ ସଂପତ୍ତି ଉପରେ ସବୁ ପିଲାଙ୍କର ସମାନ ଅଧିକାର । ପୁଅ ହେଉ ବା ଝିଅ । ଆପଣ କ'ଣ ଆଇନ୍‌ରୁ ବାହାର ?''

''ମତେ ଆଇନ୍ ଦେଖାଉଛ ???'' ହୁଙ୍କାର ଦେଇ ଉଠିଥିଲା ସୁରେଶ । ଯେ କ'ଣ ସେଇ ସୁରେଶ ଯିଏ କି କେଇଟା ଦିନ ଆଗରୁ ଅନାଥ ହେବାର ଶୋକରେ ମାଟିରେ ଧସି ଯାଇଥିଲା ? ଅଳକା କାନରେ ହାତ ଦେଇ ପୂଜା ଘର ଭିତରେ ପଶିଯାଇଥିଲେ । ଏମାନେ ପୁଅ ଝିଅ ? ପୁତ୍ ନାମକ ନର୍କରୁ ଉଦ୍ଧାର କରୁଥିବା ପୁତ୍ର ଓ ଦୁଇ କୁଳକୁ ଆନନ୍ଦ ଦେଉଥିବା ଦୁହିତା ? ଏମାନେ ଯେ ନିରାନନ୍ଦର ଆବହାଓ୍ୱା ସୃଷ୍ଟି କରି ଆଖପାଖର ଜଗତକୁ ନର୍କ କରି ଦେଉଛନ୍ତି ! ମୃତ ଶରୀରରୁ ମାଂସ ଝୁଣି ନେଉଥିବା ଶାଗୁଣା ଛଡ଼ା ଏମାନଙ୍କୁ ଆଉ କ'ଣ କୁହାଯାଇ ପାରିବ ?

ଯାହେଉ, କଥା କୋର୍ଟ କଚେରୀ ପର୍ଯ୍ୟନ୍ତ ଗଲା ନାହିଁ । ଅଳକାଙ୍କର ମଝିଆ ଭାଇନା ସମସ୍ତଙ୍କୁ ବୁଝେଇ ଦେଇଥିଲେ । କି ଲାଭ ଏସବୁ ମକଦ୍ଦମା କରି ? କେବଳ ଓକିଲକୁ ଟଙ୍କା ଗଣା ହେବ ଓ କୋର୍ଟରେ ଦିନ ଗଡ଼ିବ । ଯାଠୁଁ ବରଂ ଭଲ ଘରଟାକୁ ବିକ୍ରି କରିଦେଇ ଟଙ୍କାକୁ ସମସ୍ତେ ସମାନ ଭାବରେ ବାଣ୍ଟି ନେବା । ଆଜିକାଲିକା ଯୁଗରେ ସେଇ ଭଲ । ଏଡ଼େ ବଡ଼ ଘର ଜଣେ ରଖିବା ଯାହା, ହାତୀ ପୋଷିବା ସେୟା ।

ସମସ୍ତେ ବୁଝିଯାଇଥିଲେ । ମାନି ନେଇଥିଲେ । ଏଥର ସନ୍ତୁଷ୍ଟ ଭାବରେ ସମସ୍ତେ ଏକଜୁଟ ହୋଇ ଘର ବିକ୍ରି ପାଇଁ ଯୋଜନା ଆରମ୍ଭ କରି ଦେଇଥିଲେ ।

ସେଇଦିନ ସେଇଠୁଁ ବାହାରି ଆସିଥିଲେ ଅଳକା, ଆଉ ସେଠିକି ଯାଇ ନାହାନ୍ତି । ବଡ଼ ଭାଇନାଙ୍କ ପିଲାଙ୍କର ଖବର ଅନ୍ତର ରଖିବାରେ ଆଗ୍ରହୀ ହୋଇ ନାହାନ୍ତି । ସେମାନଙ୍କର ପିଲାଙ୍କର ବାହାବ୍ରତକୁ ଆଡ଼େଇ ଚଳିଛନ୍ତି । କ'ଣ ବା ସେ କରିବେ ? ସେ ଯେ କୌଣସି ତିକ୍ତ ପରିବେଶରେ ରହି ପାରନ୍ତି ନାହିଁ ।

କିନ୍ତୁ ଭାଗ୍ୟ ଦେଖ !!

ଅଳକାଙ୍କର ମୁଣ୍ଡ କୋଡ଼ି ଦେବାକୁ ଇଚ୍ଛା ହୁଏ। କି ଭାଗ୍ୟ ଯେ ତାଙ୍କର। ପୁଣି ଥରେ ଦୁଇବର୍ଷ ନ ଯାଉଣୁ ତୃତୀୟ ଥର ପାଇଁ ବିସ୍ଫୋରଣର ସାମ୍ନା କରିବାକୁ ହେଲା ତାଙ୍କୁ।

ତାଙ୍କର ମଝିଆ ଭାଇନା ଚାଲିଗଲେ।

ପ୍ରାୟ ଜାଣ, ସେଇ ଆଗଥରମାନଙ୍କ ଭଳି ପରିସ୍ଥିତି। ଆଉ ସେଇ ଦୁଃଖ ଶୋକ ଭିତରେ ଗୋଳେଇ ହୋଇ ତିକ୍ତତା।

ନା- ଅସନ୍ତୋଷଟା ମଝିଆ ଭାଇନାର ସଂପତ୍ତି ନେଇ ନୁହଁ। ବଡ଼ ଭାଇନା ଭଳି ନ ହେଲେ ମଧ୍ୟ ମଝିଆ ଭାଇନାର ଅବସ୍ଥା ମନ୍ଦ ନ ଥିଲା। ଭୁବନେଶ୍ୱରରେ ଘରଟିଏ ଥିଲା। ଚାକିରି କାଳରେ ବମ୍ବେ ଭଳି ଜାଗାରେ ସେ ଫ୍ଲାଟ୍‌ଟିଏ କରି ଯାଇଥିଲେ। କିନ୍ତୁ ସେତିକ ଉପରେ ଆଖି ପକେଇ ନ ଥିଲେ ତାଙ୍କର ଦି' ପୁଅ। କାହିଁକି ବା ପକେଇ ଥାଆନ୍ତେ, ସେତକ ଯେ ସେମାନଙ୍କ ହାତର ମଳିଧୂଳି ସହ ସରି ନୁହଁ।

ମଝିଆ ଭାଇନାଙ୍କର ବଡ଼ ପୁଅ ରାଜେନ୍ଦ୍ର ନାଇଜେରିଆର କେଉଁ ଗୋଟାଏ କଂପାନୀରେ ଉଚ୍ଚ ଅଫିସର୍। ତା'ର ମାସକର ଦରମା କେବଳ କେଇ ଲକ୍ଷ ଟଙ୍କା ବୋଲି ଅଳକା ଯା ତା' ମୁହଁରୁ ଶୁଣିଛନ୍ତି। ଆଉ ସାନ ନରେନ୍ଦ୍ର ଆମେରିକାରେ ଡ଼ାକ୍ତର। ସେ ଓ ତା'ର ଗୁଜୁରାଟୀ ଡ଼ାକ୍ତରାଣୀ ସ୍ତ୍ରୀ ବର୍ଷକରେ ଯାହା ରୋଜଗାର କରନ୍ତି, ସେଥିରେ ଭୁବନେଶ୍ୱର ଘର ଭଳି ଦୁଇ ତିନିଟା ବିନା ଲୋନ୍‌ରେ କିଣି ଦେଇ ପାରିବେ। ତେଣୁ ସଂପତ୍ତି ନେଇ କାମୁଡ଼ା କାମୁଡ଼ି ହେବାର ପ୍ରଶ୍ନ ନ ଥିଲା।

ଅଶାନ୍ତି ହୋଇଥିଲା ସେମାନଙ୍କର ମା' ଅର୍ଥାତ୍ ଅଳକାଙ୍କର ମଝିଆ ଭାଉଜଙ୍କର ଭବିଷ୍ୟତ ନେଇ। ଡ଼ାଏବେଟିକ୍, ବ୍ଲଡ଼୍ ପ୍ରେସର୍ ରୋଗୀଟିଏ ପାଖରେ ନେଇ ରଖିବ କିଏ ? ଦିନେ ଅଧେ କଥା ନୁହଁ, ସବୁଦିନ ପାଇଁ। ତାଙ୍କୁ ତ ଆଉ ଏ ଘରେ ଏକା ଏକା ପକେଇ ଦେବା ଚଳେ ନାହିଁ। ରାଜେନ୍ଦ୍ରର ଯୁକ୍ତି - ସାନ ଓ ତା' ସ୍ତ୍ରୀ ଉଭୟ ଡ଼ାକ୍ତର। ତେଣୁ ତା'ର ହିଁ ମା'କୁ ରଖିବା କଥା। ନରେନ୍ଦ୍ରର ଉତ୍ତର ଯେ ସେମାନେ ମେଡ଼ିକାଲ୍ ସେଣ୍ଟର୍ ନେଇ ଭୀଷଣ ବ୍ୟସ୍ତ। ଘରେ ଟିକିଏ ବସିବାକୁ ବେଳ ମିଳେ ନାହିଁ। ମା'ର ଦେଖାଶୁଣା କରିବ କିଏ ? ବଡ଼ ଭାଉଜ ତ ହାଉସ୍‌ୱାଇଫ୍। ତେଣୁ ତାଙ୍କ ପାଖରେ ମା' ରହିଲେ...।

ଅଳକା ପ୍ରଥମରୁ ପ୍ରସ୍ତୁତ ଥିଲେ। ଏଥରକ ସେ ପୂଜା ଘର ଭିତରେ ପଶି କବାଟ ବନ୍ଦ କଲେ ନାହିଁ କି ଦୁଇ ହାତରେ ମୁହଁ ଘୋଡ଼ାଇ ସକସକ ହୋଇ କାନ୍ଦିଲେ ନାହିଁ। ବରଂ ସେ ହିଁ ସମାଧାନର ରାସ୍ତା ଛୋଟ ଭାଇନାଙ୍କୁ ଦେଖାଇ ଦେଇଥିଲେ।

ଛୋଟ ଭାଇନା ଗମ୍ଭୀର ଭାବରେ ଦୁଇ ପୁତୁରାଙ୍କୁ କହିଥିଲେ, ''ଏ ବୟସରେ ମଝିଆ ଭାଉଜ ବିଦେଶକୁ ଯିବାର କୌଣସି ମାନେ ହୁଏ ନାହିଁ। ମୁଁ ଭାଉଜଙ୍କ ସାଙ୍ଗରେ କଥା କହି ସାରିଛି। ସେ ଅଳକା ପାଖରେ ଗାଁରେ ରହିବେ। ମୁଁ ମଝିରେ ମଝିରେ ଦେଖାଚାହାଁ କରିନେବି।''

ସ୍ୱସ୍ତିର ନିଶ୍ୱାସ ନେଇଥିଲେ ରାଜେନ୍ଦ୍ର ଓ ନରେନ୍ଦ୍ର। ଦୁଇଟା ଫ୍ଲାଟ୍‌ରେ ଭଡ଼ା ଲଗାଇ, ଭଡ଼ା ଟଙ୍କା ମା'ଙ୍କ ପାଖକୁ ଯିବାର ବ୍ୟବସ୍ଥା କରି ସେମାନେ ଫେରିଯାଇଥିଲେ।

ଆଉ ଭାଉଜ ?

ଅଳକାଙ୍କ ପାଖରେ ଭାଉଜଙ୍କର କୌଣସି ଅସୁବିଧା ନ ଥିଲା। କିନ୍ତୁ କେମିତି ନିରାସକ୍ତ ହୋଇ ପଡ଼ିଥିଲେ ସେ। ଯେତେବେଳେ ସେତେବେଳେ ବାରଣ୍ଡାରେ କାନ୍ଥକୁ ଆଉଜି ଗୋଡ଼ ଲମ୍ବେଇ ଗୁଣୁଗୁଣୁ କରି ଗାଇବା ଆରମ୍ଭ କରି ଦେଉଥିଲେ :

''ଖଣ୍ଡି ଯେ ଖଣ୍ଡି ତୋର ପିଞ୍ଜରା କାଠି
ଖାଉଣ ଥିବେ ଶ୍ୱାନ, ଶୃଗାଳ ବାଣ୍ଟି।''

ପୃଥିବୀରୁ ମନ ଛାଡ଼ି ଯାଇଥିଲା ତାଙ୍କର। ଏମିତି ଅବସ୍ଥାରେ କ'ଣ ବେଶୀ ଦିନ ବଂଚି ହୁଏ ? ଅଳକାଙ୍କ ପାଖରେ ବର୍ଷେ ରହିବା ପରେ ଦିନେ ଚାଲିଗଲେ ତାଙ୍କର ମଝିଆ ଭାଉଜ। ସୁଖ ମୃତ୍ୟୁ।

ମଝିଆ ଭାଉଜଙ୍କ ମୃତ୍ୟୁ ପରେ ନିଜେ ଅଳକା ହିଁ ବଦଳିଯିବା ଆରମ୍ଭ କଲେ। ନିହାତି ଦରକାର ନ ପଡ଼ିଲେ ସେ ଛୋଟ ଭାଇନାର ଘରକୁ ଯାଉ ନ ଥିଲେ। ଦେଖା କରିବାର ହେଲେ ଛୋଟ ଭାଇନା ହିଁ ଆସୁଥିଲେ ଗାଁକୁ।

ଆଉ ତା'ପରେ ଏବେ ଏଇ ବିପର୍ଯ୍ୟୟ। ଛୋଟ ଭାଇନା ବି ଚାଲିଗଲେ। ବିପତ୍ନୀକ ଛୋଟ ଭାଇନାର ବେଶୀ ସଂପତ୍ତି ନ ଥିଲା କି ବଡ଼ ଚାକିରି କେବେ ସେ କରି ନ ଥିଲେ। ପୁରୀରେ ସାଧାରଣ ଚାକିରିଟିଏ ନେଇ ତାଙ୍କ ଜୀବନ କାଳ କଟିଗଲା। ଅବସର ନେବା ପରେ ଚାକିରିରୁ ମିଳିଥିବା ଟଙ୍କାରେ ଛୋଟ

ଘର ଖଣ୍ଡିଏ କରି ସେ ସେଇଠି ରହିଯାଇଥିଲେ।

ତାଙ୍କର ଦୁଇ ପୁଅ, ଗୋଟିଏ ଝିଅ। ପିଲାଗୁଡ଼ାକ ବଡ଼ ଭାଇନାଙ୍କର ପିଲାଙ୍କ ଭଳି ପାରିବାର ନ ଥିଲେ କି ମଝିଆ ଭାଇନାଙ୍କ ପିଲାଙ୍କ ଭଳି ବ୍ରିଲିଆଣ୍ଟ ନ ଥିଲେ। ସାଧାରଣ ଭାବରେ କଲେଜ୍ ପାଶ୍ କରି ଛୋଟ ଛୋଟ ଚାକିରି ନିଜ ପାଇଁ ଯୋଗାଡ଼ କରିନେଇଥିଲେ। ଏବେ କ୍ୱାଟର୍ସ ପାଇ ଓଡ଼ିଶାର କେଉଁ ଅଳିକନ୍ଦିରେ ପଡ଼ି ରହିଛନ୍ତି ପୁଅ ଦୁଇଜଣ। ତାଙ୍କର ଗେହ୍ଲା ଝିଅ ବୁନି ନିଜେ ପସନ୍ଦ କରି ବାହା ହୋଇଥିଲା ତା' କ୍ଲାସ୍‌ମେଟ୍ ଶୁଭାଶୀଷକୁ। ଦୁଇଜଣଯାକ ଏମ୍.ଏ. ପାଶ୍ କରି ଚାକିରି ପାଇଁ ଚେଷ୍ଟା କରିଥିଲେ। କିନ୍ତୁ ଆଭରେଜ୍ କ୍ୟାରିଅର୍ ଗ୍ରାଫ୍ ନେଇ ଭଲ ଚାକିରି କ'ଣ ସହଜେ ଜୁଟେ? ଶେଷରେ ଦୁହେଁଯାକ ପୁରୀରେ ହିଁ ଗୋଟିଏ ସ୍କୁଲରେ ଚାକିରି କରିଗଲେ।

ବୁନି, ଶୁଭାଶୀଷଙ୍କର ଜଂଜାଳୀ ପରିବାର। ଘରେ ଦୁଇ ଜଣ ଅବିବାହିତା ଭଉଣୀ। ପୋଲିଓରେ ଉଠି ବସି ପାରୁ ନ ଥିବା ସାନ ଭାଇ। ବୃଦ୍ଧାବସ୍ଥାରେ ପହଞ୍ଚି ବିଭିନ୍ନ ରୋଗରେ ଛଟପଟ ହେଉଥିବା ବାପା ମା'। ଆଉ ସାତବର୍ଷ ଓ ପାଞ୍ଚ ବର୍ଷର ଦୁଇ ଝିଅ ତ ଅଛନ୍ତି।

ଏବେ ନିଜର ଅବସ୍ଥା ସୁଧାରିବାର ଗୋଟାଏ ମାଧ୍ୟମ ବୁନି ଓ ଶୁଭାଶୀଷ ପାଇଛନ୍ତି। ଛାଡ଼ିଦେବେ?

ଅଳକା ମନକୁ ମନ ହସିଲେ।

ମଣିଷ ଭଲ ବୋଲି ପରିବାରରେ ଶୁଭାଶୀଷର ସୁନାମ ଅଛି। କିନ୍ତୁ ସଂପତ୍ତି ମାମଲାରେ ଏ ଭଲ ମଣିଷପଣିଆର କି ମୂଲ୍ୟ? ଏ ସଂପତ୍ତି ଜିନିଷଟି କ'ଣ ଯେ ଯାଦୁ କରିଦିଏ, ମଣିଷ ଭିତରେ ରହିଥିବା ଲୋଭୀ ଦୈତ୍ୟଟି ନଖ ଦାନ୍ତ ବାହାର କରି ସାମ୍ନାକୁ ଚାଲି ଆସେ! ଏବେ ସହଜ ସଂପତ୍ତି ଆହରଣ କରିବାର ସୁଯୋଗ ମିଳିଛି, ଶୁଭାଶୀଷ କ'ଣ ଛାଡ଼ି ଦେବ?

ଆଉ ମନୁ, ରନୁ? ଛୋଟ ଭାଇନାଙ୍କର ଦୁଇ ପୁଅ ନିଶ୍ଚୟ ସହଜରେ ଏ ସଂପତ୍ତିରେ ଆଉ କାହାକୁ ଟିପ ଛୁଆଇଁବାକୁ ଦେବେ ନାହିଁ। ଭଉଣୀ, ଭିଣେଇ ହୁଅନ୍ତୁ ପଛକେ। ସେମାନଙ୍କର ନିଜର କ'ଣ ଅଭାବ ନାହିଁ? ବୁନି, ଶୁଭାଷୀଷ ଭଳି ନ ହେଲେ ମଧ୍ୟ ସେମାନଙ୍କର ଜଂଜାଳ ରହିଛି। ସେମାନେ ଯେ ଫଡ଼ାଏ ଫଡ଼ାଏ ଅଧିକ ମାଂସ ନିଜ ଭାଗରେ ପକେଇବାକୁ ପ୍ରସ୍ତୁତ ହୋଇ

ସାରିବେଣି, ସେଇଟା ତ ଜଣାଶୁଣା କଥା।

ଏଇ ଯେଉଁ ଚୁପଚାପ୍ କଥାବାର୍ତ୍ତା, ଚୁପ୍‌ଚାପ୍ ଆଲୋଚନା - ସେଇଟା ହଠାତ୍ କରି ସିରିୟସ୍ ହୋଇଯିବ। ଫୁଲିଫୁଲି ବ୍ୟାପାରଟା ଏମିତି ଗୋଟିଏ ଅବସ୍ଥାରେ ପହଞ୍ଚିବ ଯେ ତା'ପରେ ବିସ୍ଫୋରଣ ହେବା ବ୍ୟତୀତ ଆଉ କିଛି ଉପାୟ ନାହିଁ।

ଅଳକା ସବୁ ଜାଣିଛନ୍ତି। ଆଗରୁ ଏତେ ଭୋଗିଛନ୍ତି। କିନ୍ତୁ ନିସ୍ପୃହ ହୋଇପାରୁ ନାହାନ୍ତି। ନିଜ ଚାରିପଟେ ପଥରର ଗୋଟିଏ ଦୁର୍ଗ ନିର୍ମାଣ କରିଦେଇ ପାରୁନାହାନ୍ତି। କାହିଁକି ଯେ ମନଟା ଏତେ ଅସ୍ଥିର ହୋଇଯାଉଛି! କମ୍ବଳ ଉପରେ ଆଖି ବନ୍ଦ କରି ବସି ମଧ ପ୍ରାଣାୟମ ଆରମ୍ଭ କରିପାରୁନାହାନ୍ତି ସେ।

ହଠାତ୍ ଭେଁ କରି କିଏ କାନ୍ଦି ଉଠିଲା। ବୁନି ??

ଓ, ତାହେଲେ ଆରମ୍ଭ ହୋଇଗଲା।

"ନା ନା ନା - ମୁଁ କିଛି ଶୁଣିବିନି। ତୁମେମାନେ କ'ଣ ଯେ?" ବୁନି ଚିତ୍କାର କରି ଉଠିଲା।

ଆଖି ଖୋଲି କମ୍ବଳ ଉପରୁ ଉଠି ଠିଆ ହେଲେ ଅଳକା। ଆଜି ଆଉ ପ୍ରାଣାୟମ ହେବା ନୋହିଲା। ଧୀରେ ଧୀରେ ସେ କବାଟ ପାଖକୁ ଆସିଲେ।

ଏଥର ବୋଧହୁଏ ତାଙ୍କୁ ହିଁ ବିସ୍ଫୋରଣର ସାମ୍ନା କରିବାକୁ ହେବ। ସମସ୍ୟାର ସମାଧାନ ଖୋଜିବାକୁ ହେବ। ଅଶାନ୍ତିକୁ ଯେତେ ଘୃଣା କରନ୍ତୁ ପଛକେ, ଏଥରକ ତା'ର ସାମ୍ନା କରିବାକୁ ପଡ଼ିବ। ନହେଲେ ଯେ ଛୋଟ ଭାଇନାର ଆତ୍ମା ଶାନ୍ତି ପାଇବ ନାହିଁ।

ଅଳକା କବାଟ ପାଖରେ ଆସି ଠିଆ ହେଲେ। ସେଇଠୁ ପରିଷ୍କାର ଦେଖାଯାଉଛି ଛୋଟ ଭାଇନାର ଘର ଭିତରଟା ଯେଉଁଠି ଏକାଠି ହୋଇ ତଳେ ବସିଛନ୍ତି ସମସ୍ତେ। ମନୁ, ରନୁ, ସେମାନଙ୍କର ସ୍ତ୍ରୀ ଦୁଇଜଣ ଆଉ ବୁନି, ଶୁଭାଶୀଷ। ବୁନି ଧକେଇ ଧକେଇ କେବଳ କାନ୍ଦି ଚାଲିଛି। ହଠାତ୍ ଉଠି ଆସି ତା' ପିଠି ଆଉଁଷି ଦେଲା ସୁମିତା - ମନୁର ସ୍ତ୍ରୀ। ଫିସ୍ ଫିସ୍ କରି କ'ଣ କହିଲା ସେ।

"ଥାଉ ଭାଉଜ ଥାଉ। ମତେ ବୁଝେଇବା ଦରକାର ନାହିଁ। ତୁମେ ଆଉ ଭାଇନା ପଟିଆ ହୁଅନ୍ତ ନାହିଁକି?" ବୁନି ଅଶାନ୍ତ ସ୍ୱରରେ କହି ପକେଇଲା।

ଶୁଭାଶୀଷ କେମିତି ଗୋଟିଏ ବିବ୍ରତ ମୁହଁ କରି ବସି ରହିଛି।

ତାକୁ ହିଁ ହଲେଇ ଦେଲା ବୁନି। ''ତୁମେ କିଛି କହୁନ କାହିଁକି? ତୁମେ ମୁହଁ ଖୋଲି କିଛି ନ କହିଲେ ଏମାନେ ଶୁଣିବେ?''

ଶୁଭାଶୀଷ ଉଠି ଠିଆ ହେଲା, ''ମୋର ଯାହା କହିବା କଥା ମୁଁ କହିଦେଇଛି। ସେ କଥାର ଟିକିଏ ଏପାଖ ସେପାଖ ନାହିଁ। ଏଥର ଯାହା କରିବା ଶୁଣିବା କଥା ସେ ସବୁ ତୁମେମାନେ କର।'' ଧପ୍ ଧପ୍ କରି କୋଠରୀ ଭିତରୁ ବାହାରି ସେ ବାରଣ୍ଡାକୁ ଚାଲିଗଲା।

ଏତେ ବ୍ୟସ୍ତ? କି କଥା ସେ କହି ସାରିଛି ଅନ୍ୟମାନଙ୍କୁ?

ହଠାତ୍ ସମସ୍ତଙ୍କର ଆଖି ପଡ଼ିଗଲା ଅଳକାଙ୍କ ଉପରେ। ଧାଇଁ ଆସି ପିଉସୀକୁ ଦୁଇ ହାତରେ ଜାବୁଡ଼ି ଧରିଲା ବୁନି। ''ନାନୀ, ତୁମେ ଟିକିଏ ବୁଝାଅ ଏମାନଙ୍କୁ।'' ତା' ଆଖିରୁ ବୋହି ଯାଉଥିଲା ଧାର ଧାର ଲୁହ।

ଅଳକାଙ୍କ କଠିନ ମୁହଁରେ ଭାବାନ୍ତର ହେଲା ନାହିଁ।

ପାଖରେ ଆସି ଠିଆ ହେଲା ରନୁ, ''ନାନୀ, ଏଇଟାର ଏତେ ଜିଦି! ବାପାଙ୍କଠୁଁ ଗେହ୍ଲା ପାଇ ବୁନି ଏକଦମ ବିଗିଡ଼ି ଯାଇଛି। ନିଜ ଜିଦିରେ ପାଠ ପଢ଼ିଲା, କେହି କିଛି କହିଲେ ନାହିଁ। ନିଜ ପସନ୍ଦରେ ବାହା ହେଲା, ତଥାପି ଆମେ ପାଟି ଖୋଲିଲୁ ନାହିଁ। ଆଉ ଏବେ...''

ଏବେ? ଏବେ ପୁଣି କ'ଣ? ଏସବୁ ତ ହେବା କଥା।

ଏଥର ଅଳକା ପାଟି ଖୋଲିଲେ, ''କାହିଁକି ତୁମେ ସବୁ ଏମିତି ପାଟିତୁଣ୍ଡ ଚଲେଇଛ? ବଡ଼ଭାଇନାଙ୍କ ଘର ଭଳି ଏ ଘର ବିକ୍ରି କରିଦିଅ। ଯାହା ମିଳିବ ଭାଗ ବଣ୍ଟରା କରି ନେଇଯାଅ। ବାସ୍-''

ଚାରିପଟ କୋଳାହଳ ହଠାତ୍ ନିସ୍ତବ୍ଧ ହୋଇଗଲା।

''ବିକ୍ରି??''

''କ'ଣ କହୁଛ, ନାନୀ?'' ରନୁର ଗଳା ଧରି ଆସୁଛି, ''ଏ ଘର ବିକ୍ରି କଥା କହୁଛ? ତୁମେ ଦେଖିନ, ତୁମେ ଜାଣିନ ବାପା କେମିତି ଭାବରେ ଏ ଘର ତିଆରି କରିଥିଲେ? ଖରାବର୍ଷାରେ ଛତା ଖଣ୍ଡିଏ ଧରି ସକାଳୁ ଏଠି ଠିଆ ହୋଇଥିବେ ଯେ ହୋଇଥିବେ...'' ଆଉ କିଛି କହି ପାରିଲା ନାହିଁ ସେ।

ମନ୍ନୁ ଶେଷ କଥା ଶୁଣେଇ ଦେଲା, ''ଏ ଘରର ଇଟା ପଥରରେ ବାପାଙ୍କ ନିଶ୍ୱାସର ସ୍ମୃତି ଅଛି। ଏ ଘର କେବେହେଲେ ବିକ୍ରି ହେବ ନାହିଁ। କେବେ ନୁହଁ।''

ତାହେଲେ ? ଏମିତି କାମୁଡ଼ା କାମୁଡ଼ି ହେବେ ସେମାନେ ? ସେଥିରେ ଆଉ ସେମାନଙ୍କର ବାପାଙ୍କର ଆତ୍ମା ଅଶାନ୍ତ ହେବ ନାହିଁ ?

ବୁନି ଆଉ ଥରେ ଜଡ଼େଇ ଧରିଲା ଅଳକାଙ୍କୁ। ''ନାନୀ, ତୁମେ ବୁଝାଅ ଭାଇନା, ଭାଉଜମାନଙ୍କୁ। ସେମାନେ ଥାଉ ଥାଉ ମୁଁ କେମିତି ଆସି ରହିବି ଏଠି ?''

ଅଳକା ଯେମିତି ଆକାଶରୁ ଖସି ପଡ଼ିଲେ, ''ତୁ ରହିବୁ ଏଠି ?''

''ଦେଖୁନ, ସେଇ ଜିଦି ଧରି ବସିଛନ୍ତି ଏମାନେ। ଭାଇମାନେ ଥାଉ ଥାଉ ଭଉଣୀ ଆସି ଘର ମାଡ଼ି ବସିବ ! ଛିଃ-'' ବୁନି କାନ୍ଦି ପକେଇଲା।

''ଭାଇ ଘର କ'ଣ, ଭଉଣୀ ଘର କ'ଣ ? ଏ ଘର ତ ଆମ ସମସ୍ତଙ୍କର। 'ଛିଃ' ବୋଲି କହିବାର କ'ଣ ଅଛି ?'' ରନ୍ନୁ କହିଲା, ''ତୁ ଏଠି ରହିଲେ କ'ଣ ଆମେ ଆସିବୁନି ? ତୋ ପାଖରେ ରହିବୁନି ?''

''ଅସମ୍ଭବ, ଭାଇନା, ଅସମ୍ଭବ। ତୁମେ ତ ୟାଙ୍କୁ ଜାଣିଛ। ମୋ ଶାଶୁ ଶ୍ୱଶୁରଙ୍କୁ ଜାଣିଛ। ସେମାନେ ଯେଉଁ ଆତ୍ମସମ୍ମାନୀ ମଣିଷ, ସେମାନେ ଆସି ଏଠି ରହିବେ ?''

ମନ୍ନୁ ଆସି ସାନଭଉଣୀର ମୁଣ୍ଡ ଆଉଁଶି ଦେଲା, ''ମୁଁ ବୁଝେଇ ଦେବି। ସମସ୍ତଙ୍କୁ ବୁଝେଇ ଦେବି। ସେ ଦାୟିତ୍ୱ ତୁ ମୋ ଉପରେ ଛାଡ଼ିଦେ।'' ଆଖି ପୋଛି ନେଇ ସେ ପୁଣି କହିଲା, ''ତୁ ଏତେ ତଳେଇ କରି ଭାବୁଛୁ କାହିଁକି, ବୁନି ? ଭାବିନେ ଯେ ତୁ ଏଠିକାର କେଆର୍ ଟେକର୍। ବାପାଙ୍କ ସ୍ମୃତିକୁ ସାଇତି ରଖିବାର ଦାୟିତ୍ୱ ତୁ ନେଇଛୁ।''

ବୁନି ଅଳକାଙ୍କୁ ଛାଡ଼ି ଦୁଇ ଭାଇନାଙ୍କର ଦୁଇ ହାତକୁ ଜାବୁଡ଼ି ଧରିଲା।

ଧୀର ପାଦରେ କବାଟ ପାଖରୁ ବୁଲି ନିଜ କୋଠରୀକୁ ଅଳକା ଫେରି ଆସିଲେ। ଘର ଭିତରେ ଏ ପର୍ଯ୍ୟନ୍ତ ପଡ଼ିଥିବା କମ୍ବଳ ଉପରେ ବସିଯାଇ ଖୁବ୍ ଶୀଘ୍ର ପ୍ରାଣାୟମରେ ମଗ୍ନ ହୋଇଗଲେ ସେ। ▫▫



## ସୁସ୍ମିତା ବାଗ୍‌ଚୀ

ଜନ୍ମ : ୨୫ ସେପ୍ଟେମ୍ବର, ୧୯୬୦

ଶିକ୍ଷାଗତ ଯୋଗ୍ୟତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧିପ୍ରାପ୍ତ ।

ଅଭିଜ୍ଞତା : ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଅଧୀନରେ ଅଧ୍ୟାପିକା ଭାବେ କର୍ମଜୀବନ ଆରମ୍ଭ । ଅଧୁନା ଭୁବନେଶ୍ୱରରୁ ପ୍ରକାଶିତ ମାସିକ ପାରିବାରିକ ପତ୍ରିକା 'ସୁଚରିତା'ର ସହଯୋଗୀ ସଂପାଦିକା ।

ପ୍ରକାଶନ : ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' (୧୯୯୦), ଗଳ୍ପ ସଂକଳନ 'ଛାଇ ସେପାଖ ମଣିଷ' (୧୯୯୧), ଭ୍ରମଣ କାହାଣୀ 'ମୋ ଝର୍କାରୁ ପୃଥିବୀ' (୧୯୯୫), ଗଳ୍ପ ସଂକଳନ 'ନୈବେଦ୍ୟ' (୧୯୯୬) ଏବଂ ଗଳ୍ପ ସଂକଳନ 'ଭିନ୍ନ କୂଳ, ଅନ୍ୟ ଢେଉ' (୧୯୯୭) । ପୁସ୍ତକ ପାଠ ଓ ଲେଖାଲେଖି ପ୍ରତି ବାଲ୍ୟାବସ୍ଥାରୁ ଗଭୀର ଅନୁରକ୍ତି । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ବହୁ ଗଳ୍ପ ପ୍ରକାଶିତ ଓ ଉଚ୍ଚ ପ୍ରଶଂସିତ ।

ପୁରସ୍କାର : ୧୯୯୪ରେ ତାଙ୍କର ଗଳ୍ପ ସଂକଳନ 'ଆକାଶ ଯେଉଁଠି କଥା କହେ' ପାଇଁ ଓଡ଼ିଶା ରାଜ୍ୟ ସାହିତ୍ୟ ଏକାଡ଼େମି ପୁରସ୍କାର ପ୍ରାପ୍ତ ।